# ମୋ ଜୀବନ, ମୋ ଜଗତ

ଡକ୍ଟର ଧନେଶ୍ୱର ମହାପାତ୍ର



# ମୋ ଜୀବନ, ମୋ ଜଗତ

**ଲେଖକ:**
ଡକ୍ଟର ଧନେଶ୍ୱର ମହାପାତ୍ର

ପ୍ରକାଶକ :



କଲ୍ୟାଣୀ ନଗର, କଟକ-୭୫୩୦୧୩, ଓଡ଼ିଶା

ପ୍ରଥମ ସଂସ୍କରଣ : ୨୦୧୫

ମୁଦ୍ରଣ : ଟେକ୍‌ନୋ ଆର୍ଟ୍‌ସ୍ ଅଫ୍‌ସେଟ୍
କଲ୍ୟାଣୀ ନଗର, କଟକ-୭୫୩୦୧୩, ଓଡ଼ିଶା

ମୂଲ୍ୟ: ₹ ୨୦୦/-

.......................................

# MO JIBANA MO JAGATA

by
**Dr. Dhaneswar Mohapatra**

Published by:
**AKSHARA**
Kalyani Nagar, Cuttack-753013, Odisha

First Edition : 2015

Price: ₹200/-



ଉତ୍ସର୍ଗ :

ଜୀବନ-ଯଂତ୍ରଣାର ଦୁସ୍ତର ଯାଯାବରପଥରେ

ମୋର ଚିରସଂଗିନୀ,

ସହଧର୍ମିଣୀ ଶ୍ରୀମତୀ ଜୀବନକୁମାରୀଂକୁ...

- ଧନେଶ୍ୱର ମହାପାତ୍ର



# ଉତ୍କଳପାଣିନି ଡକ୍ଟର ଧନେଶ୍ୱର ମହାପାତ୍ର

| | |
|---|---|
| ଜନ୍ମ | ୫.୮.୧୯୩୨ |
| ଜନ୍ମସ୍ଥାନ | ଆୟତନ, କନିକା, କେନ୍ଦ୍ରାପଡ଼ା |
| ପିତା | ସ୍ୱର୍ଗତ ରତ୍ନାକର ମହାପାତ୍ର |
| ମାତା | ସ୍ୱର୍ଗତା କମଳା ଦେବୀ |
| ଧର୍ମପତ୍ନୀ | ଶ୍ରୀମତୀ ଜୀବନ କୁମାରୀ ମହାପାତ୍ର |

# । ପ୍ରଥମପଦୀ ।

ଜୀବନ ସରିଆସୁଛି । ଶରୀରରୁ ଶୈଶବ, କୈଶୋର, ତାରୁଣ୍ୟ ଓ ଯୌବନର ସୁନ୍ଦର ମଧୁର ସ୍ପର୍ଶ କେଉଁ କାଳୁ ସରିଯାଇଛି । ବର୍ତ୍ତମାନ ପ୍ରଚଣ୍ଡ ରୁକ୍ଷତାର ସହିତ ଶାସନ କରୁଛି ଜରା, ଯାହାର ତିଳେହେଲେ ଦୟାମାୟା ନାହିଁ । କେତେବେଳେ ନିଃଶେଷ କରିଦେବ, କହି ହେଉନାହିଁ । ଏଭଳି ଅବସ୍ଥାରେ ମୋର ଧାରଣା ଭିତରକୁ ଆସିଲା ମୋର ହିତୈଷୀ ପ୍ରିୟଜନମାନଙ୍କ କଥା । ଡକ୍ଟର ବିଜୟାନନ୍ଦ ସିଂହ, ଡକ୍ଟର ବିଜୟ କୁମାର ଶତପଥୀ, ଶ୍ରୀ ଗିରିଜାକୁମାର ବଳୀୟାରସିଂହ, ଶ୍ରୀ ଘନଶ୍ୟାମ ଧଳ, ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଡକ୍ଟର ଦୁଃଖିଶ୍ୟାମ ପଟ୍ଟନାୟକ ପ୍ରମୁଖଙ୍କ କଥା, ଯେଉଁମାନେ କି ମୋତେ ବାରମ୍ବାର କହୁଥିଲେ ଖଣ୍ଡିଏ ଆତ୍ମଜୀବନୀ ଲେଖିବାପାଇଁ । ସେମାନଙ୍କ କଥାକୁ ମୁଁ ଏ ପର୍ଯ୍ୟନ୍ତ ଧାରଣା ଭିତରକୁ ଆଣୁ ନ ଥିଲି । ଭାବୁଥିଲି, ମୋ ଭଳି କ୍ଷୁଦ୍ର ବ୍ୟକ୍ତିର ଜୀବନବୃତ୍ତାନ୍ତରେ ଲାଭ କଅଣ ? କିନ୍ତୁ ଜରା ଯେତେବେଳେ ମୋତେ ସଂପୂର୍ଣ୍ଣ ନିସ୍ତେଜ କରିଦେଲା, ସେତେବେଳେ ଏକ ବ୍ୟାମୋହ ମୋର ମନକୁ ଆଚ୍ଛନ୍ନ କଲା – ତୁଚ୍ଛ ହେଲେ ମଧ୍ୟ ଜୀବନକାହାଣୀଟି ଲେଖିବି । ଆଉ କିଛି ନ ହେଲେ ମଧ୍ୟ 'କାଳିଦାସ ଗ୍ରନ୍ଥାବଳୀ' ଓ 'ଅଶ୍ୱଘୋଷ ରଚନାବଳୀ' ମୋ କ୍ଲିଷ୍ଟପିଷ୍ଟ ଜୀବନର କଠିନ

ତପସ୍ୟା, ଯାହା କି କାହାଣୀରେ ସ୍ଥାନ ପାଇବ । କିନ୍ତୁ ଲେଖିବି କେମିତି ! ହାତ ଯେ ଶିଥିଳଃ, କଂପନଶୀଳଃ ସଂଜାତଃ । ଯେଉଁ ହାତରେ ମୁଁ ଅଜସ୍ର ଅବିରାମ ଲେଖୁଥିଲି, ସେହି ହାତରେ ବର୍ତ୍ତମାନ କଲମ ଧରିବାକୁ ମଧ୍ୟ ଅଶକ୍ତଃ ।

ମୋର ପୁତ୍ରବଧୂ ଆୟୁଷ୍ମତୀ ସଂଯୁକ୍ତା ଓ ବି.ଏସ୍‌ସି. ପଢୁଥିବା ନାତି ଆୟୁଷ୍ମାନ୍ ଶୌର୍ଯ୍ୟବ୍ରତ ଆଗେଇ ଆସିଲେ ସାହାଯ୍ୟ କରିବାପାଇଁ । ନିଜ ନିଜର ସୁବିଧା ଅନୁସାରେ ସମୟ ଦେଲେ । ମୁଁ ଡାକିଲି, ସେ ଲେଖିଲେ । ଯାହା ଯେମିତି ମନେପଡ଼ିଲା, ସଂଲଗ୍ନ ବା ଅସଂଲଗ୍ନ ଭାବରେ କାଳକ୍ରମିକ ବା କାଳ ବ୍ୟତିକ୍ରମିକ ଭାବରେ, ମୋର ଉଚ୍ଚାରଣକୁ ସେମାନେ ଲିପିରୂପ ଦେଲେ । ମୋର ପ୍ରିୟ ଛାତ୍ର କବିପ୍ରାଣ କବି ଶ୍ରୀମାନ୍ ଗିରିଜାକୁମାର ବଳୀୟାରସିଂହ ସେହି ଲିପିରୂପକୁ ପୁସ୍ତକ ରୂପ ଦେଲେ ।

ମୁଁ ସମସ୍ତଙ୍କୁ ମୋର ସ୍ନେହ, ଶ୍ରଦ୍ଧା, ସମ୍ମାନ, ମମତା ଓ କୃତଜ୍ଞତା ଅର୍ପଣ କରୁଛି ।

ବିନୀତ

**ଧନେଶ୍ୱର ମହାପାତ୍ର**

ଦୋଳପୂର୍ଣ୍ଣିମା, ଗୁରୁବାର

ତା ୫.୩.୨୦୧୫

କଲ୍ୟାଣୀନଗର,

କଟକ-୭୫୩୦୧୩



ଜନନୀ ସ୍ୱର୍ଗତା କମଳା ଦେବୀ



ବଡ଼ ଭାଇ ସ୍ୱର୍ଗତ ଘନଶ୍ୟାମ ମହାପାତ୍ର



ଭାଉଜ (ସ୍ୱର୍ଗତ ଘନଶ୍ୟାମ ମହାପାତ୍ରଙ୍କ ପତ୍ନୀ) ସତ୍ୟଭାମା ମହାପାତ୍ର



ପତ୍ନୀ ଶ୍ରୀମତୀ ଜୀବନକୁମାରୀ ମହାପାତ୍ରଙ୍କ ସହିତ ଲେଖକ



ସାନ ଭଉଣୀ ସ୍ୱର୍ଗତା ପାର୍ବତୀ ନନ୍ଦ



ଧନେଶ୍ୱର ମହାପାତ୍ରଙ୍କୁ ଅତିବଡ଼ୀ ପୁରସ୍କାର (୨୦୧୩),
ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କୁ ଅତିବଡ଼ୀ ପୁରସ୍କାର (୨୦୧୪) ପ୍ରଦାନ



ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ବିଶିଷ୍ଟ ବଂଗୀୟ କବି ସୁଭାଷ ମୁଖୋପାଧ୍ୟାୟଂକଠାରୁ
ଡକ୍ଟର ଧନେଶ୍ୱର ମହାପାତ୍ରଂକର ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୯୨) ଗ୍ରହଣ,
ଉପସ୍ଥିତ ଅଛଂତି ତତ୍‌କାଳୀନ ରାଜ୍ୟ ସଂସ୍କୃତି ଓ ପର୍ଯଟନ ବିଭାଗ ମଂତ୍ରୀ ଶ୍ରୀ ଭୂପିଂଦର ସିଂ




ମାନ୍ୟବର ସୁପ୍ରିମ୍‌କୋର୍ଟ ଚିଫ୍ ଜଷ୍ଟିସ୍ ରଙ୍ଗନାଥ ମିଶ୍ରଙ୍କଠାରୁ
ପଣ୍ଡିତ ଗୋଦାବରୀଶ ମିଶ୍ର ସମ୍ମାନ ଗ୍ରହଣ



୩୦ତମ ଭୁବନେଶ୍ୱର ପୁସ୍ତକମେଳା (୨୦୧୪) ମଣ୍ଡପରେ ଆସାମ ରାଜ୍ୟପାଳ
ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ସମ୍ବର୍ଦ୍ଧିତ-ସାହିତ୍ୟିକ
ଡକ୍ଟର ଧନେଶ୍ୱର ମହାପାତ୍ର ଓ
ଶ୍ରୀ ଅଚ୍ୟୁତାନନ୍ଦ ପତିଙ୍କୁ ମାନପତ୍ର ପ୍ରଦାନ



ଉତ୍କଳ ସାହିତ୍ୟ ସମାଜର ୧୧୧ତମ ବାର୍ଷିକ ଉତ୍ସବରେ ଉଦ୍‌ଘାଟକ ଭୂମିକାରେ
ବିଶିଷ୍ଟ ଭାଷାତତ୍ତ୍ୱବିତ୍ ତଥା ଉତ୍କଳ-ପାଣିନି ଡକ୍ଟର ଧନେଶ୍ୱର ମହାପାତ୍ର

# ସୂଚୀ

# ନୀଳଚକ୍ର ତଳେ ଘଣ୍ଟ ଘୋଡ଼ାଇଣ

୧୯୪୨ କିମ୍ବା ୧୯୪୩ ମସିହା କଥା । କନିକା ରାଜ୍ୟରେ ଆମ ଗାଁ 'ଆୟତନ' ଏକ ତହସିଲ ଥିଲା । କନିକା ଇଂରେଜ ଶାସନରେ ଯଦିଓ ଗୋଟିଏ ଛୋଟିଆ ଜମିଦାରି ଥିଲା, ତଥାପି ତାହାକୁ ରାଜ୍ୟ କୁହାଯାଉଥିଲା । କନିକା ରାଜ୍ୟ କଟକ ଓ ବାଲେଶ୍ୱର, ଦୁଇଟି ଜିଲ୍ଲାର  ଅନ୍ତର୍ଗତ ଥିଲା । କନିକା ଜିଲ୍ଲା ଅନ୍ତର୍ଗତ ଭାଗକୁ କୁହାଯାଉଥିଲା 'ଛମୁକା' ଏବଂ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ଭାଗକୁ କୁହାଯାଉଥିଲା 'ପାଞ୍ଚମୁକା' । 'ଛମୁକା'ରେ ଛଅଟି ମୁକା (ତହସିଲ) ଥିଲା ଏବଂ 'ପାଞ୍ଚମୁକାରେ' ପାଞ୍ଚଟି ମୁକା ଥିଲା । ଆମ ଗାଁ ଥିଲା ଗୋଟିଏ ମୁକାର ମୁଖ୍ୟ ଗାଁ । ଆମ ଗାଁ ନାମ ଅନୁସାରେ ହୋଇଥିଲା ଆୟତନ ମୁକା । ମୁକା ଅର୍ଥରେ ତହସିଲ ନାମର ପ୍ରଚଳନ ମଧ୍ୟ ଥିଲା । ଆମେ ମୁକା ବା ମୁକାମ ଆୟତନ କିମ୍ବା ତହସିଲ-ଆୟତନ,ଏହିପରି ଲେଖୁଥିଲୁ । ରାଜ୍ୟ ଶବ୍ଦ ପରିବର୍ତ୍ତେ କିଲ୍ଲା ଶବ୍ଦ ମଧ୍ୟ ବ୍ୟବହୃତ ହେଉଥିଲା । (କିଲ୍ଲା - କନିକା) ଆୟତନ ତହସିଲର କଚେରି ଥିଲା ଆୟତନ ଗ୍ରାମରେ । ତେଣୁ ଆମ ଅଞ୍ଚଳରେ ଆମ ଗାଁର ଖୁବ୍ ପ୍ରାଧାନ୍ୟ ଥିଲା । ପ୍ରାୟ ୫୦ ଖଣ୍ଡ ଗ୍ରାମର ଏହା ଥିଲା ମୁଖ୍ୟ ସ୍ଥଳ । କଚେରି ଗୃହର ଏକ ବଡ ହତା ଥିଲା । ହତାର ପୂର୍ବପଟକୁ ଥିଲା ତହସିଲଦାରଙ୍କ ରହିବା ପାଇଁ ବାସଗୃହ ।

ମୁଁ ଦଶ ଏଗାର ବର୍ଷର ପିଲା ଥାଏଁ । କଚେରି ହତାର ବାହାର ପଟ ଦାଣ୍ଡ ଆଡ଼କୁ ଗୋଟିଏ ବଡ କଦମ୍ବ ଗଛ ଥିଲା  । ଦିନେ ମୁଁ ସେହି କଦମ୍ବଗଛ ମୂଳେ ଠିଆ ହୋଇଥିଲି । ଦେଖିଲି, ହତାଭିତରେ ପଚାଶ ଷାଠିଏ ଜଣ ଲୋକ ବସିଛନ୍ତି । ତହସିଲଦାର ଶ୍ରୀ କୁଞ୍ଜବିହାରୀ ମହାନ୍ତି କଚେରିଘର ଭିତରୁ ବାହାରି ଆସିଲେ । ବୟସ ଷାଠିଏ

ପାଖାପାଖି । ପିନ୍ଧି ଥାଆନ୍ତି ଛୋଟ ଧୋତି ଖଣ୍ଡିଏ ଏବଂ ଧଳା ଫତେଇ ଖଣ୍ଡିଏ । ପତଳା ଆକୃତିର ଡେଙ୍ଗା ମଣିଷଟିଏ । ହଳେ କଠଉ ମାଡ଼ି, କଚେରି ବାରଣ୍ଡାରୁ ଠକ୍ ଠକ୍ ଶବ୍ଦ କରି ଓହ୍ଲେଇ ଆସିଲେ । ଚଢା-ଗଳାରେ "ବେହି ପୋ, ବେହି ପୋ" କହୁଥାଆନ୍ତି । କେହି କେହି ଲୋକ ବାବୁଙ୍କୁ ଦେଖି ଉଠି ପଡିଲେ ଏବଂ ହାତ ଯୋଡ଼ି, ଅଣ୍ଟା ପର୍ଯ୍ୟନ୍ତ ମୁଣ୍ଡ ନୁଆଇଁ ନମସ୍କାର କଲେ । କେହି କେହି ମଧ୍ୟ ଭୂଇଁରେ ଲମ୍ବ ହୋଇ ପଡିଗଲେ । କୁଞ୍ଜ ବାବୁ ସେମାନଙ୍କ ଆଗରେ ଠିଆ ହୋଇ ଚଢା ଗଳାରେ କହିଲେ- "ବେହି ପୋ, ମାଡ଼ ଗୋଳ ତୁଟାଇବ, ନା ତମ ସମସ୍ତଙ୍କୁ ରାଜାଙ୍କ ପାଖକୁ ଘୋଷାରି ନେବି ?" ମୁଁ ବାଡ଼ ବାହାର ପଟରେ ଠିଆହୋଇ ଦେଖୁଥାଏଁ । ଲୋକମାନେ ହାତ ଯୋଡ଼ି କହିଲେ- "ଆଜ୍ଞା ହଜୁର, ଆପଣ ତୁଟାଇ ଦିଅନ୍ତୁ । ଆପଣ ଯାହା କହିବେ, ଆମେ ମାନିବୁ ।"

ବୋଧହୁଏ କୌଣସି ଗାଁର କେତେକ ଲୋକ ପରସ୍ପର ଗଣ୍ଡଗୋଳ କରିଥିଲେ । ତହସିଲଦାର ପିଆଦା ପଠାଇ ସେମାନଙ୍କୁ ଏବଂ ଗାଁର ଅନ୍ୟମାନଙ୍କୁ ଡକାଇ ଆଣିଥିଲେ । ଜଣେ ଦୌଡ଼ି ଯାଇ କଚେରି ଘରୁ ଗୋଟିଏ ଚଉକି ଘେନି ଆସିଲା । କୁଞ୍ଜବାବୁ ଆମ୍ବଗଛ ଛାଇରେ ଚଉକି ଉପରେ ବସିଲେ ଏବଂ ଲୋକମାନେ ସମସ୍ତେ ତାଙ୍କ ଆଗରେ ଭୂଇଁ ଉପରେ ବସିଗଲେ । ସେତେବେଳେ କଚେରି ଘର ସାମ୍ନାରେ ବହୁତ ଆମ୍ବଗଛ ଥିଲା ଏବଂ ସେଥି ଯୋଗୁ ଗହଳ ଛାଇ ହେଉଥିଲା । ସେହି ମାଳମାଳ ଆମ୍ବଗଛରୁ ଆଜି ଗୋଟିଏ ହେଲେ ନାହିଁ । ଯେଉଁ ବଡ କଦମ୍ବଗଛ ବର୍ଷାଋତୁ ଆରମ୍ଭ ହେଲେ ଅଜସ୍ର ଫୁଲରେ ମଣ୍ଡିତ ହୋଇ ଉଠୁଥିଲା ଏବଂ ଚତୁର୍ଦ୍ଦିଗରେ ମହକ ଖେଳାଇ ଦେଉଥିଲା, ତାହା ମଧ୍ୟ ଆଜି ନାହିଁ । ସେ ସମୟର କଚେରିଘର ମଧ୍ୟ ନାହିଁ । କୁଞ୍ଜବାବୁଙ୍କ ଆଗରେ ବିଚାର ଆଲୋଚନା ଚାଲିଲା । ମୁଁ ଯଦିଓ କିଛି ବୁଝିପାରୁ ନଥିଲି, ତଥାପି କଦମ୍ବ ଗଛ ମୂଳେ ଠିଆ ହୋଇ ଲୋକମାନଙ୍କ ଆଡକୁ ଚାହୁଁଥିଲି । ଅଳ୍ପ ସମୟ ମଧ୍ୟରେ କୁଞ୍ଜବାବୁ ବିଚାର କରି ବିବାଦ ତୁଟାଇ ଦେଲେ । ଲୋକମାନେ ନମସ୍କାର କରି ଖୁସିରେ ଚାଲିଗଲେ ।

ତହସିଲଦାର ଶ୍ରୀ କୁଞ୍ଜ ବିହାରୀ ମହାନ୍ତି ପୁରୀ ଜିଲ୍ଲା ସତ୍ୟବାଦୀ ଅଞ୍ଚଳର ଲୋକ ଥିଲେ । ତେଣୁ କଥାକଥାକେ 'ବେହିପୋ' କହିବା ତାଙ୍କର ଅଭ୍ୟାସ ଥିଲା । କିନ୍ତୁ ତାଙ୍କର ହୃଦୟ ଥିଲା କୋମଳ ଏବଂ ରୁଚି ମାର୍ଜିତ । କାହାରିଠାରୁ ସେ ଲାଞ୍ଚ ଗ୍ରହଣ କରୁନଥିଲେ । ବର୍ତ୍ତମାନ ଗଣତନ୍ତ୍ର ଶାସନରେ ଯେତେ ଲାଞ୍ଚ ମିଛ ଚାଲିଛି, ରାଜଶାସନରେ ଏପରି ନଥିଲା । କନିକା ଏକ ପୁଲିସ ଥାନା ହୋଇ ନଥିଲା । ଏହା ଆଳି ଥାନାର ଅନ୍ତର୍ଗତ ଥିଲା । ଆୟତନ ମୁକାର କୌଣସି ଗାଁରେ ଲୋକମାନଙ୍କ ମଧ୍ୟରେ ବାଦବିବାଦ ଲାଗିବାର ଶୁଣିବା ମାତ୍ରେ କୁଞ୍ଜ ବାବୁ ପିଆଦା ପଠାଇ କିମ୍ବା 'ହେଡ୍‌ମ୍ୟାନ'ଙ୍କ ଜରିଆରେ

ଲୋକମାନଙ୍କୁ ଡକାଇ ଆଣୁଥିଲେ ଏବଂ ସଂଗେ ସଂଗେ ନିରପେକ୍ଷ ଭାବରେ ସମାଧାନ କରି ଦେଉଥିଲେ । ରାଜସ୍ୱ ଆଦାୟ କରିବା ସହିତ ଶାନ୍ତିଶୃଙ୍ଖଳା ରକ୍ଷା କରିବାର ଅଧିକାର ମଧ୍ୟ ତହସିଲଦାରଙ୍କର ଥିଲା । ମୁଁ ଦେଖିଛି, କୁଞ୍ଜ ବାବୁଙ୍କ ସମୟରେ ରାଜାଙ୍କ ପକ୍ଷରୁ କଚେରି ହତା ଭିତରେ ବଡ ବଡ ଧାନକାଣ୍ଡି ଏଭଳି ଭାବରେ କରାଯାଉଥିଲା, ଯଦ୍ୱାରା ସହସ୍ରାଧିକ ମହଣ ଧାନ ସେଥିରେ ସଞ୍ଚୟ କରି ରଖାଯାଇ ପାରୁଥିଲା । କୌଣସି ବର୍ଷ ବନ୍ୟା ବା ମରୁଡ଼ିରେ ଧାନ ଫସଲ ନଷ୍ଟ ହେଲେ ଲୋକଙ୍କୁ ଧାନକାଣ୍ଡିରୁ ଧାନ ଦିଆ ଯାଉଥିଲା । ଲୋକେ ଦେଲାବେଳକୁ କିଛି ସୁଧ (ଅଧିକାଧାନ)ସହିତ ଦେଉଥିଲେ ।

କୁଞ୍ଜ ବାବୁ କାହାରିଠାରୁ ଶୁଣିଲେ, ୧୦/୧୧ ବର୍ଷର ବ୍ରାହ୍ମଣ ପିଲାଟିଏ ଗୀତ ବାନ୍ଧି ଗାଉଛି । ସେତେବେଳେ ଅନେକ ମଉଜିଆ ଲୋକ ମୋତେ ଯା ନାଆଁରେ, ତା ନାଆଁରେ ବା ଅନ୍ୟାନ୍ୟ ବିଷୟରେ ଗୀତ ବାନ୍ଧି ବୋଲିବାକୁ କହୁଥିଲେ । ମୋର ଶିକ୍ଷା ଥିଲା ପ୍ରାଥମିକ ସ୍କୁଲର ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ । ମୁଁ ସେମାନଙ୍କ ଫରମାସି ଅନୁସାରେ ମନେ ମନେ ଗୀତ ବାନ୍ଧି ସେମାନଙ୍କ ଆଗରେ ଗାଉଥିଲି । ମୁଁ ଗୀତକୁ କାଗଜ କଲମରେ ଲେଖୁ ନଥିଲି, ମନେ ମନେ ରଚନା କରି ମନେ ରଖୁଥିଲି । ଲମ୍ବା ଲମ୍ବା ଗୀତ ମଧ୍ୟ ମୋର ବହୁଦିନ ପର୍ଯ୍ୟନ୍ତ ମନେ ରହୁଥିଲା । କିନ୍ତୁ ସେସବୁ ଗୀତକୁ ଲେଖି ନରଖିବା ଫଳରେ କାଳକ୍ରମେ ମୁଁ ଭୁଲିଗଲି । କେବଳ ଗୀତ ଗୁଡ଼ିକର ପଦେ ଦୁଇପଦ ଲେଖାଏଁ ଏପର୍ଯ୍ୟନ୍ତ ମନେ ଅଛି । ଯେପରି- "କେତେ ବହୁରୂପା ହେଉ ରୂପା ଲୋ । କ୍ଷଣେ ଯଦି ଗାଆଁ ଏମୁଣ୍ଡରେ ପୁଣି କ୍ଷଣେ ଆରମୁଣ୍ଡେ ହୁମ୍ପା ଲୋ । ଅର୍ଜୁନା ସାଇରୁ ଖଟା ତୁ ଖାଇଲୁ ସେ ଦେଖି ହୋଇଲା ଖପା ଲୋ" । ଇତ୍ୟାଦି । ଆମ ଗାଁରେ ରୂପା ବୋଲି ଖରଖରୀ ଝିଅଟିଏ ଥିଲା । କେହି ଜଣେ ତା ନାଁରେ ଗୀତ ବାନ୍ଧିବାକୁ କହିବାରୁ ମୁଁ ବାନ୍ଧିଥିଲି । ସେହିପରି- "ମନ ଊଣା ନ କରି ତୁହି, ଲୋ ଉମା ବୋଉ ଗହଣା ପାଇଁ । ସୁନାର ଦୋସରି ଗଲେ ଚାପ ସରି ଗଢିଦେବି ବଣିଆକୁ ଡକାଇ" ଇତ୍ୟାଦି । ଆମ ଗାଁ ଦଉହରି (ସୂତାର) ମୋତେ କହିବାରୁ ମୁଁ ଏ ଗୀତଟି ତାକୁ ବାନ୍ଧି ଦେଇଥିଲି । ମୋ ମାମୁଁ ଘର ଗାଁ 'ଖଣ୍ଡେଇତା'ରେ ଭାବମାତା ବୋଲି ଜଣେ ମାତା ଥିଲେ । ସେ ଦିନେ ଗୁରୁଶିଷ୍ୟ ବିଷୟରେ ଗୋଟିଏ ଗୀତ ବାନ୍ଧିବାକୁ କହିବାରୁ ମୁଁ ବାନ୍ଧି ଦେଇଥିଲି - "ଜ୍ଞାନପଦ ଲୋଡ଼ି ଗୁରୁପାଦେ ପଡି ଶିଷ୍ୟ ବୋଲେ କର ଯୋଡ଼ି, କିପରି ସଂସାରୁ ତରିବି ଶ୍ରୀଗୁରୁ ବାରେ କହିଦିଅ ଫେଡ଼ି, ଅନିତ୍ୟ ସଂସାର କେହି ନୁହେଁ କାର ମାୟାରେ ଅଛନ୍ତି ଜଡି" ଇତ୍ୟାଦି ।

ଦିନେ ତହସିଲଦାର କୁଞ୍ଜ ବାବୁ କୌତୂହଳୀ ହୋଇ ମୋତେ ଡକାଇଲେ ଏବଂ ତାଙ୍କ ନାମରେ ଗୋଟିଏ ଗୀତ ବାନ୍ଧି ଗାଇବାକୁ କହିଲେ । ମୁଁ ୪/୫ ମିନିଟ୍ ନୀରବରେ

ବସି ମନେ ମନେ ପ୍ରାୟ ଦଶପଦ ଗୀତ ବାନ୍ଧି ଦେଲି ଏବଂ ଗାଇଲି । "କନିକା ଜିଲ୍ଲାରେ ଆୟତନ ପୁରେ ଅବସ୍ଥିତ ରାଜ କଚେରି, ଲୋକ ହିତକାରୀ ପରଉପକାରୀ ବିଜୟେ ଶ୍ରୀ କୁଞ୍ଜବିହାରୀ । ... ନୀଳଚକ୍ର ତଳେ ଘଣ୍ଟ ଘୋଡ଼ାଇଣ ରଖନ୍ତୁ ନୀଳାଦ୍ରିବିହାରୀ" । "ରଖନ୍ତୁ ନୀଳାଦ୍ରି ବିହାରୀ" ଏହି ଶେଷ ପଦଟି ଶୁଣି କୁଂଜ ବାବୁ ଏପରି ଖୁସି ହୋଇଗଲେ ଯେ ମୋତେ ଆଦରକରି ଧରି ଟଙ୍କାଟିଏ ପୁରସ୍କାର ଦେଲେ । ମୁଁ ଟିକିଏ ବଡ ହେବା ପରେ କୁଂଜବାବୁ ମୋତେ ପୁରୀ ନେଇ ସଦାଶିବ ସଂସ୍କୃତ କଲେଜରେ ମୋର ନାମ ଲେଖାଇଥିଲେ ଏବଂ କଲେଜ ଛାତ୍ରାବାସରେ ଅସ୍ଥାୟୀ ଭାବେ ରଖାଇ କୌଣସି ମଠରୁ ମୋ ପାଇଁ ଖାଦ୍ୟ- ପେୟର ବ୍ୟବସ୍ଥା କରିବାକୁ ବୁଝାବୁଝି କରୁଥିଲେ । କିନ୍ତୁ ମୁଁ ପୁରୀରେ ଭୀଷଣ ବାତଜ୍ୱରରେ ଆକ୍ରାନ୍ତ ହୋଇପଡିବାରୁ ଗାଁକୁ ଫେରିଆସିବାକୁ ବାଧ ହୋଇଥିଲି । ପୁରୀ ସଦାଶିବ ସଂସ୍କୃତ କଲେଜ ଛାତ୍ରବାସରେ ମୁଁ ୧୫/୧୭ ଦିନ ମାତ୍ର ଥିଲି ଏବଂ ୭/୮ ଦିନ ମାତ୍ର ଶ୍ରେଣୀକୁ ପଢିବାକୁ ଯାଇଥିଲି । କିନ୍ତୁ ଭୀଷଣ ବାତଜ୍ୱରରେ ପୀଡ଼ିତ ହେବାରୁ ଏବଂ ଡାହାଣଗୋଡ଼ ଫୁଲିବାରୁ ଅତ୍ୟନ୍ତ କଷ୍ଟ ପାଇ ପୁରୀରୁ ଫେରି ଆସିଥିଲି ।

ତହସିଲଦାର କୁଞ୍ଜବିହାରୀ ମହାନ୍ତି ବର୍ତ୍ତମାନ ସ୍ୱର୍ଗବାସୀ । ସେ ଅଯାଚିତ ଭାବରେ ମୋ ପ୍ରତି ଯେତିକି ଉଦାରତା ଦେଖାଇଥିଲେ, ସେତିକି ମଧ୍ୟ ମୋର ଆଜୀବନ କୃତଜ୍ଞତା ଓ ସ୍ମରଣର ବିଷୟ ହୋଇ ରହିବ ।

•••

# ବରପିଲା ପଳେଇ ଯାଉଥିଲା

ମୋତେ ଚଉଦ ପୂରି ପନ୍ଦର ଚାଲିଥାଏ । ଆଷାଢ଼ ମାସ । ମୁଁ ଦିନେ ବିଲ ବାଛି ସାରି ବଛାଘାସ ଗୋଛାଏ ମୁଣ୍ଡରେ ମୁଣ୍ଡେଇ ଘରେ ପହଞ୍ଚିଲି । ଓଦା ଘାସରୁ କାଦୁଅ ପାଣି ଗଡି ଦେହସାରା ପଡିଥାଏ, ବାଡ଼ି ଦୁଆର ମୁହଁରେ ଘାସ ବୋଝ ପକାଇ ଦେଲା ବେଳକୁ ବୋଉ ଆସି କହିଲା- "ଚଞ୍ଚଳ ଗାଧୋଇ ପଡ, ଖାଇଦେ । ପେଗର ପଡାରୁ ଜଣେ ଲୋକ ଆସିଛନ୍ତି । ତାଙ୍କ ସାଙ୍ଗରେ ଯିବୁ ।" କିଏ ଆସିଛନ୍ତି, କାହିଁକି ଆସିଛନ୍ତି, ପଚାରି ବୁଝିବାକୁ ମୋର ତର ନଥିଲା । କାରଣ, ଭାରି ଭୋକ ଲାଗୁଥାଏ । ସଙ୍ଗେ ସଙ୍ଗେ ପୋଖରୀରେ ବୁଡ଼ି ପଡି ଆସିଲି, ବୋଉ ପଖାଳ ଭାତ ଓ ଶାଗ ବାଢି ଦେଲା । ତିନି ଚାରି ମିନିଟ୍‌ରେ ଖାଇଦେଲି, ତାପରେ ବୋଉକୁ ପଚାରିଲି- 'ବୋଉ, କିଏ ଆସିଛନ୍ତି ?'

ବୋଉ ଚୁପ୍ ଚୁପ୍ କହିଲା - "ତୋ ଖୁଡୁତାଶୁର ହେବେ । ତାଙ୍କ ବଡ ଭାଇଙ୍କ ଝିଅକୁ ତୁ ବାହା ହବୁ । ତୋତେ ନବାପାଇଁ ଆସିଛନ୍ତି । ତୁ ତାଙ୍କ ସାଙ୍ଗରେ ଯାଆ । କାଲି ତୋର ବାହାଘର ହବ ।"

ମୋ ବାହାଘର ହେବ ବୋଲି ମୁଁ ଆଗରୁ କିଛି ଜାଣି ନଥିଲି । ତେଣୁ ବୋଉ କଥା ବୁଝି ପାରିଲି ନାହିଁ । ଖାଲି କହିଲି - "ବାହାଘର ପରେ ହେଲେ ଚଳିବନି ?" ବୋଉ କହିଲା - "ତୋ ଗୋଡ଼ରେ ବାତ ଧଇଲାଣି, ପରେ କନିଆ ମିଳିବନି । ତୁ ଯାଙ୍କ ସାଙ୍ଗରେ ଯାଆ । ପେଗରପଡାରେ ଲକ୍ଷ୍ମଣ ଶତପଥୀଙ୍କ ସାନଝିଅ ସାଙ୍ଗରେ ତୋର ବାହାଘର ହବ । ତୁ ବାହା ହୋଇ ସାତଦିନ ରହି ଆସିବୁ ।"

ମୁଁ ଆଉ କିଛି ଜାଣିବାକୁ ଇଚ୍ଛା ନ କରି ବୋଉ କଥା ମାନି ନେଲି । ବୋଉ କାଇଁଚ ପେଡ଼ିରୁ ଲୁଗାଖଣ୍ଡିଏ ଓ ଜାମା ଖଣ୍ଡିଏ କାଢି ଦେଲା । ତାହା ଧୋବା ଖାରରେ କଚା ହୋଇଥିଲା । ବୋଉ ତାହାକୁ ପେଡ଼ିରେ ଜାକିଜୁକି ରଖି ଦେଇଥିଲା । (ବର୍ତ୍ତମାନ ସମୟରେ ଯେଉଁ ଲୁଗାକୁ ଧୋବାଘରେ ଦିଆଯାଉଛି ବା ସାବୁନରେ ସଫା କରାଯାଉଛି, ସେ ସମୟର ଧୋବା ଖାରକଚା ଲୁଗା ତା ଠାରୁ ଅଧିକ ମଇଳା ଦିଶୁଥିଲା) ମୁଁ ଲୋଚା କୋଚା ଲୁଗାଖଣ୍ଡିକ ପିନ୍ଧି ଓ ଜାମା ଖଣ୍ଡିକ ମଡେଇ ଲୋକଟିକୁ (ଖୁଡୁତାଶୁରଙ୍କୁ) ଯାଇ ନମସ୍କାର କଲି, ସେ ଆମ ଘରେ ବସିଥିଲେ, ମୋତେ ଦେଖି ବହୁତ ଖୁସି ହୋଇଗଲେ । କହିଲେ - "ବାବୁ ଚାଲ ଯିବା ।"

ସେ ଆଗେ ଆଗେ ଚାଲିଲେ, ମୁଁ ପଛେ ପଛେ ଚାଲିଲି । ବାଟରେ ଆମେ ଦୁହେଁ କିଛି କଥାବାର୍ତ୍ତା ହେଉ ନ ଥିଲୁ । ସେ ମୋତେ କିଛି ପଚାରିଲେ ନାହିଁ କି ମୁଁ ତାଙ୍କୁ କିଛି ପଚାରିଲି ନାହିଁ । ମୋ ପାଦରେ ଚପଲ କି ଜୋତା ନଥାଏ, ତାଙ୍କ ପାଦରେ ମଧ୍ୟ ଚପଲ କି ଜୋତା ନଥାଏ । ଦୁହେଁ ଚାଲି ଚାଲି କୋରନ୍ଦ ଗାଁ ମୁଣ୍ଡ ଗଣ୍ଡ ପାଖରେ ବନ୍ଧ ଉପରୁ ଗଡ଼ି ବିଲେ ବିଲେ ଯାଇ ଗିରିୟା ଗ୍ରାମ ଧରିଲୁଁ ଏବଂ ସେଠାରୁ ଆମ୍ବତୋଟା ଭିତରେ ପଶି ଗଂଙ୍ଗା ନଈକୂଳରେ ପହଞ୍ଚିଲୁ । ନଈ କୂଳେ କୂଳେ ଯାଇ ପହଞ୍ଚିଲୁ ଝରମ ଗାଁର ଜଣେ ଚିକିତ୍ସକଙ୍କ ଘର ପାଖରେ ।

ଖୁଡୁତାଶୁର କହିଲେ - "ବାବୁ, ଏଇଠି ଟିକିଏ କାମ ଅଛି । କାମ ସାରି ଦେଇ ନଈ କୂଳେ କୂଳେ ବଗି ବନ୍ଧକୁ ଉଠିବା । ମୋ ସାଂଗରେ ଆସ ।" ମୁଁ କିଛି ନ କହି ପଛେ ପଛେ ଚିକିତ୍ସକଙ୍କ ଘର ଆଡକୁ ଗଲି । ଚିକିତ୍ସକଙ୍କ ଘର ଆଗରେ ଥିଲା ପ୍ରଶସ୍ତ ଅଗଣା । ସେଠାରେ ଗୋଟିଏ ମାତ୍ର ଚଉକି ପଡିଥାଏ । ବୋଧହୁଏ ଚିକିତ୍ସକବାବୁ ବସିଥିଲେ, ଅଳ୍ପ ସମୟ ପୂର୍ବରୁ ଉଠି ଯାଇଥିଲେ । ଖୁଡୁତାଶୁର ମୋତେ ସେହି ଚଉକିରେ ବସାଇ ଦେଇ ତାଙ୍କ ଘର ଭିତରକୁ ଗଲେ । ମୁଁ ଚଉକିରେ ବସିଥାଏ । ଆଉ କେହି ନଥାନ୍ତି । ଏହି ସମୟରେ ଦୁଇଜଣ ଭଦ୍ରଲୋକ ସେଠାକୁ ଆସିଲେ । ଦୁହିଁଙ୍କ ମଧ୍ୟରେ ଜଣେ ଖୁବ୍ ଗମ୍ଭୀର, ବଡ ଲୋକ ଭଳି ଜଣାପଡୁଥିଲେ । ଦୁହେଁ ସେହି ସ୍ଥାନକୁ ଆସି ଦୁଇ ତିନି ମିନିଟ୍ ପଦଚାରଣା କଲେ । ମୁଁ ସେହି ପରି ଚୁପ୍ ଚାପ୍ ବସିଥାଏ । ହଠାତ୍ ଦ୍ୱିତୀୟ ଲୋକଟି ମୋ ପାଖକୁ ଆସି ଚଡା ଗଳାରେ କହିଲେ -ତୋ ଘର ? ମୁଁ କହିଲି- ଆୟତନ ।

ତୋ ନାଁ ?

ଧନେଶ୍ୱର ମହାପାତ୍ର ।

କିଛି ପାଠ ପଢିଛୁ ?

ହଁ ।

କଅଣ ପଢିଛୁ ?

ଆୟତନ ଉପ୍ରା ସ୍କୁଲରେ ଚତୁର୍ଥ ଶ୍ରେଣୀ ପଢିଛି ।

ସେ ଆହୁରି ଚଢା ଗଳାରେ କହିଲେ- ତୁ ପାଠ ପଢିଛୁ, ଏଠି ରାଜକନିକା ଏମ୍.ଇ. ସ୍କୁଲର ହେଡ୍‌ମାଷ୍ଟର ଠିଆ ହୋଇଛନ୍ତି, ତୁ ଚଉକିରେ ବସିଛୁ ! ମୂର୍ଖ !

ମୁଁ ଭୟରେ ଉଠିପଡି ଠିଆ ହୋଇଗଲି । କହିଲି- ମୁଁ ଚିହ୍ନିନି । ମୋତେ ଏଇଠି ବସେଇ ଦେଇଗଲେ । ମୁଁ ବସିଚି ।

ଏହି ସମୟରେ ଖୁଡୁତାଶୁର ଚକିସକଙ୍କ ଘରୁ ବାହାରି ଆସିଲେ । କହିଲେ- ଆସ ବାବୁ ଯିବା ।

ମୁଁ ତାଙ୍କ ପଛେ ପଛେ ଚାଲିଲି । କିନ୍ତୁ ମୁଣ୍ଡଟା ଘୂରି ଯାଉଥାଏ, ଦେହ ଝିମି ଝିମି ହୋଇଯାଉଥାଏ, ପାଦ ଆଗକୁ ପଡୁ ନଥାଏ । 'ମୂର୍ଖ' ଶ୍ୱବଦଟା ମୋତେ ଅସ୍ଥିର କରି ପକାଉ ଥାଏ । ମଝିରେ ମଝିରେ ମୁଁ ଠିଆ ହୋଇ ଯାଉଥାଏ । ଖୁଡୁତାଶୁର କହୁଥାଆନ୍ତି - "ବାବୁ, ଟିକିଏ ଶୀଘ୍ର ଶୀଘ୍ର ଗୋଡ଼ କାଢି ଆସ ।" ମୁଁ ପୁଣି ଯାଉଥାଏ, ପୁଣି ଠିଆ ହୋଇଯାଉଥାଏ । ସେ ପୁଣି କହୁଥାଆନ୍ତି, ମୁଁ ପୁଣି ଯାଉଥାଏଁ । ଏହିପରି ଦୁହେଁ ଯାଇ ବଗିବନ୍ଧ ଉପରକୁ ଉଠିଲୁଁ । ମୁଁ ହଠାତ୍ ପଛକୁ ଦୌଡିଲି । ଖୁଡୁତାଶୁର କିପରି ଜାଣିପାରି ପଛକୁ ଜୋରରେ ଦଉଡ଼ି ଆସି ମୋତେ ଧରିପକେଇଲେ । ମୁଁ ବସି ପଡି କହିଲି - "ନା, ମୁଁ ଯିବିନି । ମୁଁ ବାହା ହେବିନି । ମୁଁ ଘରକୁ ଯିବି । ମୋ ମୁଣ୍ଡ କଣ ହେଇଯାଉଛି ।"

ଖୁଡୁତାଶୁର ଆଶ୍ଚର୍ଯ୍ୟ ହୋଇଗଲେ । ବୁଝାଇ କହିଲେ- "ବାବୁ, ଆସନ୍ତା କାଲି ବାହାଘର । ବନ୍ଧୁ ବାନ୍ଧବ, ଝିଅ ଝିଆଣି ଆସିଲେଣି । ତୁମେ ଘରକୁ ଯିବ ବୋଲି କହୁଛ କିପରି ?" ସେ ମୋର ଦେହ ମୁଣ୍ଡ ଆଉଁଷି ଦେଲେ, ଦେହ କଅଣ ହଉଛି ବୋଲି ପଚାରିଲେ । ବହୁତ ବୁଝାଇ ଶୁଝାଇ ସାବଧାନତା ସହକାରେ ମୋତେ ସାଙ୍ଗରେ ନେଇ ପେଗରପଡାରେ ପହଞ୍ଚିଲେ । ପ୍ରାୟ ପାଞ୍ଚ ମାଇଲ ବାଟ ଚାଲି ଚାଲି ଯାଇ ମୁଁ ଅବଶ ହୋଇ ପଡିଥିଲି । ମୋର ମନ ଓ ଦେହ ନିତାନ୍ତ ଅବସନ୍ନ ହୋଇ ପଡିଥିଲା । ମୁଁ ଶୋଇପଡିଲି ।

ଖୁଡୁତାଶୁର ତାଙ୍କ ଘରେ କହିଦେଲେ ଯେ ବରପିଲା ପଳେଇ ଯାଉଥିଲା । ତେଣୁ ତାଙ୍କ ଘରେ ସମସ୍ତଙ୍କର ଧାରଣା ହୋଇଗଲା, ବର ପିଲାଟା ପାଗଳା, ତା ଆରଦିନ ମୋର ବିଭାଘର ହେଲା । କିନ୍ତୁ କିପରି ବିଭାଘର ହେଲା, ମୁଁ ଜାଣି ପାରିଲି

ନାହିଁ । ମୋତେ କିଛି ଭଲ ଲାଗିଲା ନାହିଁ । ଖାଲି ପଳେଇବି ପଳେଇବି ବୋଲି କହିଲି । ସେ କାଳରେ ଶ୍ୱଶୁରଘରେ ବୋଇଁ ସାତଦିନ ରହିବାର ବିଧି ଥିଲା । ଏହା ଥିଲା ବ୍ରାହ୍ମଣ କୁଳର ବିଧି । ମୁଁ କିନ୍ତୁ ତିନିଦିନ ରହିଲା ପରେ ଚତୁର୍ଥ ଦିନ ଘରକୁ ଆସିବାକୁ ଜିଦ୍ ଧରିଲି । କିଛି ଖାଇଲି ନାହିଁ, କାନ୍ଦିଲି । ସମସ୍ତେ ଦୁଃଖିତ ତଥା ବିସ୍ମିତ ହେଲେ । ମୁଁ ଯେ ପାଗଳ ପ୍ରକୃତିର ପିଲା, ଏହା ସମସ୍ତଙ୍କ ମନରେ ଆହୁରି ଦୃଢୀଭୂତ ହୋଇଗଲା, ମୁଁ ଘରକୁ ଆସିବାକୁ ଖାଲି କାନ୍ଦିଲି । ଅଗତ୍ୟା ଶ୍ୱଶୁରଘର ମୋତେ ଘରକୁ ପଠାଇବାକୁ ଉଚିତ ମନେ କଲେ । ଗୋଟିଏ ପାଟ ଯୋଡ଼ ପିନ୍ଧିବାକୁ ଦେଲେ । ଆଙ୍ଗୁଠିରେ ସୁନାମୁଦିଟିଏ ପିନ୍ଧାଇ ଦେଲେ । ଆଟିକାଏ ମିଠେଇ ପ୍ରସ୍ତୁତ କରି ବାରିକ ଓ ନିତିଆ (ସାନ ଶାଳକ) ସାଙ୍ଗରେ ମୋତେ ପଠେଇ ଦେଲେ । ଘରେ ମୋ ବୋଉ ବହୁତ ଦୁଃଖିତ ହେଲା । ଚାରି ଦିନରେ କାହିଁକି ପଳେଇ ଆସିଲୁ ବୋଲି ପଚାରିଲା । ମୁଁ କିଛି କହିଲି ନାହିଁ । ସଂଗେ ସଂଗେ ପଣ୍ଡିମପଟ ବିଲକୁ ଚାଲିଯାଇ ଆମ୍ବ ତୋଟାରେ ବୁଲିଲି ।

ସେହି ସମୟ ଠାରୁ ମୋ ଶ୍ୱଶୁର ଘରେ ସମସ୍ତଙ୍କ ଧାରଣା ରହିଲା ମୁଁ ପାଗଳା । ମୋ ପତ୍ନୀଙ୍କର ସେତେବେଳେ ବୟସ ଥିଲା ତେର । ଶିକ୍ଷା ଥିଲା ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ । ନାମ ଜୀବନ କୁମାରୀ । କିନ୍ତୁ ସେତିକି ବିଦ୍ୟାରେ ସେ ମୋର ଆଜୀବନ ଉପଯୁକ୍ତ ସହଧର୍ମିଣୀ ହୋଇ ରହିଆସିଛନ୍ତି । ଆମ ମଧ୍ୟରେ କେବେ ମନାନ୍ତର ଘଟିନାହିଁ । ଦୁହେଁ କଠିନ ପରିଶ୍ରମ କରି ପରିବାର ଚଳେଇ ଆସିଛୁ । ବର୍ତ୍ତମାନ ବୃଦ୍ଧାବସ୍ଥାରେ ଦୁହେଁ ବସି ଆଳାପ କରୁଛୁଁ ଏବଂ ଆଳାପକୁ ସମୟର ଶ୍ରେଷ୍ଠ ସଦୁପଯୋଗ ବୋଲି ମନେ କରୁଛୁ ।



# ଏଣୁଅ ଡେଇଁ ଡେଇଁ ଶିଜୁ ବୁଦାମୂଳକୁ

ପାଠ ପଢିନଥିଲି ବୋଲି ବିଭା ହେବାକୁ ଯିବା ବେଳେ ଅପମାନ ପାଇଲି ସିନା, କିନ୍ତୁ ପାଠ ପଢିବାକୁ ଭାବି ଭାବି କିଛି କୂଳକିନାରା ପାଇଲି ନାହିଁ । ମୋ ବଡ ଭାଇ (ଦୁଇ ବର୍ଷ ମାତ୍ର ବଡ) ଘନଶ୍ୟାମ ମହାପାତ୍ର, (୧୯୮୪ରୁ ସ୍ୱର୍ଗତ) ସେତେବେଳେ ପେଟ ପୋଷିବାକୁ ସାନ ମାମୁଁଙ୍କ ସାଙ୍ଗରେ କଲିକତା ଯାଇଥାନ୍ତି । ସେ ବିଭା ହୋଇସାରିଥାନ୍ତି, କିଂତୁ ଭାଉଜ ପିଲା ଥିବାରୁ ଆମ ଘରକୁ ଆସିନଥାନ୍ତି । ମୋ ସ୍ତ୍ରୀ ମଧ୍ୟ ଆସିନଥାନ୍ତି । ମୁଁ ପେଟ ପୋଷିବାକୁ ଦୁଇ ତିନି ଜାଗାରେ ଠାକୁର ପୂଜା କରୁଥାଏଁ ଏବଂ ଗାଈଗୋରୁ ଚରାଇବା ଓ ବିଲବାଡ଼ି କାମ ମଧ୍ୟ କରୁଥାଏଁ । ଘରେ ବୋଉ ଓ ସାନ ଭଉଣୀ ପାର୍ବତୀ । ଏପରି ଅବସ୍ଥାରେ କୌଣସି ସ୍କୁଲରେ ପଢିବା ମୋ ପକ୍ଷରେ ଆଦୌ ସମ୍ଭବ ହେଲା ନାହିଁ ।

ଆମ ଗାଁ ପାଖରେ ଶିକୋ ଗ୍ରାମ । ଶିକୋରେ ପଣ୍ଡିତ ଦୟାନିଧି ମହାପାତ୍ରଙ୍କ ଘର ଥିଲା । ସେ ଥିଲେ ମୋ ଭାଉଜଙ୍କର ଜକେଇ ପୁଅ ଭାଇ । ସେତେବେଳେ ସେ କୁଜଙ୍ଗର ଏକ ଟୋଲରେ (ମଦନ ମୋହନ ଟୋଲ, ଗ୍ରାମ ମହ୍ଲାସାହି) ପଣ୍ଡିତ ଥିଲେ । ସେ ସେଠାରେ ରହୁଥିଲେ, ମଧ୍ୟେ ମଧ୍ୟେ ଘରକୁ ଆସୁଥିଲେ । ମୁଁ ଦିନେ ଶିକୋ ଯାଇ ତାଙ୍କୁ ସାକ୍ଷାତ କଲି ଏବଂ କିପରି ସଂସ୍କୃତ ପଢିପାରିବି, ପଚାରିଲି । ସେ ମୋତେ କହିଲେ - "ତୁମେ ଦୁଇଟି ମାସ ପାଇଁ ମୋ ପାଖକୁ କୁଜଙ୍ଗ ଯିବ, ସଂସ୍କୃତ ପରୀକ୍ଷା ଦେବ । ଯାଇ ପାରିବ ?" ମୁଁ କୌଣସି ମତେ ଦୁଇଟି ମାସ ପାଇଁ ଯାଇପାରିବି ବୋଲି କହିଲି । ପରେ ବୋଉକୁ ଆସି କହିଲି । ବୋଉ ରାଜି ହେଲା । ମୋତେ ସେତେବେଳେ

ପନ୍ଦର ପୂରି ଷୋହଳ ଚାଲୁଥାଏ । ଫେବୃୟାରୀ ମାସ । ପଣ୍ଡିତଙ୍କ ସାଂଗରେ କୁଜଙ୍ଗ ବାହାରିଲି ।

ଆମେ ସକାଳ ପ୍ରାୟ ଆଠଟା ବେଳେ ଘରୁ ବାହାରିଲୁ । ମୋ କାନ୍ଧରେ ଗୋଟିଏ ଟିଣ ସୁଟ୍‌କେଶ୍ । ତାଙ୍କ କାନ୍ଧରେ ଗୋଟିଏ ଟିଣ ସୁଟ୍‌କେଶ୍ । ସୁଟକେଶ୍‌ରେ ମୁଖ୍ୟତଃ ଦୁଇ ଦିନ ପାଇଁ ଚୂଡ଼ା, ଗୁଡ଼ ଓ ଲୁଣ ଥାଏ । ଆଉ ଚଳିବାପାଇଁ ଅଳ୍ପ କିଛି ସାମଗ୍ରୀ ଥାଏ । ଦୁହେଁ ବିଲେ ବିଲେ ଯାଇ ତାଳିକାଏନ୍ଦା ଗ୍ରାମକୁ ଉଠିଲୁ । ସେଠାରୁ ଖରସୁଆ ନଈର ଛନ୍ଦାଘାଟ ପର୍ଯ୍ୟନ୍ତ ବିଲେବିଲେ ଯାଇ ଆଳିର ଟମାରଖଟି ଗାଁକୁ ଉଠିଲୁଁ । ସେତେବେଳେ ଆଳି ନୂଆ ବଜାରର ଅସ୍ତିତ୍ୱ ନଥିଲା । ଆଳିରୁ ପଟାମୁଣ୍ଡାଇ ପର୍ଯ୍ୟନ୍ତ କଚା ରାସ୍ତାଟିଏ ଥିଲା । ବ୍ରାହ୍ମଣୀ ନଦୀରେ ପତ୍ରପୁର ଠାରେ ପୋଲ ହୋଇ ନଥିଲା । ସେ କାଳରେ ଆଳି ରାଜ୍ୟଟି (ଜମିଦାରିଟି) ପ୍ରାକୃତିକ ଭାବେ ଅତ୍ୟନ୍ତ ସୁନ୍ଦର ଥିଲା । ବହୁତ ଗହଳିଆ ଆମ୍ବ ତୋଟା । ରାସ୍ତାର ଦୁଇ ପାଖରେ ବହଳିଆ ଗଛ । ଖରା ଆଦୌ ବାଧୁନଥାଏ । କୋଇଲି ଗୀତ ନୂଆ ନୂଆ ଶୁଭୁଥାଏ । ଆମେ ଖାଲି ପାଦରେ ଚାଲୁଥାଉ । ସେତେବେଳେ ଜୋତା, କି ଚପଲ ପିନ୍ଧିବାର ଅଭ୍ୟାସ ଆମର ନଥିଲା । ଚାଲି ଚାଲି ଯାଇ ପତ୍ରପୁରଠାରେ ପହଞ୍ଚିଲୁ ଏବଂ ଘାଟ ଡଙ୍ଗାରେ ବ୍ରାହ୍ମଣୀ ନଦୀ ପାର ହେଲୁ । ପୁଣି ଚାଲି ଚାଲି ଯାଇ ପହଞ୍ଚିଲୁ ପଟାମୁଣ୍ଡାଇରେ । ବର୍ତ୍ତମାନର ପଟାମୁଣ୍ଡାଇ ସହର ସେତେବେଳେ ଜନ୍ମଲାଭ କରିନଥିଲା । ଥିଲା ଗୋଟିଏ ଗହଳି ବସ୍ତି ଜାଗା ମାତ୍ର । ଅଳ୍ପ କେତୋଟି ଚାଳଘର ଦୋକାନ । ପଟାମୁଣ୍ଡାଇରୁ କେନ୍ଦ୍ରାପଡାକୁ ପିଚୁ ସଡକ ନଥିଲା । କଚା ନାଳିଗୁଡି ସଡକରେ ଚାଲୁଥିଲା ଗୋଟିଏ ଦୁଇଟି କାଠଡବା ଭଳି ମଟରଗାଡ଼ି । ଆମେ ପହଞ୍ଚିଲା ବେଳରୁ ଗାଡ଼ି ସମୟ ବହୁତ ବିଳମ୍ବ ଥାଏ । ତେଣୁ ଆମେ ଅପେକ୍ଷା ନକରି କେନ୍ଦ୍ରାପଡା ଆଡକୁ ଚାଲିଲୁ । ଚାଲିଚାଲି କେନ୍ଦ୍ରାପଡାରେ ପହଁଚିଲା ବେଳକୁ ସୂର୍ଯ୍ୟାସ୍ତ ହୋଇ ଯାଇ ଥାଏ । ବାଟରେ ଚୂଡ଼ାଗୁଡ ଖାଇଥିଲୁ । ଆମ ଗାଁରୁ କେନ୍ଦ୍ରାପଡା ପ୍ରାୟ ୨୫ ମାଇଲ (ପ୍ରାୟ ୫୦ କି ମି) ।

କେନ୍ଦ୍ରାପଡାର ଗୋବରୀ ନଈ କୂଳରେ ଜଣେ ବାବାଜୀଙ୍କର ଗୋଟିଏ ଚାଳଘର ମଠ ଥିଲା । ଆମେ ସେଠାରେ ରହିଲୁ । ମୋର ଓ ପଣ୍ଡିତଙ୍କର ପାଦ ଦରଜ ହୋଇ ଯାଇଥାଏ । ମୋର ବେଶୀ, ପଣ୍ଡିତଙ୍କର କମ୍ । କାରଣ, ତାଙ୍କର ଆଗରୁ ଚାଲିବାର ଅଭ୍ୟାସ ଥିଲା । ସେ ବର୍ଷକୁ ଦୁଇ ତିନି ଥର ଚାଲି ଚାଲି କୁଜଂଗରୁ କନିକା ଆସୁଥିଲେ । ବାବାଜୀ ନିଜେ ରୋଷେଇ କରି ଅନ୍ନ ଓ ଡାଲମା ପ୍ରସ୍ତୁତ କଲେ । ଦିଅଁଙ୍କୁ ନୈବେଦ୍ୟ ଦେଇ ଆମକୁ ଖାଇବାକୁ ଦେଲେ । ଶୋଇବାକୁ ଖଜୁରିପତ୍ରରେ ବୁଣା ସପ ଖଣ୍ଡିଏ ଦେଲେ । ଆମେ ପାଦରେ ସୋରିଷ ତେଲ ମାଲିସ୍ କରି ଗାଢ ନିଦରେ ଶୋଇ ପଡିଲୁ ।

ପରିଦିନ ବାଟରେ ପଣ୍ଡିତଙ୍କୁ ପଚାରି ବୁଝିଥିଲି ଯେ ବାବାଜୀ ଅତିଥି ଅଭ୍ୟାଗତଙ୍କୁ ଖାଇବାକୁ ଦେଉଥିଲେ, କାହାରି ଠାରୁ ପଇସାଟିଏ ନେଉନଥିଲେ ।

ସକାଳୁ କେନ୍ଦ୍ରାପଡାରୁ ବଳଦେବଜୀଉଙ୍କ ମନ୍ଦିର ବାଟ ଦେଇ ଆମେ ଚାଲିଲୁ ମାର୍ଶାଘାଇ ଆଡକୁ । ମାର୍ଶାଘାଇକୁ ପିଚୁରାସ୍ତା ଦୂରର କଥା, କଚା ରାସ୍ତା ମଧ୍ୟ ନଥିଲା । କେବଳ ଲୋକଙ୍କ ଚାଲିବାରେ ରାସ୍ତା ଭଳି ଚିହ୍ନ ପଡିଯାଇଥିଲା । ଆମେ ମାର୍ଶଘାଇ ଠାରେ ପହଞ୍ଚି ଘାଟ ଡଙ୍ଗାରେ ଚିତ୍ରୋତ୍ପଳା ନଦୀ ପାରି ହୋଇ କୁଆଁରୀପାଳ ନାମକ ଗ୍ରାମ ପାଖ ଦେଇ ବିଲେ ବିଲେ ଚାଲିଲୁ । ଚିତ୍ରୋତ୍ପଳା ନଦୀକୂଳର କ୍ଷେତଦୃଶ୍ୟ ଏବେ ମଧ୍ୟ ମୋ ଆଖି ଆଗରେ ନାଚି ଉଠୁଛି । ବାଇଗଣ, କଲରା, କଖାରୁ, ମକା, ତରଭୁଜ, ଲଙ୍କା ଆଦି ଫସଲରେ ନଦୀକୂଳ ସବୁଜବର୍ଣ୍ଣ ଦିଶୁଥାଏ । ବାଟରେ ଆମେ ଆଉ କୌଣସି ଗ୍ରାମ ପାଖ ଦେଇ ଯାଇଥିବାର ମନେ ପଡୁନାହିଁ । କେବଳ ବିଲେ ବିଲେ ଚାଲି ଚାଲି ଯାଇ ତିଖିରି ନାମକ ଗ୍ରାମରେ ପହଁଚିଲୁ । ତା ପୂର୍ବରୁ କାଠୁଆ (ଛୋଟ ଡଙ୍ଗା)ଟିରେ ଏକ ଜୋଡ଼ (ନାଳ) ପାରି ହୋଇ ଆସିଲୁ । ତିଖିରି ପାଖରେ ପୁଣି ଏକ ନଈ ଡଙ୍ଗାରେ ପାରି ହେଲୁ । ସେଠାରୁ ଚାଲି ଚାଲି ଯାଇ ଅପରାହ୍ନ ପ୍ରାୟ ୫ଟା ବେଳକୁ ତାଳଦଣ୍ଡା କେନାଲ ବନ୍ଧ ଉପରକୁ ଉଠିଲୁ । ପାଖରେ ତାଳଦଣ୍ଡା ଗ୍ରାମ । ସେହି ଗ୍ରାମଠାରୁ ମହ୍ଲାସାହି ଗ୍ରାମ ଅଳ୍ପଦୂର । ଆମେ ବିଲେ ବିଲେ ଯାଇ ପହଁଚିଲୁ ମଦନ ମୋହନ ମଠରେ । ମଠ ପରିସର ଭିତରେ ମଦନ ମୋହନ ଟୋଲ । ଗୋଟିଏ ଛୋଟ ଚାଳଘର ମାତ୍ର ।

ଦ୍ୱିତୀୟ ଦିନ ଆମେ ପ୍ରାୟ ୩୦ ମାଇଲ୍ (୬୦ କି.ମି.) ଅତିକ୍ରମ କରିଥିଲୁ । ପୂରା ଦୁଇଦିନ ଚାଲି ଚାଲି ଆମର ପାଦ ଫୁଲି ଯାଇଥାଏ । କାନ୍ଧରେ ଟିଣ ସୁଟ୍‌କେଶ୍ ଲଦି ଲଦି କାନ୍ଧ ଦରଜ ହୋଇଯାଇଥାଏ । ଟୋଲରେ ପହଁଚିଲାମାତ୍ରେ ୪/୫ ଜଣ ପିଲା ଆସି ଆମ ସେବାରେ ଲାଗିଗଲେ । ସୋରିଷ ତେଲ ଘଷି ପାଦ ଗୋଡ଼ ମୋଡ଼ି ଦେଲେ । ପିଲାମାନେ ସଂଗେ ସଂଗେ ରୋଷେଇ ବସେଇଲେ । ଗଣ୍ଡିଏ ଖାଇ ଦେଇ ଆମେ ଶୋଇଗଲୁ ।

ମହ୍ଲାସାହି ଗ୍ରାମର ବାହାରେ ମଦନମୋହନ ମଠ । ମଠର ବିସ୍ତୃତ ହତା ଭିତରେ ଆମ୍ବ, ପଣସ, ଗୁଆ, ନଡିଆ ଆଦି ଗଛ ପରିପୂର୍ଣ୍ଣ ଥିଲା । ତା ଛଡା ମଠର ଅଳ୍ପ ଦୂରରେ ଗୋଟିଏ ସ୍ୱତନ୍ତ୍ର ବଗିଚା ମଧ୍ୟ ଥିଲା । ସେଥିରେ ବହୁ ପ୍ରକାର ଫୁଲ ଫଳ ଉତ୍ପାଦନ କରାଯାଉଥିଲା । ଖରାଦିନେ ମଠ ହତା ଭିତରେ ଖରା ଜଣା ପଡୁନଥିଲା । ମନ୍ଦିରରେ ଜଗନ୍ନାଥ ବିଗ୍ରହ ପୂଜା ପାଉଥିଲେ । ମଠର ବାବାଜୀ ମହାଭାଗ ଥିଲେ ମାର୍କଣ୍ଡେୟ ରାମାନୁଜ ଦାସ । ସଂସ୍କୃତ ଟୋଲ୍‌ଟିରେ ସେ ପରିଚାଳନା କରୁଥିଲେ । ଟୋଲଛାତ୍ରଙ୍କ

ପାଇଁ ଗୋଟିଏ ଛୋଟ ଚାଳଘର ଏବଂ ଗୋଟିଏ ରୋଷେଇଘର । ପିଲାମାନେ ପାଳିକରି ରୋଷେଇ କରି ଖାଉଥିଲେ । ମୁଁ ପ୍ରଥମା ପରୀକ୍ଷା ପର୍ଯ୍ୟନ୍ତ ପ୍ରାୟ ଦୁଇମାସ ସେଠି ରହିଥିଲି । ଆମେ ସମସ୍ତେ ପାଳି କରି ରୋଷେଇ କରୁଥିଲୁ । ଆମର ରୋଷେଇ ସାମଗ୍ରୀ ମଠରୁ ଆସୁଥିଲା । ତା ଛଡା, ନିକଟବର୍ତ୍ତୀ ଅଣଖିଆ ଗାଁର ଶ୍ରୀଯୁକ୍ତ ବାଞ୍ଛାନିଧି ଦାଶ ଚାଉଳ, ମୁଗ ପ୍ରଭୃତି ଦେଉଥିଲେ । ବାଞ୍ଛାନିଧି ବାବୁ ଥିଲେ ଖୁବ୍ ଉଦାର ପ୍ରକୃତିର ଲୋକ । ସମସ୍ତେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ସେ ଦୁଃଖୀ ଗରିବଙ୍କୁ ଖାଇବାକୁ ଦେଉଥିଲେ । ତାଙ୍କର କିଛି ଭୂସଂପତ୍ତି ଥିଲା । କିନ୍ତୁ ତା ତୁଳନାରେ ତାଙ୍କର ବଦାନ୍ୟତା ଗୁଣ ଥିଲା ଅଧିକ । ସେ ଟୋଲକୁ ବୁଲି ଆସି ପିଲାମାନଙ୍କ କଥା ବୁଝୁଥିଲେ ।

ମଦନମୋହନ ଟୋଲରେ ମୁଁ ସଂସ୍କୃତ ପଢା ଆରମ୍ଭ କଲି । ସିଦ୍ଧାନ୍ତ ଚନ୍ଦ୍ରିକା ବ୍ୟାକରଣର ପ୍ରଥମ ସୂତ୍ର ପଢିଲି- "ଅଇଉଋ ସମାନାଃ ।" ପ୍ରାୟ ଗୋଟିଏ ସପ୍ତାହ ମଧ୍ୟରେ ପ୍ରାଚୀନ ବ୍ୟାକରଣ ଧାରା ମୋ ପକ୍ଷରେ ସ୍ପଷ୍ଟ ହୋଇଗଲା । ସେତେବେଳେ ଟୋଲମାନଙ୍କରେ ସଂସ୍କୃତ ଭାଷା ଶିକ୍ଷା ଦିଆଯାଉଥିଲା ସାଧନ ପ୍ରଣାଳୀରେ । ସୂତ୍ର ପରେ ସୂତ୍ର ଲଗାଇ ପଦରୂପ, ଧାତୁରୂପ, ସମାସ, ତଦ୍ଧିତ, କୃଦନ୍ତ, ସନନ୍ତ, ଯଙନ୍ତ, କାରକ ପ୍ରଭୃତି ନିଷ୍ପାଦନ କରାଯାଉଥିଲା । ତଦ୍ଦ୍ୱାରା ସଂସ୍କୃତ ଭାଷାରେ ଗଭୀର ଜ୍ଞାନଲାଭ କରି ହେଉଥିଲା । ମୁଁ ସାଧାରଣ ଶିକ୍ଷାଲାଭ କରିଥିଲି ପ୍ରାଥମିକ ବିଦ୍ୟାଳୟର ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ । ଟୋଲରେ ନାଗରୀ ଅକ୍ଷର ଶିଖିଲି ଏବଂ ଦୁଇ ମାସ ମଧ୍ୟରେ ପ୍ରଥମା ପରୀକ୍ଷା ପାଇଁ ଯେତିକି ବ୍ୟାକରଣ ଓ ଅନ୍ୟାନ୍ୟ ପାଠ ଥିଲା, ସବୁ ଶିକ୍ଷା କରି ଦେଲି । ଅପ୍ରେଲ ମାସରେ ଆମେ ଟୋଲପିଲାମାନେ ସଂସ୍କୃତ ପରୀକ୍ଷା ଦେବାପାଇଁ କଟକ ଆସିଲୁ । କଟକ ରେଭେନ୍ସା କଲିଜିଏଟ୍ ସ୍କୁଲରେ ସଂସ୍କୃତ ପରୀକ୍ଷା ହେଉଥିଲା । ମୁଁ ପ୍ରଥମା ପରୀକ୍ଷା ଦେଇସାରି ଗାଁକୁ ଫେରିଲି ଏବଂ ପୁଣି ଚାଷ ଆଦି କାମରେ ଲାଗିଗଲି ।

ତା ପରବର୍ଷ ମୁଁ ଗାଁରୁ କୁଜଙ୍ଗ ମଲ୍ଲସାହି ଗାଁର ମଦନମୋହନ ଟୋଲକୁ ଏକାକୀ ଚାଲି ଚାଲି ଯାଇଥିଲି । ପୂର୍ବବର୍ଷ ଭଳି ପଣ୍ଡିତଙ୍କ ସାଂଗରେ ଯେଉଁ ଯେଉଁ ବାଟଦେଇ ଯାଇଥିଲି, ଠିକ୍ ସେହି ସେହି ବାଟ ଦେଇ ଗଲି । କିନ୍ତୁ ଏଥର ମୋତେ ବାଟରେ ଦୁଇ ରାତି କଟାଇବାକୁ ପଡିଥିଲା । କାରଣ ଗୋଟିଏ ବଡ ଜୋଡ଼ (ନାଳ) ପାରି ହେବାକୁ ବହୁତ ବିଳମ୍ବ ଘଟିବାରୁ ସଂଧ୍ୟା ହୋଇଗଲା । ମୁଁ ଅଳ୍ପ ଦୂରରେ ଥିବା ଗୋଟିଏ ଗାଁକୁ ଯାଇ ଦ୍ୱିତୀୟ ରାତି ବିତାଇଲି । ଗାଁଟିର ନାମ ଆଉ ମନେ ନାହିଁ । କିନ୍ତୁ ଯାହାଙ୍କ ଘରେ ରାତିକ ରହିଥିଲି, ତାଙ୍କର ଆଦର ମୋର ଅଭୁଲା ହୋଇ ରହିଛି । ସେହି ଗୃହସ୍ଥଂକୁ ମୁଁ ରାତିକ ପାଇଁ ରହିବାକୁ କହିବାରୁ ସେ ଆନନ୍ଦିତ ହୋଇଗଲେ । ମୁଁ ଟୋଲରେ ପଢୁଥିବା

ବ୍ରାହ୍ମଣ ପିଲାଟିଏ ବୋଲି ଜାଣି ସେ ଆହୁରି ଆନନ୍ଦିତ ହେଲେ । ରାତିରେ ମୋତେ ଚୁଡ଼ା, କଦଳୀ, କ୍ଷୀର, ଗୁଡ଼ ପ୍ରଭୃତି ଭଳ କରି ଖାଇବାକୁ ଦେଲେ । ବାଉଁଶ ଭାଡ଼ି ଉପରେ ମଶିଣା ପକାଇ ବିଛଣା କରିଦେଲେ । ତାଙ୍କର ବ୍ୟବହାର ଅତ୍ୟନ୍ତ ଦୟାପୂର୍ଣ୍ଣ ଥିଲା । ସେ ସମୟର ମଣିଷର ଦୟାଭାବ ଆଜି କାହିଁ !

ମଦନ ମୋହନ ଟୋଲ ଗୋଟିଏ ଉତ୍ତମ ଟୋଲ ଥିଲା ଏବଂ ପଣ୍ଡିତ ଦୟାନିଧି ମହାପାତ୍ର ଜଣେ ଆଦର୍ଶ ସଂସ୍କୃତ ପଣ୍ଡିତ ଥିଲେ । ପ୍ରାଚୀନ ପଦ୍ଧତିରେ ସଂସ୍କୃତ ଶିକ୍ଷା ଦେବାରେ ସେ ପ୍ରବୀଣ ଥିଲେ । କପଟ, ମାୟା, ମୋହ ତାଙ୍କୁ ସ୍ପର୍ଶ କରିନଥିଲା । ଆମେ ଛାତ୍ରମାନେ ଓ ପଣ୍ଡିତ ମହାଶୟ ପ୍ରତିଦିନ ସଂଜବେଳେ ମଠ ମନ୍ଦିରରେ ଜଗନ୍ନାଥ ବିଗ୍ରହଙ୍କ ଆଗରେ ବସି ପ୍ରାର୍ଥନା ବୋଲୁଥିଲୁ । ଗୋଟିଏ ପ୍ରାର୍ଥନା "କଦାଚିତ୍ କାଳିନ୍ଦୀ ତଟ ବିପିନ ସଂଗୀତକବରୋ" ଏବଂ ଅନ୍ୟଟି - "ଧ୍ୟେୟଂ କଦନ୍ତି ଶିବ ମେବ ହି କେଚିଦନ୍ୟେ" । ସେଇଠି ଥିଲା ବେଳେ ମୁଁ ଭାରତ ସ୍ୱାଧୀନ ହେବାର ଖବର ପାଇଥିଲି । ଆମର ମନ ସେତେବେଳେ ଏପରି ଆନନ୍ଦରେ ବିଭୋର ହୋଇଯାଇଥିଲା ଯେ ଆମେ ସଂଗେ ସଂଗେ ମନ୍ଦିରକୁ ଯାଇ ପ୍ରାର୍ଥନା ସ୍ତୋତ୍ର ବୋଲିଥିଲୁଁ । କିନ୍ତୁ ସେହି ସ୍ୱାଧୀନତାର ଆନନ୍ଦ ଯେ ଦିନେ ଆମକୁ ନିଃସାର ବୋଧ ହେବ, ତାହା ସେତେବେଳେ ଆମ କଳ୍ପନାରେ ମଧ୍ୟ ନଥିଲା ।

ମଦନମୋହନ ଟୋଲରେ ଗରିବ ପିଲାମାନେ ପଢୁଥିଲେ । ମଠର ପରିବେଶ ଅତ୍ୟନ୍ତ ସୁନ୍ଦର ଓ ଶାନ୍ତିପୂର୍ଣ୍ଣ ଥିଲା । ମଠକୁ ଲାଗି ବିସ୍ତୃତ ପଡିଆ ଥିଲା । ତାହାକୁ କୁହାଯାଉଥିଲା ବାରବାଟୀ ପଡିଆ । ପଡିଆରେ ଅନେକ ବଡ ବଡ ଚାକୁଣ୍ଡା ଗଛ ଥିଲା । ଜହ୍ନରାତିରେ ମୁଁ ସେହି ପଡିଆରେ ଏକାକୀ ବୁଲୁଥିଲି ଏବଂ ମନେ ମନେ ଗୀତ ରଚନା କରୁଥିଲି । ମଲ୍ଲସାହି, ଗୌର ପଡା, ଅଣଖିଆ, ବାଘୁଆଠେଙ୍ଗ ପ୍ରଭୃତି ଆଖପାଖ ଗାଁ ଗୁଡ଼ିକ ଘନ ବୃକ୍ଷ ବହୁଳ ଥିଲା । ମଠକୁ ଲାଗିଥିବା ବଡ ପୋଖରୀର ପାଣି ସ୍ୱଚ୍ଛ ନିର୍ମଳ ଥିଲା । ବିବାହ, ବ୍ରତ ଆଦି ଉତ୍ସବକୁ ସେ ଅଞ୍ଚଳର ଅନେକ ଗୃହସ୍ଥ ଟୋଲ ପିଲାମାନଙ୍କୁ ନିମନ୍ତ୍ରଣ କରୁଥିଲେ । ମୋ ସମୟରେ ଭିକାରୀ ଚରଣ କର, ପୂର୍ଣ୍ଣଚନ୍ଦ୍ର ମିଶ୍ର, ଲୋକନାଥ ଷଡଙ୍ଗୀ, କୃଷ୍ଣଚନ୍ଦ୍ର ଷଡଙ୍ଗୀ, ମହାଦେବ ମିଶ୍ର, ଦିବାକର ଦାଶ, କାଂଗାଳି ଚରଣ ଶତପଥୀ, ସତ୍ୟାନନ୍ଦ ପଣ୍ଡା, ବଂଶୀଧର ଦାସ ପ୍ରମୁଖ ଛାତ୍ରମାନେ ଟୋଲରେ ପଢୁଥିଲେ । ତୁଳସୀ ଦାସ, ଚପଳା କର, ସୁଷମା ଷଡଙ୍ଗୀ ଆଦି କେତୋଟି ଝିଅ ମଧ୍ୟ ପଢୁଥିଲେ । ତୁଳସୀ ଦାସ ପରେ କବିତା ଲେଖି କବି ଭାବେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ମଦନମୋହନ ଟୋଲ ପଣ୍ଡିତ ଦୟାନିଧି ମହାପାତ୍ରଙ୍କ ଯୋଗୁ ପ୍ରସିଦ୍ଧି ଲାଭ କରିଥିଲା । ସବୁ ପିଲାଙ୍କୁ ସେ

ପଢାଉଥିଲେ । ପ୍ରଥମାଠାରୁ ସାହିତ୍ୟାଚାର୍ଯ୍ୟ ପର୍ଯ୍ୟନ୍ତ ସବୁ ଶ୍ରେଣୀର ପିଲାଙ୍କୁ ସେ ପଢାଉଥିଲେ । ବସୁଥିଲେ ଚକା ଆସନ ପକାଇ ଆସନ ଖଣ୍ଡିଏ ଉପରେ । ବହୁ ସମୟ ଧରି ପଢାଇଲେ ମଧ୍ୟ ତାଙ୍କ ମୁହଁରୁ ଟିକିଏ ହେଲେ ବିରକ୍ତି ଭାବ ପ୍ରକାଶ ପାଉନଥିଲା ।

ପଣ୍ଡିତ ଦୟାନିଧି ମହାପାତ୍ର କନିକାର ଶିକୋ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେତେବେଳେ ଟୋଲରେ ସଂସ୍କୃତ ପଣ୍ଡିତଙ୍କର ବେତନ ନିତାନ୍ତ ସ୍ୱଳ୍ପ ଥିଲା । ମଦନ ମୋହନ ଟୋଲରେ ବହୁ ବର୍ଷ ଶିକ୍ଷା ଦାନ କଲା ପରେ ସେ ଆଠଗଡ ବାଳିକା ହାଇସ୍କୁଲରେ ସଂକୃତ ପଣ୍ଡିତ ପଦରେ ନିଯୁକ୍ତ ହେଲେ । ସେହି ସ୍କୁଲରେ ଦଶ ବର୍ଷ ମାତ୍ର ଚାକିରି କଲା ପରେ ତାଙ୍କର ଚାକିରିରୁ ଅବସର ନେବାର ବୟସ ହୋଇଗଲା । ଆଠଗଡରେ ବଡ କଷ୍ଟରେ ଘରଖଣ୍ଡିଏ କରି ସେଠାରେ ସପରିବାର ବାସ କଲେ । ତାଙ୍କ ପରି ଅମାୟିକ ବିଦ୍ୱାନ ବିରଳ ।

ଏଣୁଅ ଡେଇଁ ଡେଇଁ ଶିଳୁ ବୁଦା ମୂଳକୁ । ମୁଁ ସ୍କୁଲ କଲେଜରେ ଶିକ୍ଷାଲାଭ କରିବାର ସୌଭାଗ୍ୟ ନପାଇ ସଂସ୍କୃତ ଶିକ୍ଷାର ଆଶ୍ରୟ ନେଇଥିଲି । ସେତିକି ଯଦି ମିଳିନଥାନ୍ତା, ତେବେ ଜୀବନସାରା 'ମୂର୍ଖ' ହୋଇ ରହି ଯାଇଥାନ୍ତି ।



# ହନୁମାନ୍ ପର୍ବତକୁ ଟେକି ଆଣିଲା !

ମୁଁ ସଂସ୍କୃତରେ ସାହିତ୍ୟାଚାର୍ଯ୍ୟ ପାସ୍ କରି ରେଭେନ୍ସା କଲିଜିଏଟ୍ ସ୍କୁଲର ଦ୍ୱିତୀୟ ସଂସ୍କୃତ ଶିକ୍ଷକ ପଦରେ କାର୍ଯ୍ୟ କରୁଥାଏ । ଶିକ୍ଷକ ତାଲିକାରେ ସମସ୍ତଙ୍କ ନାମ ତଳେ ମୋ ନାମ । ମାସକୁ ଦରମା ଭତ୍ତା ମିଶି ଅଶି ଟଙ୍କା । ସମସ୍ତଙ୍କ ଅପେକ୍ଷା କମ୍ । ମୁଁ ଅଷ୍ଟମ ଶ୍ରେଣୀର ଦୁଇ ସେକ୍‌ସନରେ ଏବଂ ନବମ ଶ୍ରେଣୀର ଦୁଇ ସେକ୍‌ସନରେ ସଂସ୍କୃତ ପଢାଉଥାଏ । ତଳଶ୍ରେଣୀ ମାନଙ୍କରେ ଅନେକ ଓଡିଆ, ହିନ୍ଦୀ ପରିୟଡ ନେଉଥାଏ ।

ଦିନେ ମୁଁ ଷ୍ଟାଫ୍ କମନରୁମରେ ବସିଛି, ଆଉ କେହି ନଥାନ୍ତି, ଶିକ୍ଷକମାନେ ନିଜ ନିଜ କ୍ଲାସକୁ ଯାଇଥାଆନ୍ତି । ମୋର ସେତେବେଳେ କ୍ଲାସ ନଥାଏ, ମୁଁ ବସିଥାଏ । ଏହି ସମୟରେ ଭିକାରି (ପିଅନ) ଆସି ଷ୍ଟାଫ୍ କମନରୁମ୍‌ରେ ଠିଆ ହେଲେ । ଚାରି ଆଡକୁ ଚାହିଁଲେ । ମୋ ଛଡା ଆଉ କେହି ନଥାନ୍ତି । ମୋତେ କହିଲେ "ହେଡ୍ ମାଷ୍ଟ୍ରେ ଡାକୁଛନ୍ତି ।" ମୁଁ ସଂଗେ ସଂଗେ ହେଡମାଷ୍ଟରଙ୍କ ପ୍ରକୋଷ୍ଠକୁ ଗଲି ଏବଂ ନମସ୍କାର କରି ଗୋଟିଏ ଚଉକି ପାଖରେ ଠିଆ ହେଲି । କହିଲି "ସାର୍, ଆପଣ ମୋତେ ଡକାଇଛନ୍ତି ?"

ହେଡ୍ ମାଷ୍ଟର ଥିଲେ ସଚ୍ଚିଦାନନ୍ଦ କାନୁନ୍‌ଗୋ । ମୋ ଆଡ଼କୁ ଟିକିଏ ବିସ୍ମୟ ଓ ବିରକ୍ତିର ସହିତ ଚାହିଁଲେ । ପଚାରିଲେ କିଏ ତୁମକୁ ଡାକିଲା ? ମୁଁ ଚକିତ ଭାବରେ କହିଲି "ଭିକାରି" । ସେ ଠୋ ଠୋ ହସି ଉଠିଲେ । କହିଲେ- "ହନୁମାନକୁ କୁହାଗଲା ବିଶଲ୍ୟକରଣୀ ଆଣିବା ପାଇଁ । ହନୁମାନ ଗଲା , ଗନ୍ଧମାର୍ଦ୍ଦନ ପର୍ବତକୁ ଟେକି ଆଣିଲା !" ଏହା କହି ସେ ଭିକାରିକୁ ଡାକିଲେ । ପଚାରିଲେ ଯାଙ୍କୁ ଡାକି ଆଣିବା ପାଇଁ ମୁଁ କହିଥିଲି ? ଭିକାରି ସଂତର୍ପଣରେ କହିଲା - "ସାର୍, ଆପଣ ଷ୍ଟାଫ୍ କମନ୍‌ରୁମରୁ ଜଣେ ଶିକ୍ଷକଙ୍କୁ

ଡାକି ଆଣିବାକୁ କହିଲେ । ଷ୍ଟାଫ୍ କମନରୁମ୍‌ରେ ଆଉ କେହି ନଥିଲେ । କେବଳ ସେକଣ୍ଡ ପଣ୍ଡିତ ଥିଲେ । ମୁଁ ତାଙ୍କୁ ଡାକି ଆଣିଲି ।"

ହେଡମାଷ୍ଟର ତା ଆଡ଼କୁ ଓ ମୋ ଆଡ଼କୁ ଚାହିଁ ଆଙ୍ଗୁଳି ଆଉଡେଇ ଦୁହେଁ ଯାଅ ବୋଲି କହିଲେ । ଭିକାରି ସଂତର୍ପଣରେ ଚାଲିଗଲା । ମୁଁ କିନ୍ତୁ ଟିକିଏ ସାହସ ବାନ୍ଧି ଭୟମିଶ୍ରିତ ଭାବରେ ଠିଆ ହୋଇ ରହିଲି । କହିଲି- "ସାର୍, ଆପଣ କୌଣସି କାମରେ ଜଣେ ଶିକ୍ଷକଙ୍କୁ ଚାହୁଁଛନ୍ତି । ମୋତେ କହୁନାହାନ୍ତି, ମୁଁ କ'ଣ ସେହି କାମ କରିପାରିବି ନାହିଁ ?" ସେ ନରମ ସ୍ୱରରେ କହିଲେ - "ନା ପଣ୍ଡିତ ମହାଶୟ, ତୁମେ ପାରିବ ନାହିଁ । ମୁଁ ଇଂରାଜୀରେ ଗୋଟିଏ ଡିକ୍‌ଟେସନ୍ ଡାକିବି, ଜଣେ ଲେଖିବ । ତୁମେ ଇଂରାଜୀରେ ଲେଖି ପାରିବ ନାହିଁ । ତୁମେ ଯାଅ ।"

ମୁଁ ଭାବୁଥିଲି, ହଁ ପାରିବି ବୋଲି କହିବି । କିନ୍ତୁ ମନରେ ସାହସ ବୁଝାଇଲା ନାହିଁ । କାଳେ ଲେଖାରେ ଭୁଲ୍ ହେବ, ହେଡ୍ ମାଷ୍ଟର ଆହୁରି ବିରକ୍ତ ହେବେ । ମୁଁ ନମସ୍କାର କରି ଫେରିଆସିଲି ।

କୌଣସି ପ୍ରକାରେ ମନ ଭିତରେ ଦୁଃଖକୁ ଚାପି ରଖି ସେଦିନର କ୍ଲାସ ସବୁ ସାରି ଛାତ୍ରାବାସ କୋଠରୀକୁ ଫେରିଆସିଲି । ଛାତ୍ରବାସର ଗୋଟିଏ କୋଠରୀରେ ସହକାରୀ ପରିଚାଳକ ଭାବେ ମୁଁ ରହୁଥାଏ । କବାଟ କିଳିଦେଇ ଏକାକୀ ବସି ବହୁତ କାନ୍ଦିଲି । ସ୍କୁଲ କଲେଜରେ ମୋତେ ପାଠ ପଢିବାର ସୌଭାଗ୍ୟ ମିଳିନଥିବାରୁ ଏଭଳି ଅପମାନ ସହିବାକୁ ପଡିଲା ବୋଲି ଭାବିଲି । ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଦ୍ୱିତୀୟ ସଂସ୍କୃତ ଶିକ୍ଷକ ପଦରେ ନିଯୁକ୍ତ ହେବା ପୂର୍ବରୁ ମୁଁ ସାହିତ୍ୟାଚାର୍ଯ୍ୟ ପାସ୍ କରିଥିଲିଏବଂ କେବଳ ଇଂରାଜୀରେ ମାଟ୍ରିକ୍ୟୁଲେସନ ପାସ କରିଥିଲି । ସେତେବେଳେ ମାଟ୍ରିକ୍ୟୁଲେଶନରେ ଇଂରାଜୀରେ ଦୁଇଟି ପତ୍ର ଥିଲା । ନିଜ ଚେଷ୍ଟାରେ ଇଂରାଜୀ ଅକ୍ଷର ଶିଖିବାଠାରୁ ଆରମ୍ଭ କରି ମାଟ୍ରିକ୍ୟୁଲେସନର ଇଂରାଜୀ ଦୁଇଟି ପତ୍ରରେ ପରୀକ୍ଷା ଦେଇ ପାସ୍ କରିଥିଲି । ସେହିପରି ହିନ୍ଦିରେ 'କୋବିଦ' ମଧ୍ୟ ପାସ୍ କରିଥିଲି । ଭାବିଲି, ଅନ୍ୟ ଶିକ୍ଷକମାନଙ୍କ ସହ ସମକକ୍ଷ ହେବା ପାଇଁ ମୋତେ ଟ୍ରେଣ୍ଡ ଗ୍ରାଜୁଏଟ୍ ଶିକ୍ଷକ ପଦକୁ ଉଠିବାକୁ ପଡିବ । କିନ୍ତୁ ପରକ୍ଷଣରେ ବାସ୍ତବତାକୁ ଫେରି ଆସିଲି । "ମୁଁ ଯେ ଦ୍ୱିତୀୟ ସଂସ୍କୃତ ପଣ୍ଡିତ ମାତ୍ର ! କାହିଁ ଟ୍ରେଣ୍ଡ୍ ଗ୍ରାଜୁଏଟ୍ ପଦ ! ମୁଁ ବାମନ ହୋଇ ଚନ୍ଦ୍ରକୁ ହାତ ବଢାଉଛି ।"

ତଥାପି ମନରେ ଆଶା ବାନ୍ଧି ଭାବନାରୁ ଉଠି ଛାତ୍ରାବାସ ପିଲାମାନଙ୍କର ସମବେତ ସାନ୍ଧ୍ୟ ପ୍ରାର୍ଥନାରେ ଯୋଗଦେବାକୁ ଗଲି ।



# RIVER KATHAJODI IS FLOWING VERY HIGH

ସେଉଁ ଦିନ ରାଧାନାଥ ଟ୍ରେନିଂ କଲେଜର ଅଧ୍ୟକ୍ଷ ପ୍ରଫେସର ବୈଦ୍ୟନାଥ ରଥ ମୋତେ ଡକାଇ କହିଲେ- " ପଣ୍ଡିତେ, ମୁଁ ତୁମକୁ ଟ୍ରେନିଂ ସ୍କୁଲର ଗୋଟିଏ ଟ୍ରେଣ୍ଡ ଗ୍ରାଜୁଏଟ୍ ପୋଷ୍ଟ ଦେବି" ସେଦିନ ମୋର ଆନନ୍ଦର ସୀମା ରହିଲା ନାହିଁ । ମୁଁ କୃତକୃତ୍ୟ ହୋଇ ହାତଯୋଡ଼ି କହିଲି- "ସାର୍, ଆପଣଙ୍କ ଦୟା ।"

ଅଧ୍ୟକ୍ଷ ବୈଦ୍ୟନାଥ ରଥଙ୍କ ପରିଚାଳନାରେ ତିନୋଟି ସ୍କୁଲ ଥିଲା । ରେଭେନ୍ସା କଲିଜିଏଟ୍ ସ୍କୁଲ, ସେକଣ୍ଡାରି ଟ୍ରେନିଂ ସ୍କୁଲ ଓ ପ୍ରାକ୍ଟିସିଂ ବାଳିକା ହାଇସ୍କୁଲ । ପ୍ରାକ୍ଟିସିଂ ବାଳିକା ହାଇସ୍କୁଲ ଆଗରୁ ନଥିଲା, ପରେ ହେଲା ।ଏ ତିନୋଟି ସ୍କୁଲର ପରିଚାଳନାକାରୀ ତଥା ଇନ୍‌ସପେକ୍ଟର ଥିଲେ ଟ୍ରେନିଂ କଲେଜର ଅଧ୍ୟକ୍ଷ । ଏ ତିନିଟି ସ୍କୁଲରେ ଶିକ୍ଷକ ଶିକ୍ଷୟିତ୍ରୀ ପଦ ତଥା ଅନ୍ୟାନ୍ୟ ପଦ ଖାଲି ହେଲେ ଟ୍ରେନିଂ କଲେଜର ଅଧ୍ୟକ୍ଷ ନୂଆ ଲୋକଙ୍କୁ ନିଯୁକ୍ତି ଦେଇ ତାହା ପୂରଣ କରୁଥିଲେ । ଟ୍ରେନିଂ ସ୍କୁଲର ଗୋଟିଏ ଟ୍ରେଣ୍ଡ ଗ୍ରାଜୁଏଟ୍ ପଦ ଖାଲି ହୋଇଥାଏ । ଅଧ୍ୟକ୍ଷ ରଥ ମୋତେ ସେଥିରେ ନିଯୁକ୍ତି ଦେଲେ । ସେତେବେଳକୁ ମୁଁ ରେଭେନ୍ସା କଲିଜିଏଟ୍ ସ୍କୁଲରେ ଦ୍ୱିତୀୟ ସଂସ୍କୃତ ଶିକ୍ଷକ ପଦରେ ଥାଇ ବି.ଓ.ଏଲ୍. ଏବଂ ବି.ଇଡି. ପାସ୍ କରିସାରିଥିଲି । ତା' ପୂର୍ବରୁ ହେଡପଣ୍ଡିତ ପଦରେ ବଲାଙ୍ଗୀର ଜିଲ୍ଲା ସ୍କୁଲକୁ ଯିବା ପାଇଁ ମୋତେ ପଦୋନ୍ନତି ମିଳିଥିଲା, କିନ୍ତୁ ମୁଁ ଟ୍ରେଣ୍ଡ ଗ୍ରାଜୁଏଟ୍ ପଦକୁ ଯିବାର ଲକ୍ଷ୍ୟ ରଖି ତାହା ଗ୍ରହଣ କରିନଥିଲି ।

ଅଧ୍ୟକ୍ଷ ରଥ ମୋତେ ସେକଣ୍ଡାରି ଟ୍ରେନିଂ ସ୍କୁଲରେ ଟ୍ରେଣ୍ଡ ଗ୍ରାଜୁଏଟ୍ ପଦରେ ନିଯୁକ୍ତି ଦେବେ ବୋଲି ଜାଣିବାମାତ୍ରେ, ସେହି ଗୁଣଗ୍ରାହୀ ମହାନ ବ୍ୟକ୍ତି ମୋତେ ରେଭେନ୍ସା କଲିଜିଏଟ୍ ସ୍କୁଲରେ ଦ୍ୱିତୀୟ ସଂସ୍କୃତ ପଦରେ କିପରି ନିଯୁକ୍ତି ଦେଇଥିଲେ, ତାହା

ମୋର ମାନସପଟରେ ନାଚିଉଠିଲା । ୧୯୫୫ ମସିହା । ଓଡିଶାର ସବୁ ନଦୀରେ ପ୍ରବଳ ବନ୍ୟା ହୋଇଥାଏ । ଦଳେଇଘାଇ ଭାଙ୍ଗି ବହୁ ଘରଦ୍ୱାର ଭାସିଯାଇଥାଏ ଏବଂ ଭୟଙ୍କର ପରିସ୍ଥିତି ସୃଷ୍ଟି ହୋଇଥାଏ । ଓଡିଶାରେ ପ୍ରାୟ ସମସ୍ତ ଉପକୂଳବର୍ତ୍ତୀ ଜିଲ୍ଲା ବନ୍ୟାରେ ପ୍ଲାବିତ ହୋଇ ଯାଇଥାଏ । କଟକ ରାଧାନାଥ ଟ୍ରେନିଂକଲେଜର ଅଧକ୍ଷ ବୈଦ୍ୟନାଥ ରଥ କଲିଜିଏଟ୍ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ପାଇଁ ଯେଉଁ ଇଣ୍ଟରଭ୍ୟୁ ତାରିଖ ନିର୍ଦ୍ଧାରଣ କରିଥାନ୍ତି, ତାହା ସେହି ବନ୍ୟା ସମୟ ଭିତରେ ପଡିଥାଏ । ମୁଁ ସଂସ୍କୃତରେ ସାହିତ୍ୟାଚାର୍ଯ୍ୟ ଓ କେବଳ ଇଂରାଜୀ (ଦୁଇଟି ପତ୍ର)ରେ ମାଟ୍ରିକ୍ ପାସ୍ କରି ଗାଁରେ ଥିଲି ଏବଂ ଉକ୍ତ ପୋଷ୍ଟ ପାଇଁ ବିଜ୍ଞାପନ ବାହାରିଛି ବୋଲି ଆମ ଗାଁର ମୋର ପ୍ରିୟବନ୍ଧୁ ଶ୍ରୀ ଘନଶ୍ୟାମ ଧଳଙ୍କ ଠାରୁ ଜାଣି ଦରଖାସ୍ତ କରିଥିଲି । ଉଦାରମନା ଯୁବକ ଘନଶ୍ୟାମ ବାବୁ ସେତେବେଳେ ବି.ଏ. ପାସ କରି କଟକରେ ଚାକିରି କରୁଥାନ୍ତି । ଇଣ୍ଟରଭ୍ୟୁରେ ଯୋଗଦେବାକୁ ମୁଁ ଚିଠିପାଇଥାଏ । ପ୍ରବଳ ଝଡ ତୋଫାନ ଆରମ୍ଭ ହୋଇଗଲା । ଇଣ୍ଟରଭ୍ୟୁ ତାରିଖ ଚାରିଦିନ ଥାଏ, ମୁଁ ବୋଉକୁ କହିଲି- "ବୋଉ, ମୁଁ ଆଜି କଟକ ଯାଉଛି । ଆଗରୁ ନଗଲେ ଠିକ୍ ସମୟରେ ପହଞ୍ଚି ହେବନାହିଁ ।" ବୋଉ କହିଲା- "ଇମିତି ଝଡ ତୋଫାନରେ କୁଆକୋଇଲି ବସାରୁ ବାହାରୁ ନାହାନ୍ତି । ତୁ କିପରି ଯିବୁ ? ଚାନ୍ଦବାଲି ଘାଟ କଣ ଏଥିରେ ଚାଲୁଥିବ ? ନଈପାରି ହେବୁ କିପରି ? ଆମର ଚାକିରି ଦରକାର ନାହିଁ, ତୁ ଯାଆନା ।" ମୁଁ କିନ୍ତୁ ବୋଉକୁ ବୁଝାଇ ଶୁଝାଇ ବାହାରି ପଡିଲି । ଗୋଟିଏ ଛୋଟ ଟିଣ ସୁଟକେସ୍‌ରେ ଲୁଗାଜାମା ଦିଖଣ୍ଡ ଓ ଚୁଡ଼ା କିଛି ପୁରାଇ, ଗାମୁଛାଟିଏ ପିନ୍ଧି ବର୍ଷାରେ ଭିଜି ଭିଜି ଚାଲିଲି । ପ୍ରବଳ ତୋଫାନ ଓ ତୁହାକୁ ତୁହା ବର୍ଷା ହେଉଥାଏ । ଚାରି ପାଞ୍ଚ ଘଣ୍ଟା ବଡ କଷ୍ଟରେ ଚାଲି ଚାଲି ଚାନ୍ଦବାଲି ବୈତରଣୀ ନଈ ଘାଟ ପାଖରେ ପହଞ୍ଚିଲି । ଦେଖିଲି ଘାଟ ଡଙ୍ଗା ବନ୍ଦ । ତଥାପି ଚାରିପାଞ୍ଚ ଜଣ ଲୋକ ଚାନ୍ଦବାଲି ପାରିକୁ ଯିବା ପାଇଁ ଡାକ ବ୍ୟାଗକୁ ଅପେକ୍ଷା କରି ବସିଥାଆନ୍ତି । ମୁଁ ମଧ୍ୟ ସେଇପରି ଓଦା ଅବସ୍ଥାରେ ବସିଲି । କିଛି ସମୟ ପରେ ରାଜକନିକା ପୋଷ୍ଟ ଅଫିସରୁ ରନର ଡାକ ବ୍ୟାଗ ନେଇ ପହଞ୍ଚିଲା । ଘାଟ ଡଙ୍ଗା ବାହାରିଲା । ପାଞ୍ଚ ଛଅ ଜଣ ନାଉରିଆ ବଡ କଷ୍ଟରେ ଡଙ୍ଗା ସମ୍ଭାଳି ଚାନ୍ଦବାଲି ପଟରେ ଡଙ୍ଗା ଲଗାଇଲେ ।

ମୁଁ ଯାଇ ଶୁଖିଲା ଲୁଗାଜାମା ଦିଖଣ୍ଡ ଟିଣ ସୁଟକେଶରୁ କାଢି ପିନ୍ଧିଲି ଏବଂ ଚାନ୍ଦବାଲି -ଭଦ୍ରକ ବସ୍‌ରେ ବସିଲି । ସେତେବେଳେ କଟକ ଯିବାପାଇଁ ଚାନ୍ଦବାଲିରୁ ବସ୍‌ରେ ଯାଇ ଭଦ୍ରକ, ଭଦ୍ରକରୁ ଟ୍ରେନରେ କଟକ ଯିବାକୁ ପଡୁଥିଲା । ସେତେ ବେଳେ ଜାତୀୟ ରାଜପଥ ହୋଇ ନଥିଲା କି କଟକରୁ ବସ୍ ଚଳାଚଳ ହେଉନଥିଲା । ଚାନ୍ଦବାଲିରୁ

ବସ୍ ପ୍ରାୟ ଅପରାହ୍ଣ ୫ଟା ବେଳକୁ ଭଦ୍ରକ ଅଭିମୁଖେ ଚାଲିଲା । ରାସ୍ତାରେ ଦେଖିଲି, ଚାରିଆଡେ ଜଳାର୍ଣ୍ଣବ । ବହୁ ଜାଗାରେ ଘୋଷରା ରାସ୍ତା ସବୁ ବୁଡିଯାଇଥାଏ । ଯାହାହେଉ, ବସ୍ ଚାଳକ ସାହସର ସହିତ ଘୋଷରାମାନଙ୍କରେ ବସ୍ ଚଳାଇ ଆଗକୁ ଚାଲିଲେ । ପ୍ରକୃତରେ ବସ୍ କୌଣସି ପ୍ରକାରେ ଯଦି ଭଦ୍ରକରେ ପହଞ୍ଚିଯାଇ ନଥାନ୍ତା, ତେବେ ଆଉ ଯାଇ ପାରିନଥାନ୍ତା । କାରଣ, କ୍ରମେ ବନ୍ୟାରେ ସବୁ ରାସ୍ତା ବୁଡିଗଲା । ଭଦ୍ରକରେ ପହଞ୍ଚି ଦେଖିଲି, ପ୍ରବଳ ବନ୍ୟା ଯୋଗୁ ଟ୍ରେନ୍ ଚଳାଚଳ ବନ୍ଦ । ବହୁ ସ୍ଥାନରେ ରେଳପଥ ବୁଡ଼ି ଯାଇଥାଏ । ଭଦ୍ରକ ଷ୍ଟେସନ ପ୍ଲାଟଫର୍ମରେ ପଡିରହିଲି । ଟ୍ରେନରେ ଆସିଥିବା ଶହଶହ ଯାତ୍ରୀ ପ୍ଲାଟଫର୍ମରେ ରହିଥାଆନ୍ତି । କ୍ରମେ ପ୍ଲାଟଫର୍ମର ଅନେକ ସ୍ଥାନ ମଧ୍ୟ ବନ୍ୟା ଜଳରେ ବୁଡ଼ିଗଲା । ଦୁଇ ଦିନ ଦୁଇ ରାତି ସେଠି ପଡିରହିଲି । ଘରୁ ନେଇଥିବା ଚୁଡ଼ା ଗଣ୍ଡିକ ସରିଗଲା । ଖାଇବାକୁ କିଛି ମିଳିଲା ନାହିଁ । ଲୋକମାନଙ୍କ ଦୁର୍ଦ୍ଦଶା କହିଲେ ନସରେ । ଯାହା ହେଉ, ତୃତୀୟ ଦିନ ବନ୍ୟାଜଳ ଟିକିଏ କମିଲା । ଟ୍ରେନ ଭଦ୍ରକ ଛାଡ଼ିଲା ଏବଂ କଟକରେ ପହଞ୍ଚିବାକୁ ୧୨/୧୩ ଘଣ୍ଟା ସମୟ ଲାଗିଲା ।

ଇଣ୍ଟରଭ୍ୟୁ ଆରମ୍ଭ ହେବାକୁ ଆଉ ପ୍ରାୟ ଘଣ୍ଟାଏ ସମୟ ବାକି, ମୁଁ ଧଇଁସଇଁ ହୋଇ ଯାଇ ରାଧାନାଥ ଟ୍ରେନିଂ କଲେଜରେ ପହଞ୍ଚିଲି । ଶୁଣିଲି, ସାହିତ୍ୟାଚାର୍ଯ୍ୟ ପାସ୍ କରିଥିବା ପଚିଶି ଛବିଶି ଜଣ ପ୍ରାର୍ଥୀ ଆସିଛନ୍ତି । ଅଧ୍ୟକ୍ଷ ଇଣ୍ଟରଭ୍ୟୁ ଆରମ୍ଭ କଲେ । କିଛି ସମୟ ପରେ ମୋ ପାଳି ପଡିଲା । ମୁଁ ଯାଇ ନମସ୍କାର କରି ଠିଆ ହେଲି । ବସିବାକୁ କହିଲାରୁ ବସିଲି । ମୋର ଦେହ ଅତ୍ୟନ୍ତ ଅବସନ୍ନ ହୋଇ ପଡିଥିଲା ।ସେ ମୋର ସାର୍ଟିଫିକେଟ୍ ଗୁଡ଼ିକ ଦେଖିଲେ । ପ୍ରଥମା, ମଧ୍ୟମା, ଶାସ୍ତ୍ରୀ ଓ ସାହିତ୍ୟାଚାର୍ଯ୍ୟ ପରୀକ୍ଷା ମାନଙ୍କରେ ପ୍ରଥମ ଶ୍ରେଣୀ ଓ ସାହିତ୍ୟାଚାର୍ଯ୍ୟ ପରୀକ୍ଷାରେ ନରେନ୍ଦ୍ରକୁମାର ପୁରସ୍କାର ସହିତ ପ୍ରଥମ ଶ୍ରେଣୀ । ଇଂରାଜୀ ଦୁଇଟି ପତ୍ରରେ ମାଟ୍ରିକ୍ ପାସ୍, ହିନ୍ଦୀରେ ପରିଚୟ ପାସ୍ । ମୋତେ ଭଲକରି ଚାହିଁଲେ । ମୁଁ ପିନ୍ଧିଥାଏ ଛୋଟିଆ ଧୋତି ଖଣ୍ଡେ, ମାଟିଆ ରଙ୍ଗର ହାଫ୍ ଶାର୍ଟ ଖଣ୍ଡେ, ଖାଲି ପାଦ, ଜୋତା କି ଚପଲ ନଥାଏ । ସେ ମୋତେ କହିଲେ - "ପଣ୍ଡିତେ, ଗୋଟିଏ ଶ୍ଳୋକ ଗାଇ ବୁଝାଅ" ମୁଁ ଶ୍ଳୋକ ମୁଖସ୍ଥକାରୀ ପଣ୍ଡିତ ନଥିଲି । ତଥାପି ମନେ ପଡିଗଲା, ସଂଗେ ସଂଗେ ଏତିକି ମାତ୍ର ଗାଇଲି -

ଉଦ୍‌ଯୋଗିନଂ ପୁରୁଷ ସିଂହ ମୁପୈତି ଲକ୍ଷ୍ମୀଃ
ଦୈବେନ ଦେୟମିତି କାପୁରୁଷା ବଦନ୍ତି ।

ମୁଁ ଜାଣିଥିଲି, ଏହା ପୁରା ଶ୍ଳୋକ ନଥିଲା । ସେ ଏହାକୁ ପୁରା ଶ୍ଳୋକ ବୋଲି ମନେ କଲେ ଏବଂ ବୁଝାଇବାକୁ କହିଲେ । ମୁଁ ବୁଝାଇଲି । ତା ପରେ ସେ କହିଲେ -

" ପଣ୍ଡିତେ, କାଠ ଯୋଡ଼ୀ ପ୍ରବଳ ବେଗରେ ବହୁଛି ।" ଏହି ବାକ୍ୟଟିକୁ ଇଂରାଜୀରେ କୁହ । ମୁଁ କିଛି ଚିନ୍ତା ନକରି ସଂଗେ ସଂଗେ କହିପାକଇଲି । -River Kathajodi is flowing very high.

ସେ ହସି ପକାଇ କହିଲେ - very high ! ଆଚ୍ଛା ଯାଅ ।

ପ୍ରାୟ ୧୫ ଦିନ ପରେ ସେହି ଗୁଣଗ୍ରାହୀ ଅଧ୍ୟକ୍ଷଙ୍କ ଠାରୁ ନିଯୁକ୍ତି ପାଇଲି ରେଭେନ୍‌ସା କଲିଜିଏଟ୍ ସ୍କୁଲର ଦ୍ୱିତୀୟ ସଂସ୍କୃତ ଶିକ୍ଷକ ପଦରେ ଯୋଗ ଦେବାପାଇଁ ।

ମୁଁ ରେଭେନ୍ସା କଲିଜିଏଟ୍ ସ୍କୁଲର ଯଦିଓ ସର୍ବନିମ୍ନ ଶିକ୍ଷକ ଥିଲି, ତଥାପି ଅଧ୍ୟକ୍ଷ ରଥ ମୋ ଉପରେ ଖୁସି ରହୁଥିବାର ମୁଁ ଅନୁଭବ କରୁଥିଲି । କାରଣ ମୁଁ ଶିକ୍ଷକତା କର୍ତ୍ତବ୍ୟରେ କେବେହେଲେ ହେଳା କରୁନଥିଲି । ତା ଛଡ଼ା ସ୍କୁଲର ପ୍ରତିବର୍ଷ ପୁରସ୍କାର ବିତରଣୀ ଉତ୍ସବରେ ସଂସ୍କୃତରେ ଏକାଙ୍କିକା ଲେଖି ପିଲାମାନଙ୍କୁ ଶିଖାଇ ଅଭିନୀତ କରାଉଥିଲି । ମୋ ଲିଖିତ ସଂସ୍କୃତ ଏକାଂକିକା ଗୁଡ଼ିକ ସେ ସମୟର ଗୋଟିଏ ଗୋଟିଏ ଘଟଣା, ସମସ୍ୟା ବା ପରିସ୍ଥିତି ଉପରେ ଆଧାରିତ ହେଉଥିଲା ଏବଂ ସେ ଗୁଡ଼ିକର ଅଭିନୟ ଏପରି ହାସ୍ୟରସ ସୃଷ୍ଟି କରୁଥିଲା ଯେ ଦର୍ଶକମାନେ ହସି ହସି ବେଦମ୍ ହେଉଥିଲେ । ନାଟକରେ ଏପରି ସଂସ୍କୃତ ଏକାଙ୍କିକା ଅଭିନୟ ପୂର୍ବରୁ କୌଣସି ସ୍କୁଲରେ ହେଉନଥିଲା । ରେଭେନ୍ସା କଲିଜିଏଟ୍ ସ୍କୁଲରେ ଏହା ହେଲା ପ୍ରଥମ । ତେଣୁ ପ୍ରତିବର୍ଷ ବହୁ ଅଭିଭାବକ ସଂସ୍କୃତ ଅଭିନୟ ଦେଖିବାକୁ କଲିଜିଏଟ୍ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବକୁ ଆସୁଥିଲେ । ଅଧ୍ୟକ୍ଷ ଶ୍ରୀଯୁକ୍ତ ରଥ ଥିଲେ ନାଟ୍ୟପ୍ରିୟ । ସେ ନିଜେମଧ ନାଟକ ଲେଖି ଟ୍ରେନିଂ କଲେଜରେ ଅଭିନୀତ କରାଉଥିଲେ । ତେଣୁ ପ୍ରତିବର୍ଷ କଲିଜିଏଟ୍ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବର ପ୍ରାୟ ମାସକ ଆଗରୁ ମୋତେ ଡକାଇ କହୁଥିଲେ - "ପଣ୍ଡିତେ, ଏଥର ମଧ୍ୟ ଗୋଟିଏ ଭଲ କରି ଲେଖିବ ଏବଂ ଶିଖାଇବ ।" କଲିଜିଏଟ୍ ସ୍କୁଲର ପିଲାଙ୍କ ଦ୍ୱାରା ଅଭିନୀତ ସଂସ୍କୃତ ଏକାଙ୍କିକା ଆନନ୍ଦମୟ ହାସ୍ୟ ରସ ସୃଷ୍ଟି କରୁଥିଲା । ତାହାକୁ ଦେଖି ଅନ୍ୟାନ୍ୟ ସ୍କୁଲର ବାର୍ଷିକ ପୁରସ୍କାର ବିତରଣୀ ଉତ୍ସବରେ ସଂସ୍କୃତ ଅଭିନୟ ହେଲା । ଥରେ କଲିଜିଏଟ୍ ସ୍କୁଲର ପୁରସ୍କାର ବିତରଣୀ ଉତ୍ସବକୁ 'ସମାଜ' ସଂପାଦକ ରାଧାନାଥ ରଥ ମୁଖ୍ୟ ଅତିଥି ରୂପେ ଆସିଥିଲେ । ସେ ସଂସ୍କୃତ ଏକାକିଂକା ଅଭିନୟ ଦେଖି, ହସି ହସି ଏପରି ମୁଗ୍ଧ ହୋଇଯାଇଥିଲେ ଯେ ତତ୍ପରଦିନ 'ସମାଜ'ର ସଂପାଦକୀୟ ଲେଖାଟି ସେହି ବିଷୟରେ ଲେଖିଥିଲେ । ମୋ ଲିଖିତ ସଂସ୍କୃତ ଏକାଙ୍କିକା ଏବଂ ମୋର କର୍ତ୍ତବ୍ୟ ପରାୟଣତା, ଏହି ଦୁଇଟି ଯୋଗୁ ଅଧ୍ୟକ୍ଷ ଶ୍ରୀଯୁକ୍ତ ରଥ ମୋ ପ୍ରତି ଦୟାଳୁ ଥିଲେ । (ମୋର ସେହି ସଂସ୍କୃତ ଏକାଙ୍କିକା ଗୁଡ଼ିକ ଅତି ଜୀର୍ଣ୍ଣ

ଅବସ୍ଥାରେ ମଧ୍ୟ ଥିଲା । ଯାହା ହେଉ ସେଗୁଡ଼ିକ 'ହାସ ହାସିକା' ନାମରେ ଖଣ୍ଡିଏ ବହି ହୋଇ ପ୍ରକାଶ ପାଇଛି ।) ଏହି କାରଣରୁ ହିଁ, ମୁଁ ବି.ଓ.ଏଲ୍. ପାସ୍ କଲା ପରେ ଶ୍ରୀଯୁକ୍ତ ରଥ ମୋତେ ରାଧାନାଥ ଟ୍ରେନିଂ କଲେଜରେ ବି.ଇଡି. ଟ୍ରେନିଂ ପାଇଁ ଗୋଟିଏ ସିଟ୍ ଦେଇଥିଲେ ଏବଂ ବି.ଇ.ଡି. ପାଶ୍ କଲା ପରେ ମୋତେ ଟ୍ରେନିଂ ସ୍କୁଲର ଏକ ଟ୍ରେଣ୍ଡ୍ ଗ୍ରାଜୁଏଟ୍ ପଦରେ ନିଯୁକ୍ତି ଦେଇଥିଲେ । ସେହି ମହାନ୍, ଗୁଣଗ୍ରାହୀ ବ୍ୟକ୍ତିଙ୍କ ଦୟା ହିଁ ମୋ ଜୀବନରେ ପରମ ସହାୟକ ହେଲା, ଏଥିରେ ସନ୍ଦେହ ନାହିଁ । ତାଙ୍କୁ ମୋର କୋଟି କୋଟି ସଭକ୍ତି ପ୍ରଣାମ ।

ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ମଧ୍ୟ ଉକ୍ତ କଲେଜର ଶତବାର୍ଷିକୀ ଉତ୍ସବରେ ମୋ ଲିଖିତ ଗୋଟିଏ ସଂସ୍କୃତ ଏକାଂକିକା ଅଭିନୟ କରାଇଥିଲି । ଏକାଂକିକାଟିର ନାମଥିଲା 'ନିର୍ବାଚନମ୍' । ତତ୍‌କାଳୀନ ମୁଖ୍ୟମଂତ୍ରୀ ରାଜେନ୍ଦ୍ରନାରାୟଣ ସିଂହ ଦେଓ ମୁଖ୍ୟ ଅତିଥିଭାବେ ଯୋଗ ଦେଇଥିଲେ । ଆଡଭୋକେଟ୍ ଶ୍ରୀ ଭୀମଚରଣ ପତ୍ରୀ ସେତେବେଳେ ଓଡ଼ିଆ ଏମ୍.ଏ. ପଢୁଥିଲେ, ତେଣୁ ମୋର ଛାତ୍ର ଥିଲେ । (ହାୟ ! ବର୍ତ୍ତମାନ ସେ ସ୍ୱର୍ଗତ) ଏକାଂକିକାର ଦୁଇଟି ଚରିତ୍ର ଦୁଇ ସମୁଦି ଥିଲେ ଏବଂ ଦୁଇଟି ରାଜନୈତିକ ଦଳର କୁଜି ନେତା ଥିଲେ । ସେହି ଦୁଇ ସମୁଦି ଭୂମିକାରେ ଅଭିନୟ କରିଥିଲେ ଶ୍ରୀ ଭୀମ ଚରଣ ପତ୍ରୀ (ଷଷ୍ଠବାର୍ଷିକ ଓଡ଼ିଆ ଏମ୍.ଏ ଛାତ୍ର) ଏବଂ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମହାପାତ୍ର (ପଂଚମବାର୍ଷିକ ଓଡିଆ ଏମ୍.ଏ. ଛାତ୍ର) । ସେହି ଦୁଇ ସମୁଦି ଭୋଟରମାନଂକ ପାଇଁ କଅଣ କରିବେ, ପରସ୍ପର ସ୍ପର୍ଦ୍ଧା କରିବାରେ ଲାଗିଯାଇଥିଲେ । ସେମାନଂକ ସଂସ୍କୃତ ଭାଷାର ସଂଳାପ, ଅଭିନୟ ଶୈଳୀ ଓ ବ୍ୟଂଗ-ଉକ୍ତି ଏପରି ହାସ୍ୟରସାତ୍ମକ ଥିଲା ଯେ ମୁଖ୍ୟମଂତ୍ରୀକ ସମେତ ଅଧ୍ୟକ୍ଷ, ସମସ୍ତ ପ୍ରଫେସର ତଥା ଛାତ୍ରସମାଜ ହସି ହସି ଉପଭୋଗ କରିଥିଲେ । ସଂପୂର୍ଣ୍ଣ ଦର୍ଶକ ମଣ୍ଡଳୀରେ ହାସ୍ୟର ଲହରୀ ଖେଳି ଯାଇଥିଲା । ଉତ୍ସବ ପରେ ଶ୍ରୀଯୁକ୍ତ ସିଂହଦେଓ ମୋତେ ଡକାଇ ଧନ୍ୟବାଦ ଜଣାଇଥିଲେ । ସେ ବର୍ଷ ରେଭେନ୍‌ସା କଲେଜର ଛାତ୍ରସଂସଦର ସଭାପତି ଥିଲେ ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା । (ହାୟ ! ବର୍ତ୍ତମାନ ସେ ମଧ୍ୟ ସ୍ୱର୍ଗତ) । ସେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ମୋର ଛାତ୍ର ଥିଲେ । ତେଣୁ ସେ ମୋତେ ଅନୁରୋଧ କରି ରେଭେନ୍‌ସା କଲେଜର ଶତବାର୍ଷିକ ଉତ୍ସବରେ ସଂସ୍କୃତ ଏକାଂକିକା ଅଭିନୟ କରାଇଥିଲେ । ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଯେଉଁ ଯେଉଁ ସଂସ୍କୃତ ଅଭିନୟରେ ଅଂଶ ଗ୍ରହଣ କରିଥିଲେ, ସମସ୍ତେ ନିପୁଣ ଭାବରେ ଅଭିନୟ କରିଥିଲେ ।

●●●

# ଜୟ ବେଦବ୍ୟାସ ଜୟ କାଳିଦାସ

ମୁଁ କଟକ ରେଭେନ୍‌ସା କଲେଜରେ ଓଡିଆ ବିଭାଗରେ ଅଧ୍ୟାପକ ଥାଏଁ । ଓଡିଆରେ ଭଲ କରି କାଳିଦାସ ଗ୍ରଂଥାବଳୀଟିଏ କରିବାକୁ ମୋର ବହୁତ ଆଗରୁ ଖୁବ୍ ଇଛାଥିଲା । ସାହିତ୍ୟାଚାର୍ଯ୍ୟ ଓ ସଂସ୍କୃତ ଏମ୍.ଏ.ରେ ମୁଁ କାଳିଦାସଂକର ଅନେକ ଗୁଡିଏ ରଚନା ପଢିଥିଲି । ଟ୍ରେନିଂ ସ୍କୁଲରେ ଟ୍ରେଣ୍ଡ ଗ୍ରାଜୁଏଟ୍ ଶିକ୍ଷକ ଥିଲାବେଳେ ଗୁରୁଛାତ୍ରଛାତ୍ରୀମାନଂକୁ 'ପ୍ରଣୟବଲ୍ଲରୀ' ପଢାଉଥିଲି । ସେତେବେଳେ ଟ୍ରେନିଂ ସ୍କୁଲରେ 'ପ୍ରଣୟବଲ୍ଲରୀ', କାବ୍ୟ ସଂପୂର୍ଣ୍ଣ ପାଠ୍ୟ ଥିଲା । ଏହି କାବ୍ୟଟି କାଳିଦାସଂକ 'ଅଭିଜ୍ଞାନଶକୁନ୍ତଳମ୍' ନାଟକର ଅବଲଂବନରେ ରଚିତ । 'ଅଭିଜ୍ଞାନଶକୁନ୍ତଳମ୍'ର ଅନେକ ଶ୍ଳୋକ 'ପ୍ରଣୟବଲ୍ଲରୀ' କାବ୍ୟରେ ସୁନ୍ଦର ଭାବରେ ବ୍ୟକ୍ତ ହୋଇଛି । ମୁଁ ପଢାଇଲାବେଳେ ଏପରି ତନ୍‌ମୟ ହୋଇଯାଉଥିଲି ଏବଂ ଏପରି ତନ୍‌ମୟ ଭାବରେ ସଂସ୍କୃତ ଶ୍ଳୋକ ଉଦ୍ଧୃତ କରି ପଢାଉଥିଲି ଯେ ଛାତ୍ରଛାତ୍ରୀମାନେ ଆଗ୍ରହର ସହିତ ଶୁଣୁଥିଲେ । ସେହି ସମୟରୁ କାଳିଦାସଂକ ରଚାନବଳୀ ପ୍ରତି ମୋ ମନରେ ଏକ ମାୟା ସୃଷ୍ଟି ହୋଇଯାଇଥିଲା ଏବଂ ଓଡିଆରେ କାଳିଦାସଂକ ରଚନାବଳୀ ଅନୁବାଦ କରି ମୂଳ ରଚନା ସହିତ ପ୍ରକାଶ କରିବି ବୋଲି ମୋ ମନରେ ଗୋଟିଏ କାମନା ରହିଯାଇଥିଲା । ଥରେ ମୁଁ ଓଡିଶା ସାହିତ୍ୟ ଏକାଡେମିକୁ ଉକ୍ତ କାର୍ଯ୍ୟ କରିବାପାଇଁ ନିବେଦନ କରିଥିଲି । କିଂତୁ ମୋ ନିବେଦନ ନିଷ୍ଫଳ ହୋଇଥିଲା । ସଂସ୍କୃତି ବିଭାଗ ସେକ୍ରେଟେରିଂକୁ ମଧ୍ୟ ନିବେଦନ କରିଥିଲି । ସେତେବେଳେ ଉକ୍ତ ବିଭାଗର ସେକ୍ରେଟେରି ଥିଲେ ବର୍ତ୍ତମାନର ଜଣେ ଅତି ବିଶିଷ୍ଟ କବି । କିଂତୁ ମୋର ନିବେଦନର କିଛି ଉତ୍ତର ପାଇନଥିଲି ।

ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ମୋର ସେହି ବଦ୍ଧମୂଳ କାମନା ଖୁବ୍ ବଳବତୀ ହୋଇଉଠିଲା । ମୁଁ ଆଗେ ୧୯ ସର୍ଗବିଶିଷ୍ଟ 'ରଘୁବଂଶମ୍' କାବ୍ୟଟିକୁ ଅନୁବାଦ କରିବାରେ ଲାଗିଗଲି । କଲେଜରେ ଅଧ୍ୟାପନା ଓ ଘରର ବନ୍ଧୁ ଝଂଝାଳ ଭିତରେ 'ରଘୁବଂଶମ୍'ର ଅନୁବାଦ ପ୍ରାୟ ୨ ବର୍ଷରେ ସରିଲା । ମୋ ବଡ ଭାଇଂକ ପୁଅ ସତ୍ୟବ୍ରତ ଟ୍ରେଡଲ ମେସିନ୍‌ଟିଏ ପକାଇ ପ୍ରେସ୍‌ଟିଏ କରିଥାଏ । ମୁଁ ମଧ୍ୟ ତାକୁ ସାହାଯ୍ୟ କରୁଥାଏ । ପ୍ରେସ୍‌ଟିର ନାମ ଥିଲା କଲ୍ୟାଣ ପ୍ରେସ୍ । ମୁଁ ଭାବିଲି କାଳିଦାସଂକର ରଚନାବଳୀକୁ ଭାଗ ଭାଗ କରି ଛପାଇବି ଏବଂ କୌଣସି ପ୍ରକାରେ ବହି ବିକ୍ରି କରି ଖର୍ଚ୍ଚ ଉଠାଇବି । ପରେ ହାତକୁ ପଇସା ଆସିଲେ ପରବର୍ତ୍ତୀ ଭାଗ ଛପାଇବି । କୌଣସି ପ୍ରକାଶକଂକୁ ଅନୁରୋଧ କରିବାକୁ ଉଚିତ ମଣିଲି ନାହିଁ । କାରଣ, ମୁଁ ଜାଣିଥିଲି, ପ୍ରକାଶକମାନେ ବହୁତ ଡେରି କରନ୍ତି ଏବଂ କିଛି ଦିଅନ୍ତିନାହିଁ । ଅବଶ୍ୟ ସମସ୍ତେ ଯେ ସମାନ, ତା ନୁହେଁ ।

ଦିନେ ଭୁବନେଶ୍ୱର ମ୍ୟୁଜିଅମକୁ ଯାଇଥିଲି । ପଣ୍ଡିତ ନୀଳମଣି ମିଶ୍ର ଦେଖା ହେଲେ । ସେ ପୋଥିବିଭାଗ ଦାୟିତ୍ୱରେ ଥାଆନ୍ତି । ସଂସ୍କୃତରେ ବିଦ୍ୱାନ୍, ଉଦାରମନା, ପରୋପକାରୀ ବ୍ୟକ୍ତିଟିଏ । ତାଂକ ସହିତ ଆଳାପ କରୁ କରୁ କାଳିଦାସ ଗ୍ରଂଥାବଳୀ କଥା କହିଲି । ମୁଁ ନିଜ ହାତରୁ ଖର୍ଚ୍ଚ କରି ଛପାଇବାକୁ ଚେଷ୍ଟା କରୁଛି ବୋଲି ଜାଣି ସେ ମୋତେ ଭାରତ ସରକାରଂକ ଶିକ୍ଷାବିଭାଗ ଅଧୀନରେ ଥିବା ସଂସ୍କୃତ ସଂସ୍ଥାନକୁ ଆର୍ଥିକ ସହାୟତା ନିମନ୍ତେ ଆବେଦନ କରିବାକୁ ପରାମର୍ଶ ଦେଲେ । ସେ ଥିଲେ ସେହି ସଂସ୍ଥାନର ଜଣେ ସଭ୍ୟ । ସେ ଠିକଣା ଦେଲେ । ମୁଁ ଫର୍ମ ମଗାଇ ଆବେଦନ କଲି । ସଂସ୍ଥାନର ବୈଠକରେ ମୋର ଆବେଦନ ଗୃହୀତ ହେଲା । ପଣ୍ଡିତ ନୀଳମଣି ମିଶ୍ରଂକ ଅନୁକୂଳ ମଂତବ୍ୟ ହେତୁ ଏହା ସଂଭବ ହେଲା । (ପରେ ପଣ୍ଡିତ ନୀଳମଣି ମିଶ୍ରଂକ ସାହାଯ୍ୟ ନେଇ ମୁଁ ମୋର ଗୁରୁ ପଣ୍ଡିତ ଦୟାନିଧି ମହାପାତ୍ରଂକ ପାଇଁ ମାସିକ ପେନସନ୍ ବ୍ୟବସ୍ଥା କରାଇପାରିଥିଲି । ଉକ୍ତ ସଂସ୍ଥାନ ପକ୍ଷରୁ ଯୋଗ୍ୟ ସଂସ୍କୃତ ପଣ୍ଡିତମାନଂକୁ ମାସିକ ପେନ୍‌ସନ ଦିଆଯିବାର ବ୍ୟବସ୍ଥା ଥିଲା ।) ମୋର କାଳିଦାସ ଗ୍ରଂଥାବଳୀ ପାଇଁ ଆବେଦନ ମଂଜୁର ହେଲା ଏବଂ ଛପାଖର୍ଚ୍ଚର ଷାଠିଏ ଭାଗ ବହନ କରିବାକୁ ସଂସ୍ଥାନ ରାଜି ହୋଇ ମୋ ପାଖକୁ ପତ୍ର ଦେଲେ । ତା'ସହିତ ସର୍ତ୍ତ ଥିଲା ଯେ ମୁଁ ବିନା ମୂଲ୍ୟରେ ସଂସ୍ଥାନକୁ ଶହେ ଖଣ୍ଡ ବହି ଦେବି ।

ଆର୍ଥିକ ସହାୟତାର ପ୍ରତିଶ୍ରୁତି ପାଇବାରୁ ମଁ କାଳିଦାସ ଗ୍ରଂଥାବଳୀ ଭଲ କରି କରିବାକୁ ଠିକ୍ କଲି । 'ସମାଜ' ଗୋପବଂଧୁ ଟାଇପ୍ ଫାଉଣ୍ଡ୍ରି ରୁ ଭଲ ସୀସା ଅକ୍ଷର

କିଣିଲି । ପୁସ୍ତକର ବାମପଟ ପୃଷ୍ଠାମାନଂକରେ ଆଗେ ନାଗରୀଲିପିରେ ଓ ତା ତଳକୁ ଓଡିଆ ଲିପିରେ ମୂଳ ରଚନା ଏବଂ ଡାହାଣପଟ ପୃଷ୍ଠାମାନଂକରେ ଓଡିଆ ଅନୁବାଦ ଛପାଇବାର ଯୋଜନା କଲି । ନାଗରୀ ଲିପିରେ ଛପାଇବାର ଉଦ୍ଦେଶ୍ୟଥିଲା ପାଠକମାନେ ମୂଳ ରଚନାକୁ ଓଡିଆ ଲିପିରେ ପଢିବା ସହିତ ନାଗରୀ ଲିପିରେ ମଧ୍ୟ ପଢିବାକୁ ସୁଯୋଗ ପାଇବେ । ଏହାଦ୍ୱାରା ନାଗରୀ ଲିପି ସହିତ ପରିଚିତ ହୋଇଯିବେ । ସେଥିପାଇଁ କଟକ ସୁରେନ୍ (ମହାପାତ୍ର) ବାବୁଙ୍କ ଟାଇପ୍ ଫାଉଣ୍ଡ୍ରିରେ ବରାଦ ଦେଇ ନାଗରୀ ଅକ୍ଷର ସେଟ୍‌ଗୁଡିଏ ତିଆରି କରାଇଆଣିଲି । ଭଲ କାଗଜରେ ଛପାଇଲି । ନିଜେ ତିନି ଚାରି ଥର ପ୍ରୁଫ୍ ଦେଖିଲି । ସେତେବେଳେ ଥିଲା ଅକ୍ଷର ପ୍ରେସ୍ । ଅକ୍ଷର ଖଂଜି ଖଂଜି କଂପୋଜ୍ କରାଯାଉଥିଲା । ଟ୍ରେଡଲ ମେସିନ୍ ଛପାରେ ଅନେକ ସମୟରେ ଅକ୍ଷର ଭାଂଗିଯାଉଥିଲା । ସେଥିପ୍ରତି ନଜର ରଖି ମେସିନ୍ ପାଖରେ ଠିଆ ହୋଇ କୌଣସି ଅକ୍ଷର ଭାଂଗିଗଲେ ବା ଗଳି ପଡିଲେ ମେସିନ୍ ବନ୍ଦ କରାଇ, ପୁଣି ନୂଆ ଅକ୍ଷର ଦେଇ, ଏହିପରି ଭାବରେ ଅତ୍ୟନ୍ତ ଯତ୍ନର ସହିତ ମୁଦ୍ରଣ ସଂପନ୍ନ କରାଇଲି । ତାପରେ ବାଇଣ୍ଡର ଡାକି ଭଲ ରେକ୍‌ସିନ୍ କନାରେ ଏକ ହଜାର ବହି ବନ୍ଧେଇ କରାଇଲି । ବହିଗୁଡିକ ସରଳ ଭାବରେ ବେଶ୍ ସୁଦୃଶ୍ୟ ହେଲା ।

ଗ୍ରଂଥାବଳୀର ପ୍ରଥମଭାଗ (ରଘୁବଂଶମ୍ ୧୯ ସର୍ଗ) ବହି ଖଣ୍ଡିକ ଦେଖି ମୋର ପ୍ରିୟ ବଂଧୁ ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକ ଖୁବ୍ ଖୁସି ହେଲେ ଏବଂ ସେଥିରୁ ଖଂଡିଏ ତତ୍‌କାଳୀନ ମୁଖ୍ୟ ମଂତ୍ରୀଂକ ହାତରେ ଦେବାପାଇଁ ପରାମର୍ଶ ଦେଲେ । ସଂସ୍କୃତଜ୍ଞ ତଥା ସଂସ୍କୃତ ପ୍ରେମୀ ବ୍ୟକ୍ତିଭାବେ ମୁଖ୍ୟମଂତ୍ରୀଂକର ସୁନାମଥାଏ । ଦୁଃଖୀଶ୍ୟାମ ବାବୁଂକ କଥାରେ ମୁଁ ଖୁସି ହେଲି । ଦିନେ ଦୁଃଖୀଶ୍ୟାମ ବାବୁ ଓ ମୁଁ ସାଂଗ ହୋଇ ମୁଖ୍ୟମଂତ୍ରୀଂକ ବାସ ଭବନକୁ ଗଲୁଁ । ମୁଖ୍ୟମଂତ୍ରୀ ବହିଟି ଦେଖି ଏବଂ କେତୋଟି ଶ୍ଳୋକର ଅନୁବାଦ ପଢି ଆନନ୍ଦ ପ୍ରକାଶ କଲେ ଏବଂ ସ୍ୱତଃ କହିଲେ - "ଆମେ ସରକାରଂକ ପକ୍ଷରୁ ଏହାର ଉଦ୍‌ଘାଟନ କରାଇବା ।" ସଂଗେ ସଂଗେ ସେ ସଂସ୍କୃତି ବିଭାଗ ସେକ୍ରେଟେରିଙ୍କୁ ଟେଲିଫୋନ୍‌ରେ ନିର୍ଦ୍ଦେଶ ଦେଲେ ସଂସ୍କୃତି ବିଭାଗ ପକ୍ଷରୁ କାଳିଦାସ ଗ୍ରଂଥାବଳୀର ଉଦ୍‌ଘାଟନ କରାଇବା ପାଇଁ । ମୋର ଆନନ୍ଦର ସୀମା ରହିଲା ନାହିଁ । କିଂତୁ ତତ୍‌କାଳୀନ ସଂସ୍କୃତି ବିଭାଗ ମଂତ୍ରୀଙ୍କୁ ଏହା ଭଲ ଲାଗିଲା ନାହିଁ । ସେ ଭାବିଲେ କାହା ବହିକୁ ସରକାର କାହିଁକି ଉଦ୍‌ଘାଟନ କରିବେ ? ସେ ମୋତେ ତାଂକ ବାସଭବନକୁ ଡକାଇ କହିଲେ - "ସରକାରଂକ ପକ୍ଷରୁ ଉଦ୍‌ଘାଟନ କରାହେଲେ ଗୋଟାଏ ଖରାପ ପରଂପରା ସୃଷ୍ଟି ହୋଇଯିବ । ଅନ୍ୟମାନେ ସେପରି କରାଇବାକୁ ସରକାରଂକୁ ବାଧ୍ୟ କରାଇବେ ।

ତେଣୁ କୌଣସି ଗୋଟିଏ ସଂସ୍ଥା ପକ୍ଷରୁ ଉଦ୍‌ଘାଟନ କରାହେବା ଭଲ । ସରକାରଂକ ସଂସ୍କୃତି ବିଭାଗ ସେହି ସଂସ୍ଥାକୁ ଖର୍ଚ୍ଚ ଦେଇଦେବେ ।" ମୁଁ ତ ସଂସ୍କୃତ ଓ ଓଡିଆ ପାଠ ଛଡା ଆଉ କିଛି ବୁଝୁନଥିଲି । ପ୍ରଶଂସା ପାଇବାକୁ ମଧ୍ୟ ମୋର କାମନା ନଥିଲା । କାହାକୁ କୌଣସି ବିଷୟରେ ମୁଁ ଅନୁରୋଧ କରୁନଥିଲି । ତେଣୁ କହିଲି - "ଆପଣ ଯେମିତି ଚାହୁଁଛନ୍ତି, ସେମିତି କରନ୍ତୁ ।"

କୌଣସି ଗୋଟିଏ ସାଂସ୍କୃତିକ ସଂସ୍ଥାକୁ ଦାୟିତ୍ୱ ଦିଆଗଲା । ମୋର ଧାରଣା, ସେହି ନାମରେ ପ୍ରକୃତରେ କୌଣସି ସଂସ୍ଥା ନଥିଲା । ଯାହା ହେଉ, ଉକ୍ତ ସଂସ୍ଥାପକ୍ଷରୁ ଦିନ ସ୍ଥିର କରାଯାଇ ଭୁବନେଶ୍ୱର ସୂଚନା ଭବନରେ କାଳିଦାସ ଗ୍ରଂଥାବଳୀର ପ୍ରଥମ ଭାଗ ଉଦ୍‌ଘାଟନ କରାହେଲା । ମୁଖ୍ୟମଂତ୍ରୀ ଉଦ୍‌ଘାଟନ କଲେ । ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଓ ପ୍ରଫେସର ଗୌରୀକୁମାର ବ୍ରହ୍ମା ଅତିଥିଭାବେ ଯୋଗ ଦେଇଥିଲେ । କାଳିଦାସ ଗ୍ରଂଥାବଳୀ ଉଦ୍‌ଘାଟନ ବିଷୟ ସଂବାଦପତ୍ରମାନଂକରେ ପ୍ରକାଶ ପାଇଲା । ମୁଁ ଗୋଟିଏ ଭଲ କାମ କରିଥିବାର ଧାରଣା ପୋଷଣ କରି ଆନନ୍ଦ ଅନୁଭବ କଲି ।

କିଂତୁ ସେହି ଆନନ୍ଦ ପଛରେ ଲୁଚି ରହିଥିଲା ଚରମ ଦୁର୍ଭାଗ୍ୟ । 'ରଘୁବଂଶମ୍'ରେ ଗୋଟିଏ ଉକ୍ତି ଅଛି - "ବିଷମପ୍ୟ ମୃତଂ କ୍ୱଚିଦ୍ ଭବେଦମୃତଂ ବା ବିଷମୀଶ୍ୱରେଚ୍ଛୟା ।।" ଅର୍ଥାତ୍ ଈଶ୍ୱରଂକ ଇଚ୍ଛାରେ କେଉଁଠି ବିଷ ଅମୃତ ହୁଏ, କେଉଁଠି ଅମୃତ ବିଷ ହୁଏ । ମୋ ଜୀବନରେ ଅମୃତ ବିଷ ହେଲା । ସଂବାଦପତ୍ରମାନଂକରେ କାଳିଦାସ ଗ୍ରଂଥାବଳୀ ଉଦ୍‌ଘାଟନ ବିଷୟ ପ୍ରକାଶ ପାଇବା ଦିନଠାରୁ ଓଡିଆ ବିଭାଗର ମୁଖ୍ୟ ତଥା ଅନ୍ୟ କେତେ ଜଣେ ଅଧ୍ୟାପକ ମୋ ପ୍ରତି ମୁହଁ ଫଣ ଫଣ କଲେ । କଥାବାର୍ତ୍ତାରେ ଚିଡିଲା ଭଳି ହେଲେ । ବିଭାଗର ତଥାକଥିତ ଯେଉଁସବୁ ନିୟମକୁ କେହି ପାଳନ କରନ୍ତି ନାହିଁ, ସେହିସବୁ ନିୟମର ପାଳନ ବିଭାଗୀୟ ମୁଖ୍ୟ କେବଳ ମୋରିଠାରୁ କଡାକଡି ଭାବେ ଆଶା କଲେ । ମୁଁ ପୂର୍ବରୁ ସ୍କୁଲଶିକ୍ଷକ ଥିବାରୁ ଅନେକଙ୍କ ଠାରୁ ବୟସରେ ବଡଥିଲି । ଏହା ବିଭାଗୀୟ ମୁଖ୍ୟ ହୃଦୟଂଗମ କରିପାରିଲେନାହିଁ । କେତେଜଣ ସହକର୍ମୀ ବଂଧୁ ମୋ ପ୍ରତି ଅବଂଧୁ ଆଚରଣ କଲେ । ମୁଁ ସମସ୍ତ ସହ୍ୟ କରି ମାନସିକ ଅବସାଦ ସତ୍ତ୍ୱେ ଉତ୍ତମ ରୂପେ ଅଧ୍ୟାପନା କରିଚାଲିଲି ।

ଦିନେ ମୁଁ ରେଭେନ୍‌ସା କଲେଜର ଷ୍ଟାଫ୍ କମନ୍‌ରୁମ୍‌ରେ ବସିଥାଏଁ, ଜଣେ ପିଅନ ପ୍ରିନ୍‌ସିପାଲଂକ ଅଫିସ୍‌ରୁ ଏକ ଚିଠି ଆଣି ମୋତେ ଦେଇଗଲା । ଚିଠି ଖୋଲି ମୁଁ ପଢିଲି । ସେଥିରେ ମୋଠାରୁ କୈଫିୟତ ମଗାଯାଇଥିଲା ଉପର ଅଫିସ୍‌ରୁ । ଚିଠିର ସାରକଥା ଥିଲା - ମୁଁ କର୍ତ୍ତବ୍ୟ ସଂପାଦନ କରୁନାହିଁ, ମୋ ପ୍ରତି କାହିଁକି ଦଣ୍ଡବିଧାନ

କରାନଯିବ ? ଚିଠିଟି ପଢ଼ିଲାପରେ ମୋର ବିସ୍ମୟର ସୀମା ରହିଲା ନାହିଁ । "ମୁଁ କର୍ତ୍ତବ୍ୟ ସଂପାଦନ କରୁନାହିଁ, ମୋ ପ୍ରତି କାହିଁକି ଦଣ୍ଡବିଧାନ କରାନଯିବ ?" ଭାବି ଭାବି ଦୁଃଖରେ ଅଭିଭୂତ ହୋଇପଡିଲି । ମୁଁ ବୁଝିଗଲି, ଓଡିଆ ବିଭାଗର ମୁଖ୍ୟ କଲେଜର ଅଧ୍ୟକ୍ଷଂକୁ ମୋ ବିରୁଦ୍ଧରେ ମଂତବ୍ୟ ଦେଇଛନ୍ତି, ଅଧ୍ୟକ୍ଷ ମୋ ଚରିତ୍ରପଂଜିରେ ତାହା ଲେଖି ସରକାରଂକୁ ଜଣାଇଛନ୍ତି ଏବଂ ସରକାର ମୋଠାରୁ କୈଫିୟତ ମାଗିଛନ୍ତି । ମୁଁ ଦୁଃଖିତ ତଥା ଚିନ୍ତିତ ହୋଇପଡିଲି । ଶିକ୍ଷକତାବୃତ୍ତିକୁ ଗ୍ରହଣ କରିଥିବାଦିନଠାରୁ ମୋର ସେଥିରେ ଆତ୍ମସଂତୋଷ ଥିଲା । ସ୍କୁଲରେ ବା କଲେଜରେ ମୁଁ କଦାପି ଶିକ୍ଷାଦାନରେ ବା ଅନ୍ୟାନ୍ୟ କାର୍ଯ୍ୟରେ ଅବହେଳା କରିନଥିଲି । ସୁନ୍ଦରଗଡ କଲେଜରୁ ରେଭେନ୍ସା କଲେଜକୁ ଡି.ପି.ଆଇ. ନିତାନ୍ତ ଆବଶ୍ୟକତା ଦୃଷ୍ଟିରୁ ମୋତେ ବଦଳି କରାଇ ଆଣିଥିଲେ । ରେଭେନ୍ସା କଲେଜରେ ସେତେବେଳେ ଓଡିଆ ଓ ସଂସ୍କୃତ ମିଶି ଗୋଟିଏ ବିଭାଗଥିଲା । ଉକ୍ତ ବିଭାଗର ମୁଖ୍ୟ ହେଉଥିଲେ ଜଣେ ।

ମୁଁ ପ୍ରଥମେ ସୁନ୍ଦରଗଡ କଲେଜରେ ଥିଲି । ସେହି ସମୟରେ ରେଭେନ୍ସା କଲେଜରେ ଓଡିଆ ଓ ସଂସ୍କୃତ ଉଭୟରେ ଏମ୍.ଏ.ପାଶ୍ କରିଥିବା ଜଣେ ଅଧ୍ୟାପକଂକର ନିତାନ୍ତ ଆବଶ୍ୟକତା ପଡିଲା । କାରଣ ସଂସ୍କୃତର ଜଣେ ଅଧ୍ୟାପକ ଓ ଜଣେ ଅଧ୍ୟାପିକାକଂର ରେଭେନ୍ସା କଲେଜରୁ ବଦଳି ହୋଇଯାଇଥାଏ । ତାଂକ ସ୍ଥାନରେ କେହି ଆସିନଥାନ୍ତି । ତେଣୁ ସଂସ୍କୃତ ପଢାଇବାକୁ ଅସୁବିଧା ହେଉଥାଏ । ତେଣୁ ବିଭାଗୀୟ ମୁଖ୍ୟ ଓଡିଆ ଓ ସଂସ୍କୃତ, ଉଭୟରେ ଏମ୍.ଏ.ପାସ୍ କରିଥିବା ଜଣେ ଅଧ୍ୟାପକଂକୁ ରେଭେନ୍ସା କଲେଜକୁ ପଠାଇବାପାଇଁ ଡି.ପି.ଆଇ.ଙ୍କୁ ଜଣାଇଥାଆନ୍ତି । ମୁଁ ଓଡ଼ିଆ ଓ ସଂସ୍କୃତ, ଉଭୟରେ ଏମ୍.ଏ.ପାସ୍ କରି ଓଡିଶା ଲୋକସେବା ଆୟୋଗଂକ ଦ୍ୱାରା ବଛାଯାଇ ସୁନ୍ଦରଗଡ କଲେଜରେ ଅଧ୍ୟାପକ ଥାଏଁ । ତେଣୁ ଡି.ପି. ଆଇ. ମୋତେ ସୁନ୍ଦରଗଡ କଲେଜରୁ ରେଭେନ୍ସା କଲେଜକୁ ବଦଳି କରି ଅଣାଇଲେ ।

ରେଭେନ୍ସା କଲେଜରେ ଯୋଗଦେବା ଦିନଠାରୁ ମୋତେ ବହୁତ ପରିଶ୍ରମ କରିବାକୁ ପଡୁଥିଲା । ଓଡିଆ ଓ ସଂସ୍କୃତରେ ମୋତେ ବହୁତ କ୍ଲାସ୍ ନେବାକୁ ପଡୁଥିଲା । ଓଡିଆ ଅନର୍ସ ଓ ଓଡିଆ ଏମ୍.ଏ.ରେ ବହୁତ ସଂସ୍କୃତମୂଳକ ପାଠ୍ୟ ଥିଲା । ତା ଛଡା କେବଳ ସଂସ୍କୃତ ଶ୍ରେଣୀମାନଂକରେ ମଧ୍ୟ ସଂସ୍କୃତ ପଢାଇବାକୁ ପଡୁଥିଲା । କିଛି ବର୍ଷ ପରେ ଓଡିଆ ଓ ସଂସ୍କୃତ ଦୁଇଟି ସ୍ୱତଂତ୍ର ବିଭାଗ ହୋଇଗଲା । ମୁଁ ଓଡିଆ ବିଭାଗକୁ ଗ୍ରହଣ କଲି । ପ୍ରଫେସର ଗୋଲୋକ ବିହାରୀ ଧଳଂକ ଅକାଳ ବିୟୋଗ ପରେ ଓଡିଆ ଏମ୍.ଏ.ର ତୃତୀୟ ପତ୍ର (ସଂସ୍କୃତ, ପାଲି, ପ୍ରାକୃତ, ଅପଭ୍ରଂଶ)

ଏବଂ ଷଷ୍ଠ ପତ୍ର (ଭାଷାତତ୍ତ୍ୱ) ପଢାଇବାର ଭାର ମୋ ଉପରେ ପଡିଲା । ଓଡିଆ ଅନର୍ସର ଭାଷା ବିଷୟକ ପାଠ୍ୟର ଦାୟିତ୍ୱ ମଧ୍ୟ ମୋ ଉପରେ ପଡିଲା । ମୁଁ ସେତେବେଳକୁ ଓଡିଆ ଭାଷାତତ୍ତ୍ୱରେ ପିଏଚ୍.ଡି. କରିସାରିଥିଲି । ତେଣୁ ଭାଷାତତ୍ତ୍ୱ ବିଷୟକ ଅନେକ କ୍ଲାସ ମୋତେ ନେବାକୁ ପଡୁଥିଲା । ମୁଁ କ୍ଲାସ୍ ନେଇନେଇ କ୍ଲାନ୍ତ ହୋଇପଡୁଥିଲି । ତା ଛଡା, ବିଭାଗୀୟ କାମ ମୋତେ ଯାହା ଦିଆଯାଉଥିଲା, ତାହା ମଧ୍ୟ ମୁଁ ସଂପନ୍ନ କରୁଥିଲି ।

ସରକାରୀ କୈଫିୟତ ତଲବ ଚିଠିଟି ପଢିସାରି ମୁଁ ଅପମାନ ବୋଧରେ ଓ ଭାବପ୍ରବଣତାରେ ବୁଡିଗଲି । ଖାଲି ଭାବିଲି, ଏତେ ପରିଶ୍ରମ ଓ କର୍ତ୍ତବ୍ୟ- ନିଷ୍ଠାର ଏହି ଫଳ ମିଳିଲା । ଅତୀତରେ ମୁଁ କେତେକ ଅପମାନ ବୋଧକୁ ହଜମ କରିଥିଲି, କିଂତୁ ଏଥର ପାରିଲିନାହିଁ । ଭାରତର ଜରୁରୀ ଅବସ୍ଥା କାଳରେ ଅଧ୍ୟକ୍ଷ ଥରେ ମୋ ଉପରକୁ ବହି ଫିଙ୍ଗିଥିଲେ । କଲେଜର ବାର୍ଷିକ ପରୀକ୍ଷାରେ ଗୋଟିଏ କୋଠରୀରେ ମୁଁ ନିରୀକ୍ଷକ ଥିଲି । ଗୋଟିଏ ପିଲା କେତେଖଣ୍ଡ ବହି ଓ ଖାତାପତ୍ର କୋଠରୀର ଝରକା କାଂଥିଉପରେ ରଖିଦେଇ ଅନ୍ୟ ଧାଡିରେ ବସି ପରୀକ୍ଷା ଦେଉଥିଲା । ପରୀକ୍ଷା ପୂର୍ବରୁ ସେ ସେଗୁଡିକୁ ଦେଖିବାପାଇଁ ଆଣିଥିଲା ମାତ୍ର । କପି କରିବା ଉଦ୍ଦେଶ୍ୟ ତାର ନଥିଲା । କିନ୍ତୁ ଅଧ୍ୟକ୍ଷ ପରୀକ୍ଷା ପରିଦର୍ଶନ କରିବାକୁ ଆସି ସେଗୁଡିକୁ ଝରକା କାଂଥିଉପରେ ଥୁଆ ହୋଇଥିବାର ଦେଖି, ସେଗୁଡିକୁ କପି କରିବାକୁ ଅଣାଯାଇଛି ବୋଲି ଭାବି ରାଗିଗଲେ ଏବଂ ମୋ'ରି ଆଡକୁ ଫୋପାଡିଲେ । ମୁଁ ପିଲାଂକ ଆଗରେ ବହୁତ ଅପମାନ ବୋଧ କରିଥିଲି ଏବଂ ଚାକିରିରୁ ଇସ୍ତଫା ଦେବାକୁ ଚିନ୍ତା କରିଥିଲି । ସେହି ଅପମାନକୁ ମଧ୍ୟ ମୁଁ ସହ୍ୟ କରିନେଇଥିଲି । କିଂତୁ ଏଥର କାହିଁକି କେଜାଣି ସହ୍ୟ କରିପାରିଲିନାହିଁ । ଅତୀତର ସ୍କୁଲଶିକ୍ଷକ ଜୀବନର ମହତ୍ତ୍ୱ ମୋତେ ଅଧିକ ବିଚଳିତ କରିପକାଇଲା । ମୁଁ କାହା ଆଗରେ କିଛି ନ କହି , ସଂଗେ ସଂଗେ ଇସ୍ତଫାପତ୍ର ଲେଖି କଲେଜ ଅଫିସ୍‌ରେ ଦେଇଦେଲି । ମୋର ଦରିଦ୍ର ପରିବାରର ଅବସ୍ଥା କଅଣ ହେବ, ଝିଅମାନେ କିପରି ବିଭା ହେବେ, କୌଣସି କଥା ମୋ ମୁଣ୍ଡକୁ ପଶିଲାନାହିଁ । ଚାକିରି ପ୍ରାୟ ଆହୁରି ସାତ ବର୍ଷ ଥିଲା । ଅଧିକ କାଳ ଚାକିରି କଲେ ଅଧିକ ପେନସନ ମିଳିବ, ୟୁ.ଜି.ସି. ବେତନ ହାର ବଢିବାର ଥାଏ, ଏସବୁ କଥା ମଧ୍ୟ ମୋ ମୁଣ୍ଡକୁ ପଶିଲା ନାହିଁ । ମୋ ମୁଣ୍ଡ ସତେଯେପରି ଭୂତଗ୍ରସ୍ତ ହୋଇଗଲା । ମୋତେ ତିନିମାସ ଭିତରେ ଚାକିରିରୁ ଅବସର ଦିଆଯାଉ ବୋଲି ଲେଖି ଇସ୍ତଫାପତ୍ର କଲେଜ ଅଫିସ୍‌ରେ

ଦେଇଦେଲି । ତିନିମାସ ଭିତରେ ମୋ ଇସ୍ତଫାପତ୍ର ଗୃହୀତ ହୋଇଯାଇଥିଲା । ମୁଁ ଚାକିରୀରୁ ବିଦାୟ ନେଲି । ମୋ ସହକର୍ମୀମାନଂକ ମଧ୍ୟରୁ କେତେକ ମୁଁ ଠିକ୍ କଲିନାହିଁ ବୋଲି କହିଲେ । କିଂତୁ ବର୍ତ୍ତମାନ ସୁଦ୍ଧା ମୁଁ ଭାବିପାରୁନାହିଁ ଠିକ୍ କରିଥିଲି କି ଭୁଲ କରିଥିଲି । ସରକାରୀ କୈଫିୟତ ଚିଠିଟି ପାଇଲା ପରେ ମୁଁ ତାହାକୁ ଖଣ୍ଡନ କରି ଉତ୍ତର ଦେଇପାରିଥାନ୍ତି, କିଂତୁ ତାହା କଲି ନାହିଁ । କାହିଁକି କଲି ନାହିଁ, ଏପର୍ଯ୍ୟନ୍ତ ମଧ୍ୟ ମୁଁ ଭାବିପାରୁନାହିଁ । ତେବେ କଟକ ସେକଣ୍ଡାରି ଟ୍ରେନିଂ ସ୍କୁଲରେ 'ପ୍ରଣୟବଲ୍ଲରୀ' ପଢାଇଲାବେଳେ କାବ୍ୟ ଆରମ୍ଭରେ ଯେଉଁ 'ଜୟ ବେଦବ୍ୟାସ ଜୟ କାଳିଦାସ' ପଢାଇଥିଲି, ତାହାର ମାୟାକୁ ମୁଁ ସାକାର କରିପାରିଛି ଅର୍ଥାତ୍ ଓଡିଆରେ କାଳିଦାସ ଗ୍ରଂଥାବଳୀ କରି ପାରିଛି । ଏହା ମୋ ପକ୍ଷରେ ପରମ ତୃପ୍ତିର ବିଷୟ । କାଳିଦାସ ଗ୍ରଂଥାବଳୀ ପ୍ରଥମ ଭାଗ (କାବ୍ୟଭାଗ) ଓ ଦ୍ୱିତୀୟ ଭାଗ (ନାଟକ ଭାଗ) ପ୍ରକାଶ ପାଇ ଓଡିଆ ସାହିତ୍ୟର ଏକ ଆବଶ୍ୟକତା ପୂରଣ କରିଛି ବୋଲି ମୁଁ ମନେ କରୁଛି ।



# ନମୋନମଃ ଶହୀଦ୍‌ନଗର


ପୁଣ୍ୟକ୍ଷେତ୍ର ଏକାମ୍ର କାନନର (ଭୁବନେଶ୍ୱର) ଶହୀଦନଗରରେ ତିନି ବର୍ଷ ରହିବାର ସୌଭାଗ୍ୟ ଲାଭ କରିଥିଲି । ରାଜ୍ୟ ଟେକ୍ସ୍ଟ ବୁକ୍ ବ୍ୟୁରୋ (ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା) ଶହୀଦନଗରରେ ଅବସ୍ଥିତ ଥିଲା ଏକ ଭଡ଼ା ଘରେ । ମୁଁ ସେଠାକୁ ଜଣେ ଭାଷା ବିଶେଷଜ୍ଞ ରୂପେ ଡେପୁଟେସନରେ ଯାଇଥିଲି । ଶହୀଦନଗରରେ ଏକ ଘର ଭଡ଼ା ନେଇ ସପରିବାର ରହୁଥିଲି । ଘରର ପ୍ଲଟ୍ ନମ୍ବର ମନେପଡୁଛି ୧୬୮ ଥିଲା ଏବଂ ଘରର ମାଲିକ ଥିଲେ ବ୍ରଜବାବୁ । ଖୁବ୍ ଭଲ ଲୋକ (ସାଂଜ୍ଞା ଭୁଲିଗଲିଣି) । ସେ ଆଦୌ ଘର ମାଲିକ ଭଳି ବ୍ୟବହାର କରୁ ନ ଥିଲେ, ଆପଣାର ଲୋକ ଭଳି ବ୍ୟବହାର କରୁଥିଲେ । ଭଡ଼ା ନେଉଥିଲେ ମାସିକ ଟ ୧୭୫.୦୦ । ତିନୋଟି ଘର, ପ୍ରଶସ୍ତ ଅଗଣା, କଳପାଣି, ପାଇଖାନା ଆଦି ସବୁ ସୁବିଧା ଥିଲା । ସାମନାକୁ ଫର୍ଦ୍ଦ ଜାଗା ଖଣ୍ଡେ ଥିଲା । ମୋ ପିଲାମାନେ ସେଠି ଖେଳୁଥିଲେ । ପିଲାମାନେ (ମୋର ଓ ବଡ଼ଭାଇଙ୍କର) ସାନ ସାନ ଥିଲେ । ସାନ ସାନମାନେ ଶହୀଦନଗର ପ୍ରାଥମିକ ବିଦ୍ୟାଳୟରେ ଏବଂ ବଡ଼ମାନେ ଶହୀଦନଗର ମାଇନର ସ୍କୁଲ ଓ ହାଇସ୍କୁଲରେ ପଢ଼ିଲେ ।

ମୋ ପଡ଼ିଶା ଘରେ ରହୁଥିଲେ ସୁବାସ ଓ ତାପସ, ଭଉଣୀ ଚଇତାଳି ଓ ତାଙ୍କ ମାଆ । ସୁବାସଙ୍କର ପୁଅଟିଏ ହୋଇଥିଲା । ଡାକ ନାମ ଭଗି । ତାପସ ଟି.ଭି.ରେ କାମ କରୁଥିଲେ । ଆଜି ତାପସ ବୋଷ ନାମଟି ଟି.ଭି. କ୍ଷେତ୍ରରେ ଜଣାଶୁଣା । ମୋ ସ୍ତ୍ରୀ, ଚଇତାଳି ବୋଉ ଓ ସାମନା ଘରର ବଙ୍ଗାଳୀ ପରିବାରର ଟାବୁ ବୋଉ ସାଙ୍ଗ ହୋଇ ଶହୀଦନଗର ହାଟକୁ ଯାଉଥିଲେ ଏବଂ ହାଟରୁ ଆବଶ୍ୟକ ପନିପରିବା ଓ ତେଜରାତି

ଜିନିଷପତ୍ର କିଣି ଆଣୁଥିଲେ । ଶହୀଦନଗରର ଅର୍ଦ୍ଧାଧିକ ପ୍ଲଟ୍ ଥିଲା ଫାଙ୍କା । ଘର ତିଆରି ହୋଇ ନ ଥିଲା । ସବୁଆଡ଼େ ମୁକ୍ତ ପରିବେଶ, ମୁକ୍ତ ପବନ । ଯାନବାହନ ଓ ଜନଗହଳି ଖୁବ୍ କମ୍ ଥିଲା । ୧୯୭୫ରେ ମୁଁ ପୁଣି ଥରେ ରେଭେନ୍ସା କଲେଜକୁ ଆସିବା ପର୍ଯ୍ୟନ୍ତ ଶହୀଦନଗରରେ ବଡ଼ ଶାନ୍ତି ଓ ଆନନ୍ଦରେ ସପରିବାର ରହିଥିଲି ।

ଟେକ୍ସ୍ ବୁକ୍ ବ୍ୟୁରୋକୁ ମୁଁ କିପରି ଯାଇଥିଲି, ତାହା ସ୍ମରଣ କଲେ ପ୍ରଫେସର ବିଧୁଭୂଷଣ ଦାସଙ୍କ ପ୍ରତି ମୋର ମନ କୃତଜ୍ଞତାରେ ପୂର୍ଣ୍ଣ ହୋଇଯାଏ । ମୁଁ ଭଦ୍ରକ କଲେଜରେ ଥିଲାବେଳେ ମୋର ପିଏଚ୍.ଡି. ଗବେଷଣା ନିବଂଧ 'ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ', ସମାପ୍ତ କରି ଉତ୍କଳ ବିଶ୍ୱବିଦ୍ୟାଳୟରେ ଦାଖଲ କରିଥିଲି । ଉକ୍ତ ନିବଂଧଟି ଭାଷାତାତ୍ତ୍ୱିକ ଢାଂଚାରେ ପ୍ରସ୍ତୁତ ହୋଇଥିଲା । ସେ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯେ କୌଣସି ବିଷୟର ନିବଂଧର ପରୀକ୍ଷା ପାଇଁ ନିଶ୍ଚୟ ଜଣେ ବିଦେଶୀ ବିଦ୍ୱାନଙ୍କୁ ଏକ ପରୀକ୍ଷକ ନିଯୁକ୍ତ କରାହେବା ବାଧତାମୂଳକ ଥିଲା । ଲଣ୍ଡନର ଜଣେ ବିଦ୍ୱାନ୍ ମୋ ନିବଂଧର ଏକ ପରୀକ୍ଷକ ହୋଇଥିଲେ । ମୋତେ ଡକ୍ଟରେଟ୍ ଡିଗ୍ରୀ (ପିଏଚ୍.ଡି) ମିଳିଲା ପରେ ସେହି ସମ୍ବାଦଟି 'ସମାଜ'ରେ ପ୍ରକାଶ ପାଇଥିଲା । ସେତେବେଳେ ଏହି ଡିଗ୍ରୀ ପାଇବା ଏକ ଗୌରବାବହ କୃତିତ୍ୱ ବୋଲି ବିବେଚିତ ହେଉଥିଲା । ସମ୍ବାଦପତ୍ରରେ ତାହା ବିନା ପଇସାରେ ପ୍ରକାଶ ପାଇଥିଲା । ଏବେ ପଇସା ଦେବାକୁ ପଡୁଛି । ଉକ୍ତ ଡିଗ୍ରୀ ପାଇବା ମଧ୍ୟ ଆଉ ଗୌରବାବହ ବିବେଚିତ ହେଉନାହିଁ । ଶୁଣିବାକୁ ମିଳୁଛି, ସେଥିରେ ବହୁ କଳଙ୍କ କାରବାର ହେଉଛି । ଉତ୍କଳ ବିଶ୍ୱବିଦ୍ୟାଳୟରେ ମଧ୍ୟ ପରୀକ୍ଷକ ନିଯୁକ୍ତିରେ ଆଉ ସେ ସମୟର ନିୟମ ନାହିଁ । ମୋର ଡକ୍ଟରେଟ୍ ଡିଗ୍ରୀ ପ୍ରାପ୍ତି ସମ୍ବାଦ 'ସମାଜ'ରେ ପ୍ରକାଶ ପାଇଲା ପରେ ମୁଁ ସେ ସମୟର ଡି.ପି.ଆଇ. ପ୍ରଫେସର ବିଧୁ ଭୂଷଣ ଦାସଙ୍କ ଠାରୁ ଏକ ଅଭିନନ୍ଦନ ପତ୍ର ପାଇଥିଲି । ସେଥିରେ ସେ ଗବେଷଣା ଲବ୍ଧ ଜ୍ଞାନକୁ ଉପଯୋଗ କରିବା ପାଇଁ ମୋତେ ପରାମର୍ଶ ଦେଇଥିଲେ । ମୋର ଆଶ୍ଚର୍ଯ୍ୟର ଓ ଆନନ୍ଦର ସୀମା ରହି ନ ଥିଲା । ବିଧୁ ବାବୁ ଥିଲେ ଯେପରି ସୁଦକ୍ଷ ଅଫିସର, ସେହିପରି ସୁଦକ୍ଷ ପ୍ରଶାସକ ମଧ୍ୟ । ସରକାରୀ ପ୍ୟାଡ୍‌ରେ ଲିଖିତ ତାଙ୍କର ପତ୍ରଟି ମୁଁ ବହୁବର୍ଷ ପର୍ଯ୍ୟନ୍ତ ସାଇତି ରଖିଥିଲି । ଦୀର୍ଘ ସମୟ ସ୍ରୋତରେ ତାହା କେଉଁଠି ନଷ୍ଟ ହୋଇଗଲା । ତାଙ୍କ ପତ୍ର ପାଇବାର କିଛି ଦିନ ପରେ ମୁଁ ଟେକ୍ସ୍ ବୁକ୍ ବ୍ୟୁରୋକୁ ଭାଷା ବିଶେଷଜ୍ଞ ରୂପେ ବଦଳି ନିର୍ଦ୍ଦେଶ ପାଇଲି ।

ବ୍ୟୁରୋରେ ମୁଁ ଯେବେ ଯୋଗ ଦେଇଥିଲି, ବ୍ୟୁରୋର ନିର୍ଦ୍ଦେଶକ ଥିଲେ ଡକ୍ଟର ଶ୍ରୀନିବାସ ସାହୁ । ଶ୍ରୀନିବାସ ବାବୁ ଖୁବ୍ କର୍ମଠ ଓ ଦକ୍ଷ ଅଫିସର ଥିଲେ । ପରେ

ଆଇ.ଏ.ଏସ୍. ପାଇ ଆହୁରି ଉଚ୍ଚ ପଦାଧିକାରୀ ହୋଇଥିଲେ । ମୁଁ କଟକ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଓ ଛାତ୍ରାବାସର ସହକାରୀ ପରିଚାଳକ ଥିଲାବେଳେ ଶ୍ରୀନିବାସ ବାବୁଙ୍କର ଦୁଇ ପୁଅ ଅମିତାଭ ଓ ତଥାଗତ ଛାତ୍ରାବାସରେ ରହୁଥିଲେ । ପିଲା ଦୁଇଟି ଭାରି ଧୀରସ୍ଥିର ଓ ଶାନ୍ତଶିଷ୍ଟ ଥିଲେ । ଶ୍ରୀନିବାସ ବାବୁଙ୍କ ପରେ ନିର୍ଦ୍ଦେଶକ ହେଲେ ଡକ୍‌ଟର ଗଦାଧର ମିଶ୍ର । ସେ ରେଭେନ୍‌ସା କଲେଜରେ ଉଦ୍ଭିଦ ବିଜ୍ଞାନରେ ପ୍ରଫେସର ଥିଲାବେଳେ ମୁଁ ସେଠାରେ ଅଧ୍ୟାପକ ଥିଲି । ଗଦାଧରବାବୁ ଧୀରସ୍ଥିର ଓ କୋମଳ ସ୍ୱଭାବର ଲୋକ ଥିଲେ । ତା'ପରେ ସେ ସ୍କୁଲ ବିଭାଗର ଡି.ପି.ଆଇ. ହେଲେ । ମୋର ଜଣେ ସ୍କୁଲ ସହକର୍ମୀ ପ୍ରିୟ ବନ୍ଧୁ ଶ୍ରୀ ସୁଧାକର ଦାଶଙ୍କୁ ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ବଦଳି କରାଯାଇଥିଲା । ମୋ ଅନୁରୋଧରେ ଗଦାଧର ବାବୁ ତାଙ୍କର ବଦଳି ବାତିଲ କରିଥିଲେ । ବ୍ୟୁରୋର ସେକ୍ରେଟାରି ଥିଲେ ଶ୍ରୀ ନୀଳକଣ୍ଠ ପଟ୍ଟନାୟକ । ସେ ମୋର ସମସ୍ତ ଅଫିସ୍ କାମ ପ୍ରସ୍ତୁତିରେ ସାହାଯ୍ୟ କରିଥିଲେ ।

ବିଭିନ୍ନ କଲେଜରୁ ବିଭିନ୍ନ ବିଷୟର କେତେଜଣ ଅଧ୍ୟାପକଙ୍କୁ ବ୍ୟୁରୋରେ ଲେଖକ ଭାବେ ନିଯୁକ୍ତି ଦିଆଯାଇଥିଲା । ସେମାନେ ବିଜ୍ଞାନ, ବାଣିଜ୍ୟ, କଳା, ସମସ୍ତ ବିଷୟରେ ଓଡ଼ିଆରେ ପୁସ୍ତକମାନ ରଚନା କରୁଥିଲେ, ଅନୁବାଦ ମଧ୍ୟ କରୁଥିଲେ । କାରଣ, ଭାରତରେ ସମସ୍ତ ପ୍ରକାର ଉଚ୍ଚଶିକ୍ଷା ତଥା ବୈଷୟିକ ଶିକ୍ଷା ଭାରତୀୟ ଭାଷାମାନଙ୍କରେ ଦିଆଯିବ ବୋଲି ରାଷ୍ଟ୍ରୀୟ ନୀତି ଗ୍ରହଣ କରାଯାଇଥିଲା । ତେଣୁ ଆମ ଓଡ଼ିଶାରେ ଓଡ଼ିଆ ଭାଷାରେ ପଢ଼ାହେବା ପାଇଁ ବହୁ ପାଠ୍ୟପୁସ୍ତକ ପ୍ରଣୟନ କରାଯାଇ ପ୍ରକାଶ କରାଯାଉଥିଲା । ୧୯୫୦ରୁ ୧୯୬୫ ମଧ୍ୟରେ ସବୁ କ୍ଷେତ୍ରରେ ଇଂରାଜୀ ପରିବର୍ତ୍ତେ ଭାରତୀୟ ଭାଷାଗୁଡ଼ିକର ବ୍ୟବହାର ହେବ ବୋଲି ସଂବିଧାନରେ ମଧ୍ୟ ଲେଖା ହୋଇଥିଲା । କିନ୍ତୁ ଦେଶର କେତେକ ଅବିବେକୀ ନେତା, ଯେଉଁମାନଙ୍କର କି ଜନସାଧାରଣଙ୍କୁ ଜ୍ଞାନବିଜ୍ଞାନ ରାଜ୍ୟରେ ପ୍ରବେଶ କରିବାର ସୁଯୋଗ ଦେବାକୁ ଇଚ୍ଛା ନ ଥିଲା, ସେମାନେ ଏ ଦିଗରେ ପ୍ରତିବନ୍ଧକ ସାଜିଲେ । ଫଳରେ ଭାରତୀୟ ଭାଷାମାନଙ୍କରେ ଲିଖିତ ପୁସ୍ତକମାନ ଅବ୍ୟବହୃତ ହେବାରେ ଲାଗିଲା । ଓଡ଼ିଶାରେ ମଧ୍ୟ ସେହି ଅବସ୍ଥା ହେଲା । ଟେକ୍‌ଷ୍ଟ ବୁକ୍ ବ୍ୟୁରୋ କୀଟଦଂଷ୍ଟ କଳିକାଟି ପରି ରୁଗ୍‌ଣ ହୋଇପଡ଼ିଲା ।

ବ୍ୟୁରୋରେ ମୁଁ ଡକ୍‌ଟର ବସନ୍ତ କୁମାର ବଳ, ଡକ୍‌ଟର ସତ୍ୟନାରାୟଣ ରଥ, ପ୍ରଫେସର ହୃଦାନନ୍ଦ ରାୟ, ପ୍ରଫେସର ଗୋଲୋକ ବିହାରୀ ଧଳ, ଡକ୍‌ଟରେ ଗୋକୁଳାନନ୍ଦ ମହାପାତ୍ର, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ଡକ୍ଟର ଶ୍ରୀନିବାସ ମିଶ୍ର, ଡକ୍‌ଟର ଶରତ ଚନ୍ଦ୍ର

ପ୍ରଧାନ, ଡକ୍ଟର ଯତୀନ୍ଦ୍ରମୋହନ ମହାନ୍ତି, ଡକ୍ଟର ଚନ୍ଦ୍ରଶେଖର ଷଡ଼ଙ୍ଗୀ, ଡକ୍ଟର ବିଷ୍ଣୁଚରଣ ଜେନା, ଡକ୍ଟର ବିଜୟ କୁମାର ବଳ ପ୍ରମୁଖ ବିଶିଷ୍ଟ ବିଦ୍ୱାନମାନଙ୍କ ସଂପର୍କରେ ଆସିଥିଲି । ଆଉ କେତେକଙ୍କ ନାମ ମୁଁ ପୂର୍ବରୁ ଉଲ୍ଲେଖ କରିଛି । ବିଦ୍ୱାନମାନଙ୍କ ସଙ୍ଗରେ କାମ କରିବାର ଅପୂର୍ବ ଆନନ୍ଦ ମୁଁ ଲାଭ କରିଥିଲି ।

ପ୍ରଫେସର ଗୋଲୋକ ବିହାରୀ ଧଳଙ୍କର ଅକାଳ ମୃତ୍ୟୁ ପରେ ରେଭେନ୍‌ସା କଲେଜରେ ଭାଷାତତ୍ତ୍ୱ ପଢ଼ାଇବା ପାଇଁ ମୋତେ ପୁଣି ବ୍ୟୁରୋରୁ ରେଭେନ୍‌ସାକୁ ବଦଳି କରା ହେଲା । ଏହି ଦ୍ୱିତୀୟ ଥର ରେଭେନ୍‌ସା କଲେଜରେ ମୋର ଅନେକ ପ୍ରିୟ ସହକର୍ମୀ ଥିଲେ - ଡକ୍ଟର ଦାଶରଥି ଦାସ, ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ, ଡକ୍ଟର କ୍ଷେତ୍ରବାସୀ ନାୟକ, ଡକ୍ଟର କୃଷ୍ଣଚରଣ ବେହେରା, ଡକ୍‌ଟର ପ୍ରେମାନନ୍ଦ ସାହୁ, ଡକ୍ଟର ନିଶାମଣି ମିଶ୍ର, ପ୍ରଫେସର ପଞ୍ଚାନନ ପତି, ଡକ୍ଟର ହରିହର ପଣ୍ଡା, ଡକ୍ଟର ରତ୍ନାକର ସାହୁ, ଡକ୍ଟର ଅସିତ୍ କୁମାର କବି ପ୍ରମୁଖ । ଅନ୍ୟାନ୍ୟ ବିଭାଗର ଅଧ୍ୟାପକମାନେ - ପ୍ରଫେସର ତତ୍ତ୍ୱକନ୍ଦର ମିଶ୍ର, ପ୍ରଫେସର ବନବିହାରୀ ଚୌଧୁରୀ, ଡକ୍ଟର ମଦନ ମୋହନ ନନ୍ଦ, ଡକ୍ଟର ଉମାକାନ୍ତ ମହାପାତ୍ର, ଡକ୍ଟର ଶିବନାଥ ମିଶ୍ର, ଡକ୍ଟର ଘନଶ୍ୟାମ ସାମଲ, ଡକ୍‌ଟର ଦୋଳଗୋବିନ୍ଦ ପଣ୍ଡା ପ୍ରମୁଖ ମଧ୍ୟ ମୋ ସମୟର ସହକର୍ମୀ ଥିଲେ । ନିଶାମଣି ବାବୁଙ୍କର ପତ୍ନୀ ଅଧ୍ୟାପିକା ଆଶାଲତା ଓ ଅଧ୍ୟାପକ ହରିହର ପଣ୍ଡା ମୋ ତତ୍ତ୍ୱାବଧାନରେ ଗବେଷଣା କରି ଡକ୍‌ଟରେଟ୍ (ପିଏଚ୍.ଡି) ଡିଗ୍ରୀ ପାଇଥିଲେ । ଆଗରୁ ପାଞ୍ଚଜଣ ଗବେଷକ ମଧ୍ୟ ପାଇଥିଲେ । ପରେ ମୋ ତତ୍ତ୍ୱାବଧାନରେ ଗବେଷଣା କରି ଡକ୍ଟରେଟ୍ ଲାଭ କରିଥିବା ଗବେଷକମାନଙ୍କ ମଧ୍ୟରେ ଶ୍ରୀମାନ୍ ଗୋବିନ୍ଦଚନ୍ଦ୍ର ଚାନ୍ଦ ସର୍ବକନିଷ୍ଠ । ଗୋବିନ୍ଦ ଜଣେ ଧୀମାନ୍, ଧୀରସ୍ଥିର, କଷ୍ଟସହିଷ୍ଣୁ ପିଲା । ସେ ଓଡ଼ିଆ ଭାଷା ସାହିତ୍ୟରେ ନେଟ୍ ମଧ୍ୟ ପାଶ୍ କରିଛନ୍ତି ।

ଡକ୍ଟର ଦୋଳଗୋବିନ୍ଦ ଶାସ୍ତ୍ରୀ ପୂର୍ବଥର ମୋର ସହକର୍ମୀ ଥିଲେ । ସେ ରେଭେନ୍‌ସା ସାଂଧ୍ୟ କଲେଜରେ ଥିଲାବେଳେ ମୁଁ ରେଭେନ୍‌ସା କଲେଜରେ ଥିଲି ଏବଂ ସାଂଧ୍ୟ କଲେଜରେ ସ୍ୱତନ୍ତ୍ର ପାରିଶ୍ରମିକ ପାଇ ସଂସ୍କୃତ ଓ ଓଡ଼ିଆ ପଢ଼ାଉଥିଲି, ସେଠାରେ ଆବଶ୍ୟକ ସଂଖ୍ୟକ ଅଧ୍ୟାପକ ନ ଥିଲେ ବୋଲି । ଶାସ୍ତ୍ରୀ ବାବୁଙ୍କର ମୋ ପ୍ରତି ଅସୀମ ଶ୍ରଦ୍ଧା ଥିଲା । ଡକ୍‌ଟର ଶ୍ରୀନିବାସ ମିଶ୍ର ମୋର ପରମହିତୈଷୀ ବଂଧୁ । ତାଙ୍କ ଦୁଇ ଭାଇ ରାଜକିଶୋର (ଆଇ.ଏ.ଏସ୍.) ଓ ଅଧ୍ୟାପକ ନବକିଶୋର ମଧ୍ୟ ମୋର ଶ୍ରଦ୍ଧେୟ ହିତୈଷୀ । ମୁଁ ରେଭେନ୍‌ସା କଲେଜରେ ଦୁଇଥରରେ ବାର ବର୍ଷରୁ ଉର୍ଦ୍ଧ୍ୱକାଳ ଅଧ୍ୟାପନା କରିଥିଲି । ସେହି ଦୀର୍ଘକାଳ ଭିତରେ ଅନେକ ଛାତ୍ରଛାତ୍ରୀ ଓଡ଼ିଆ ଏମ୍.ଏ. ପାଶ୍ କରି

ଯାଇଛନ୍ତି ଏବଂ ବିଭିନ୍ନ କଲେଜରେ ଅଧ୍ୟାପକ / ଅଧ୍ୟାପିକା ହୋଇଛନ୍ତି । ଡକ୍‌ଟର ବୈଷ୍ଣବ ଚରଣ ସାମଲ, ଡକ୍ଟର ନୀଳାଦ୍ରିଭୂଷଣ ହରିଚନ୍ଦନ, ଶ୍ରୀ ଗିରିଜା କୁମାର ବଳୀୟାରସିଂହ, ଶ୍ରୀ ଅସିତ୍ କୁମାର ମହାନ୍ତି, ଡକ୍ଟର ଅର୍ଚ୍ଚନା ନାୟକ, ଡକ୍ଟର ଶକୁନ୍ତଳା ବଳୀୟାରସିଂହ, ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ, ଡକ୍ଟର କୈଳାସ ଚନ୍ଦ୍ର ପଟ୍ଟନାୟକ, ଡକ୍ଟର ବୀଣାପାଣି ସିଂହ, ଡକ୍ଟର ବିଜୟିନୀ ସିଂହଦେଓ, ଡକ୍ଟର ସୁଲୋଚନା ଦାସ, ଡକ୍ଟର ଆଦିକନ୍ଦ ସାହୁ, ଡକ୍ଟର ବିଜୟ କୁମାର ମହାନ୍ତି, ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଡକ୍ଟର କାଳିନ୍ଦୀ ଚରଣ ମହାପାତ୍ର, ଡକ୍ଟର ଗୋବିନ୍ଦ ଚନ୍ଦ୍ର ଭୂୟାଁ, ଡକ୍ଟର ସୁଧାଂଶୁ କୁମାର ତ୍ରିପାଠୀ ପ୍ରମୁଖ ମୋ ସମୟରେ ପଢୁଥିଲେ । ଏମାନେ ସାହିତ୍ୟ କ୍ଷେତ୍ରରେ ସୁନାମ ଅର୍ଜନ କରିଛନ୍ତି ।

ଦ୍ୱିତୀୟ ଥର ରେଭେନ୍‌ସାକୁ ଆସିବା ପାଇଁ ମୁଁ ଯେତେବେଳେ ସପରିବାର ଭୁବନେଶ୍ୱର ଶହୀଦନଗର ଛାଡ଼ିଲି, ସେହି ସୁନ୍ଦର ସ୍ଥାନକୁ ଓ ମୁକ୍ତ ପରିବେଶ ଆଡ଼କୁ ଚାହିଁ ସଜଳ ନୟନରେ କହିଥିଲି - "ନମୋନମଃ ଶହୀଦନଗର, କେବେ ସୌଭାଗ୍ୟ ଥିଲେ ପୁଣି ତୁମ କୋଳରେ ଆସି ରହିବି ।" କିନ୍ତୁ ବହୁ ବର୍ଷ ପରେ ଯେବେ ଥରେ ଶହୀଦନଗର ଯାଇଥିଲି, ଆଉ ସେ ପୂର୍ବର ଆନନ୍ଦ ପାଇ ନ ଥିଲି । ପର ଥର ଦେଖିଥିଲି କେବଳ ଖୁନ୍ଦାଖୁନ୍ଦି ଅଟ୍ଟାଳିକାମାନ, ଅଗଣିତ ଗାଡ଼ି ଓ ମଣିଷ ପରିପୂର୍ଣ୍ଣ କଂକ୍ରିଟ୍ ଜଙ୍ଗଲ ।

•••

# ମୋ ପ୍ରାଣର ପ୍ରାଣ : କଟକ ସିଟି କଲେଜ

ମୁଁ ରେଭେନ୍‌ସା କଲେଜ୍‌ରୁ ସ୍ୱଇଚ୍ଛାରେ ଅବସର ନେଇଥାଏଁ । ବଡ ଭାଇଙ୍କ ପୁଅ ସତ୍ୟବ୍ରତ ପକାଇଥିବା ପ୍ରେସ୍‌ଟିରେ ସାହାଯ୍ୟ କରୁଥାଏଁ । ତା' ସହିତ କାଳିଦାସ ଗ୍ରଂଥାବଳୀପାଇଁ ଅନୁବାଦ ମଧ କରୁଥାଏ । ଦିନେ ଦୁଇଜଣ ଭଦ୍ରବ୍ୟକ୍ତି ମୋ ଘରେ ପହଂଚିଲେ । ଦୁଇଜଣ ଆଡଭୋକେଟ୍ । ରାଜାବଗିଚାରେ ନୂଆ ଆରମ୍ଭ ହୋଇଥିବା କଲେଜର ପରିଚାଳନା ସମିତିର ଜଣେ ସେକ୍ରେଟେରି ଏବଂ ଅନ୍ୟ ଜଣେ ସଭ୍ୟ ଥିଲେ । ଦୁହେଁ ମୋତେ ଉକ୍ତ କଲେଜର ଅଧକ୍ଷ ଦାୟିତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲେ । ମୁଁ ଉକ୍ତ କଲେଜ ବିଷୟରେ କିଛି ଜାଣିନ ଥାଏଁ, ଏପରିକି ରାଜାବଗିଚାରେ ଗୋଟିଏ କଲେଜ ଆରମ୍ଭ ହୋଇଛି ବୋଲି ମଧ ଜାଣିନଥାଏ ।

ସେତେବେଳକୁ ମୋର ଏକମାତ୍ର ବଡଭାଇ (ଘନଶ୍ୟାମ ମହାପାତ୍ର) ପରଲୋକକୁ ଯାଇସାରିଥାଆନ୍ତି । ସେ କ୍ୟାନ୍‌ସରରେ ଆକ୍ରାନ୍ତ ହୋଇ ମୋ ପାଖରେ ଦେଢବର୍ଷ ରହିଥିଲେ । ମୁଁ ବହୁଅର୍ଥ ବ୍ୟୟ କରି ବହୁ ପ୍ରକାର ଚିକିତ୍‌ସା କରାଇଥିଲି, କିଂତୁ ସବୁ ବିଫଳ ହୋଇଥିଲା । ମୋ ବୋଉ ପାରାଲିସିସ୍‌ରେ ଅଚଳ ହୋଇ ପଡିଥାଏ । ସବୁ ଦୁଃଖକଷ୍ଟ ଓ ଜଂଜାଳ ଭିତରେ ମଧ ମୁଁ ପ୍ରେସ୍‌କାମ ବୁଝୁଥାଏ, ପ୍ରୁଫ ଦେଖୁଥାଏ ଓ କିଛି ଅନୁବାଦ କାର୍ଯ୍ୟ ମଧ୍ୟ କରୁଥାଏ । ଭଦ୍ରବ୍ୟକ୍ତି ଦୁହିଁଙ୍କର ଅନୁରୋଧ ଶୁଣି, କଟକରେ ଗୋଟିଏ କଲେଜ ଗଢିବାର ଆବେଗ ଅନୁଭବ କରି ସେମାନଂକର ଅନୁରୋଧ ଗ୍ରହଣ କଲି । ସେକ୍ରେଟେରି ମୋତେ ସଂଗେ ସଂଗେ ନିଯୁକ୍ତିପତ୍ର ଲେଖିଦେଲେ ।

ତା ପରଦିନ ରାଜାବଗିଚ୍ଚ କଟକ ସିଟି କଲେଜର ଅଧ୍ୟକ୍ଷ ଭାବେ ଯୋଗ ଦେବାକୁ ଗଲି । ଦେଖିଲି, କାଠଯୋଡୀ ନଈକୂଳରେ ମ୍ୟୁନିସିପାଲିଟି ହାଇସ୍କୁଲ । ହାଇସ୍କୁଲର ଯୋଡିଏ ପରିତ୍ୟକ୍ତ ଆଜବେଷ୍ଟସ ଘରକୁ କଲେଜ କୁହାଯାଉଥାଏ । ଫଟା କାଂଥ, ଫୁଟା ଛାତ । ପାଖରେ ହାଇସ୍କୁଲର ଗୋଟିଏ ଛୋଟ ପରିତ୍ୟକ୍ତ କ୍ୱାର୍ଟରକୁ ଅଫିସ୍ କରାଯାଇଥାଏ । ଦୁଇ ଆଜବେଷ୍ଟସ୍ ଘରେ ପଚିଶି ତିରିଶିଟି ପିଲା ବସିଥାଆନ୍ତି । ସ୍କୁଲପଡିଆକୁ ଲାଗି ଗୋଟିଏ ବଡ ପୋଖରୀ । ପଙ୍କ ଓ ଦଳରେ ପରିପୂର୍ଣ୍ଣ । ପୋଖରୀ ଉତ୍ତରପଟେ ମ୍ୟୁନିସିପାଲିଟି ନର୍ଦ୍ଦମା । ପୋଖରୀକୁ କୁହାଯାଉଥାଏ କଲେଜ ଜାଗା । ପଚରାପଚରି କରି ଜାଣିଲି ତିନି ଚାରି ବର୍ଷ ତଳୁ କଲେଜଟି ଆରମ୍ଭ ହୋଇଥିଲା । ଗୋଟାଏ ଗଭର୍ଣ୍ଣିଂ ବଡି ପରେ ଗଣ୍ଡଗୋଳଘଟି ଆଉ ଗୋଟେ ଗଭର୍ଣ୍ଣିଂ ବଡି ହୋଇଥିଲା । ଦୁଇଜଣ ପ୍ରିନ୍‌ସିପାଲ ନିଯୁକ୍ତ ହୋଇ ଚାଲିଯାଇଥିଲେ । ଶୁଣିଲି ଭାରି ଖତରନାକ ଜାଗା । ସଂଧ୍ୟାବେଳେ ଅସାମାଜିକ ଲୋକଂକର ଆଡ୍‌ଡା । ଏସବୁ କଥା ମୁଁ ଆଗରୁ ଜାଣିନଥିଲି । ଜାଣିଲାପରେ ଛାଡିଦେବାକୁ ଭାବିଲି । ପୁଣି ଭାବିଲି, ଗ୍ରହଣ ତ କରିସାରିଲିଣି । ଯାହା ହେବାର ହେବ ।

ପ୍ରତିଦିନ ମୁଁ ମୋର କଲ୍ୟାଣୀନଗର ଘରୁ କଲେଜକୁ ସାଇକେଲରେ ଯିବା ଆସିବା କଲି । ଅଧ୍ୟାପକ ଅଧ୍ୟାପିକା ସାତ ଆଠ ଜଣ ଥାଆନ୍ତି । ଦରମା ମାସକୁ ତିନିଶହ ମାତ୍ର ଟଂକା । ସେତକ ମଧ୍ୟ ସାତ ଆଠମାସ ହେଲା ପାଇନଥାନ୍ତି । ତଥାପି ମୁଁ ଦାୟିତ୍ୱ ନେଲା ପରେ ସେମାନେ ନିୟମିତ ଭାବେ କଲେଜକୁ ଆସିଲେ ଏବଂ ନିୟମିତ ଭାବରେ ପାଠ ପଢାଇଲେ । ପିଲାମାନଂକୁ ପାଠ ଲେଖାଇ ଖାତା ଦେଖି ପରାମର୍ଶ ଦେଲେ । ସେମାନେ ଥିଲେ ମୋର ପୁତ୍ରକନ୍ୟା ଭଳି । ସମସ୍ତେ ପଢାଇବାରେ ମନ ଲଗାଇଦେଲେ । କ୍ରମେ ସିଟି କଲେଜରେ ଭଲ ପଢା ହେଲାଣି ଏବଂ ଶୃଂଖଳା ଆସିଲାଣି ବୋଲି ଜନସାଧାରଣରେ ଧାରଣା ସୃଷ୍ଟି ହୋଇଗଲା । ଅନେକ ଛାତ୍ରଛାତ୍ରୀ ନାମ ଲେଖାଇବାକୁ ଆସିଲେ । ଆଗରୁ ଆଦୌ ଛାତ୍ରୀ ନାମ ଲେଖାଉନଥିଲେ, କ୍ରମେ ଛାତ୍ରୀମାନେ ମଧ୍ୟ ନାମ ଲେଖାଇଲେ । ଦୁଇତିନି ବର୍ଷ ମଧ୍ୟରେ ଛାତ୍ରଛାତ୍ରୀଂକ ନାମ ଲେଖା ସମୟର ଟଂକା ସଂଚିତ ହୋଇ କଲେଜର କିଛି ଅର୍ଥ ଜମା ହୋଇଗଲା । ନାମ ଲେଖା ସମୟରେ ଚାରି ପାଂଚଶହ କରି ଟଂକା ଡୋନେସନ ନିଆଯାଉଥିଲା । ଗଭର୍ଣ୍ଣିଂ ବଡିର ଜଣେ ସଭ୍ୟ ସେହି ଅର୍ଥରେ ପୋଖରୀର ପୂର୍ବପଟ ହୁଡାରେ କୋଠାଘରଟିଏ ତୋଳାଇଲେ ।

କ୍ରମେ ଏତେ ପିଲା ଆଗ୍ରହୀ ହୋଇ ନାମ ଲେଖାଇବାକୁ ଆବେଦନ କଲେ ଯେ +୨ ଶ୍ରେଣୀର ସେକ୍‌ସନ ଖୋଲାଗଲା । ମୁଁ ଶୃଂଖଳା ରକ୍ଷା କରିବା ଉଦ୍ଦେଶ୍ୟରେ ନିଜକୁ କ୍ରୋଧୀ ସ୍ୱଭାବର ଲୋକ ବୋଲି ଛଳନା କରୁଥିଲି । ତେଣୁ ପିଲାମାନଂକ

ମନରେ ଧାରଣା ହେଉଥିଲା ଯେ ଧୋତିପିଂଧା ଅଧ୍ୟକ୍ଷ ଭାରି କଡା ଲୋକ । ଅଧ୍ୟାପକ ଅଧ୍ୟାପିକାମାନେ କ୍ଲାସ୍‌ରେ ପଢାଉଥିଲା ବେଳେ ମୁଁ ଚୁପ୍‌ଚାପ୍ ଯାଇ ପଛରେ ବସି, ଯେଉଁ ପିଲା ଅନ୍ୟମନସ୍କ ହେଉଥିବାର ବା କଥାବାର୍ତ୍ତା କରୁଥିବାର ଲକ୍ଷ୍ୟ କରୁଥିଲି, ସଂଗେ ସଂଗେ ଉଠିଯାଇ, ତା' କାନ ଧରି ଟାଣି ଆଣି ବାହାରେ ଛାଡି ଦେଉଥିଲି । ଏପରି କଲାବେଳେ ମୁଁ ତା' ପ୍ରତି କେତେ ଯେ ସ୍ନେହମମତା ପୋଷଣ କରୁଥିଲି, ତାହା ଭାଷାରେ ବ୍ୟକ୍ତ କରିପାରିବିନାହିଁ । ମୋର ଏଭଳି ବ୍ୟବହାରରେ କୌଣସି ପିଲା ପ୍ରତିକ୍ରିୟା ପ୍ରକାଶ କରିଥିବାର ମୁଁ ସ୍ମରଣ କରିପାରୁନାହିଁ ।

କଲେଜର ସଂଚୟ ପରିମାଣ ବଢିବାରେ ଲାଗିଲା । ମୁଁ ଟ୍ରକ୍ ଲଗାଇ କାଠଯୋଡୀରୁ ବାଲି ଅଣାଇ ପୋଖରୀକୁ କ୍ରମଶଃ ପୋତାଇଲି । +୨ ପରିଷଦ ପରୀକ୍ଷା ପାଇଁ କଲେଜର ବହୁତ ପରୀକ୍ଷାର୍ଥୀ ହେବାରୁ ପରୀକ୍ଷା ନିମନ୍ତେ ଆଉ ଗୋଟାଏ ବଡ ଘରର ଆବଶ୍ୟକତା ପଡିଲା । ସେତେବେଳେ କଲେଜ ପାଂଠିରେ ଟଂକା ନଥିଲା । ମୁଁ ବ୍ୟକ୍ତିଗତ ଭାବରେ ଦେଢଲକ୍ଷ ଟଂକାର ବ୍ୟାଙ୍କ ଋଣ ନେଇ ତିନିମାସ ମଧ୍ୟରେ ଏକ ମହଲା ଘର ଉପରେ ଦୋମହଲାଟିଏ କରାଇ ଦେଲି (ଝରକା, କବାଟ, ପଲସ୍ତରା ପ୍ରଭୃତି ଛାଡି) । ପିଲାମାନଂକର ପରୀକ୍ଷା ଦେବାକୁ ଜାଗା ହୋଇଗଲା । ପରବର୍ତ୍ତୀ ଜୁଲାଇ ମାସରେ ଆଡମିଶନ ବେଳକୁ ଯେଉଁ ଅର୍ଥ ମିଳିଲା, ସେଥିରୁ ଆଗେ ବ୍ୟାଙ୍କ୍ ଲୋନ୍ ଶୁଝିଦେଲି ।

କଲେଜଟି ଶୁକ୍ଳପକ୍ଷ ଚନ୍ଦ୍ର ପରି ବଢିଲା । ପରିଚାଳନା କମିଟି ବସୁଥିଲା, କିଂତୁ କେହି ମୋତେ କିଛି କହୁନଥିଲେ କିମ୍ବା ଅରାଜି ହେଉନଥିଲେ । କାରଣ ସେମାନେ ଥିଲେ ନିଜ ନିଜ ଧଂଦାରେ ବ୍ୟସ୍ତ । କଲେଜର ଅଗ୍ରଗତି ହେଉଛି ବୋଲି ସେମାନେ ଅନୁଭବ କରୁଥିଲେ । ଗଭର୍ଣ୍ଣିଂ ବଡିର ସଭାପତି ଥିଲେ ଆଡଭୋକେଟ୍ ଶ୍ରୀଯୁକ୍ତ ମାଧବାନନ୍ଦ ଦାସ । ସେ ମୋତେ ଖୁବ୍ ଉତ୍ସାହିତ କରୁଥିଲେ । ସେକ୍ରେଟାରି ଥିଲେ ଆଡଭୋକେଟ୍ ଶ୍ରୀ ହିତେନ୍ଦ୍ରନାଥ କାନୁନ୍‌ଗୋ । ସେ ମଧ୍ୟ ମୋ କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲେ ।

ପ୍ରଥମେ +୨ କଳା ଶ୍ରେଣୀ ମାତ୍ର ଥିଲା । କ୍ରମେ +୨ ବିଜ୍ଞାନ, +୨ବାଣିଜ୍ୟ, +୩ କଳା ଓ +୩ ବିଜ୍ଞାନ ଶ୍ରେଣୀ ଖୋଲାଗଲା । +୨ ବିଜ୍ଞାନ ଖୋଲାହେଲା ବେଳକୁ ସବୁ ବିଜ୍ଞାନ ବିଷୟ ପାଇଁ ଉନ୍ନତ ଲାବୋରେଟୋରି ପ୍ରତିଷ୍ଠା କରାଇଥିଲି । ରେଭେନ୍‌ସା କଲେଜର ଜଣେ ଅଭିଜ୍ଞ ଲୋକଂକ ସାହାଯ୍ୟ ନେଇ ଲାବୋରେଟୋରି ପ୍ରତିଷ୍ଠା କରାଇଥିଲି । ଉନ୍ନତ ଲାବୋରେଟୋରି ଯୋଗୁ ବହୁ ଅଭିଭାବକ ସେମାନଂକର ପିଲାଂକୁ

ସେଠାରେ ବିଜ୍ଞାନ ପଢାଇବାପାଇଁ ଆଗ୍ରହୀ ହେଲେ । ବିଜ୍ଞାନରେ ବହୁତ ପିଲା ନାମ ଲେଖାଇଲେ ।

ପ୍ରାୟ ୧୫ ଶହ ପର୍ଯ୍ୟନ୍ତ ଛାତ୍ରଛାତ୍ରୀ ହୋଇଗଲେ । କଲେଜର କାର୍ଯ୍ୟ ବଢିବାରେ ଲାଗିଲା । କଳା, ବାଣିଜ୍ୟ ଓ ବିଜ୍ଞାନ ଶିକ୍ଷା ଏକ ସମୟରେ ସଂଭବ ନ ହେବାରୁ କଲେଜକୁ ଦୁଇ ସିଫ୍‌ଟରେ ଚଳାଇବାକୁ ହେଲା । ପ୍ରଥମ ସିଫ୍‌ଟ ସକାଳ ୭ରୁ ଦିବା ଘ ୧୧.୩୦ ପର୍ଯ୍ୟନ୍ତ ଏବଂ ଦ୍ୱିତୀୟ ସିଫ୍‌ଟ ଘ ୧୧.୩୦ରୁ ଅପରାହ୍ନ ୫ଟା ପର୍ଯ୍ୟନ୍ତ । ଅନେକ ଦିନ ମୋତେ ସକାଳୁ ସଂଜ ପର୍ଯ୍ୟନ୍ତ କଲେଜରେ ରହିବାକୁ ପଡୁଥିଲା । ଘରୁ ମଗାଇ ନେଇ ଦ୍ୱିପହର ଖାଦ୍ୟ ଖାଉଥିଲି । +୨ ପରିଷଦର ଓ ବିଶ୍ୱବିଦ୍ୟାଳୟର ପରୀକ୍ଷାମାନ ଚଳାଇ କ୍ଲାନ୍ତ ହୋଇପଡୁଥିଲି । ତଥାପି କଟକ ସିଟି କଲେଜ ଥିଲା ମୋର ପ୍ରାଣର ପ୍ରାଣ । ଦିନେ କଲେଜକୁ ନଗଲେ ଏବଂ ପିଲାମାନଂକର ପାଠପଢା ତଥା ଗୃହନିର୍ମାଣ କାର୍ଯ୍ୟ ପ୍ରଭୃତି ତଦାରଖ ନ କଲେ ମୋତେ ସୁଖ ଲାଗୁ ନଥିଲା । ପୂର୍ବ ପଟର ଦ୍ୱିତୀୟ ମହଲା, ଉତ୍ତର ପଟର ପ୍ରଥମ ଓ ଦ୍ୱିତୀୟ ମହଲା ଏବଂ ଦକ୍ଷିଣ ପଟର ଅସ୍ଥାୟୀ ଟିଣ ଘର, ପୂର୍ବ ପଟରେ ରାଜାବଗିଚା ମୁଖ୍ୟ ରାସ୍ତା ପର୍ଯ୍ୟନ୍ତ ପାଚେରି, ପ୍ରଧାନ ଫାଟକ, କଲେଜ ଭିତରକୁ ମ୍ୟୁନିସିପାଲିଟି ପାଣି ପାଇପ୍ ଲାଇନ୍ ପ୍ରଭୃତି ମୁଁ କରାଇଥିଲି । ଅସ୍ଥାୟୀ ଟିଣଘରର ଟିଣସବୁ ସେ ସମୟର କ୍ଷୁଦ୍ରଶିଳ୍ପ ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଅଜିତ୍ କୁମାର ତ୍ରିପାଠୀଂକୁ ଅନୁରୋଧ କରି କମ୍ ମୂଲ୍ୟରେ ପାଇଥିଲି । ସେସମୟର କଟକ ଜଳଯୋଗାଣ ବିଭାଗର ନିର୍ବାହୀ ଯଂତ୍ରୀ ମୋର ଛାତ୍ର ଶ୍ରୀ ସରୋଜ କୁମାର ପଟ୍ଟନାୟକଂକୁ ଅନୁରୋଧ କରି ପାଇପ୍‌ଲାଇନ୍ ଅଣାଇଥିଲି । ନୂଆ କରି ଲାଇବ୍ରେରି କରାଇଥିଲି । ମୁଁ ନିଜେ ପ୍ରାୟ ୫୦୦ ସିରିକି ବହି ଲାଇବ୍ରେରିକୁ ଦେଇଥିଲି ।

କଲେଜର ସବୁ ଲୋକ ଥିଲେ ମୋର ଆତ୍ମୀୟସ୍ୱଜନ ଭଳି । ବେଳେ ବେଳେ କେମିତି କାହାକୁ ଟାଣ କରି କହିପକାଉଥିଲି, କିଂତୁ ପରେ ଭୁଲ୍ ମାଗି- ନେଉଥିଲି । ମୋ ଉପରେ କେହି ଯେ ବିରକ୍ତ ହେଉନଥିଲେ, ତା ନୁହେଁ, କିଂତୁ ମୋର ବୟସ ଯୋଗୁ ବିରକ୍ତିକୁ ପ୍ରକାଶ କରୁନଥିଲେ । ନୀହାରିକା ନାମରେ ଇତିହାସ -ଅଧ୍ୟାପିକା ଝିଅଟିଏ ଥିଲା ଖୁବ୍ ଧୀରସ୍ଥିର ଓ କର୍ତ୍ତବ୍ୟ ପରାୟଣା । ସେହି ଝିଅଟି ଅକାଳରେ ସ୍ୱର୍ଗକୁ ଚାଲିଗଲାଣି । ତାର ସ୍ୱାମୀ ଶ୍ରୀ ନାରାୟଣ ମହାନ୍ତି (ଦର୍ଶନ ଅଧ୍ୟାପକ) ତାଂକ ଗ୍ରାମରେ ନୀହାରିକାର ଗୋଟିଏ ପ୍ରତିମୂର୍ତ୍ତି ସ୍ଥାପନା କରିଛନ୍ତି (ମୁଁ କଲେଜ ଛାଡିବା ପରେ) । ପ୍ରତିମୂର୍ତ୍ତି ଉନ୍‌ମୋଚନ ବେଳକୁ ନାରାୟଣ ବାବୁ ମୋତେ ଡାକିଥିଲେ । ନୀହାରିକାକୁ ପ୍ରତିମୂର୍ତ୍ତି ଆକାରରେ,ଦେଖି ମୁଁ କାନ୍ଦି ପକାଇଲି । କଲେଜର ସ୍ନିଗ୍ଧା, ମଂଜୁଶ୍ରୀ, ଶୁଭ୍ରା,

ଚିତ୍ରା, ସଂଧ୍ୟା, ଲିଲିମା ଆଦି ସବୁ ଅଧ୍ୟାପିକା ଝିଅଂକୁ ମୁଁ ବହୁତ ଶ୍ରଦ୍ଧା କରୁଥିଲି । ନବ, ଦୁଷ୍ମନ୍ତ, ଅଶୋକ, ଜୟଦେବ ଆଦି ଅଧ୍ୟାପକ, ପ୍ରତାପ, ସ୍ୱାଗତ ଆଦି ଲାବୋରେଟୋରି ଆସିଷ୍ଟାଣ୍ଟ, ଶ୍ରୀଧର, ଜଳଧର, ଗୋକୁଳି, ନରିଆ ଆଦି ପିଅନ, ସମସ୍ତଂକୁ ମୁଁ ସ୍ୱଜନ ଦୃଷ୍ଟିରେ ଦେଖୁଥିଲି । କଲେଜ ପ୍ରତି ସମସ୍ତଂକର ଅବଦାନ ରହିଥିଲା । ସମସ୍ତେ ଥିଲେ ସିଟି କଲେଜର ପରିବାର ।

କଟକ ସିଟି କଲେଜ ଗଠନରେ ମୁଁ ପ୍ରାୟ ନଅ ବର୍ଷ ବିତାଇଥିଲି । ମୋତେ ଗୁଣ୍ଡାଙ୍କଠାରୁ କେତେଥର ଧମକ ଚମକ ଓ ଦୁର୍ବ୍ୟବହାର ଆଦି ସହିବାକୁ ପଡିଥିଲା । ମୁଁ ଯେତେବେଳେ ଅସ୍ତଗାମୀ ସୂର୍ଯ୍ୟ ହୋଇଗଲି, ଜଣେ ଗଭର୍ଣ୍ଣିଂ ବଡ଼ି ସଭ୍ୟ, ଜଣେ ଅଧ୍ୟାପିକାଂକୁ ବହିଷ୍କାର କରିବା ଦାବୀକରି ମୋତେ ଘୋର ଅପମାନିତ କରିଥିଲେ, ସବୁ ସହିନେଇଥିଲି । ଯେ କୌଣସି ପ୍ରକାରେ, ଯେତେ ପ୍ରତିକୂଳ ପରିସ୍ଥିତିରେ ମଧ୍ୟ ରାଜାବଗିଚାରେ କଲେଜଟିଏ ପ୍ରତିଷ୍ଠିତ ହେବା ଥିଲା ମୋର ଲକ୍ଷ୍ୟ । ଯାହା ହେଉ, ବିଧାତାଂକର ଇଚ୍ଛା ପୂର୍ଣ୍ଣ ହେଲା । ରାଜାବଗିଚାରେ ସବୁ ଦିନପାଇଁ ଗୋଟିଏ ପୂର୍ଣ୍ଣାଂଗ କଲେଜ ହୋଇଗଲା ।

୧୯୯୨ ସେପ୍ଟେମ୍ବର ମାସରେ ମୁଁ କଲେଜରୁ ବିଦାୟ ନେଇ ଆସିଲି । ସରକାର ଜଣେ ଅଧ୍ୟକ୍ଷଂକୁ ପଠାଇଲେ । ସେ ମୋଠାରୁ ଦାୟିତ୍ୱ ନେଲେ । ମୋର ଦୀର୍ଘ ପରିଶ୍ରମ ସଫଳ ହେଲା । ସେହି ସମୟ ଥିଲା ମୋ ପାଇଁ ମୂଲ୍ୟବାନ୍ ସମୟ । ମୋ ଦେହରେ ଶକ୍ତି, ସାହସ ଓ କାର୍ଯ୍ୟ କରିବାର ପ୍ରବଳ ଇଚ୍ଛା ଥିଲା । ସେହି ସମୟକୁ ମୁଁ ପ୍ରେସ୍ କାମ, ସାହିତ୍ୟ ସାଧନା ବା ରାଜନୀତିରେ ଲାଗାଇଥିଲେ ଯଥେଷ୍ଟ ଧନ ଓ ସମ୍ମାନର ଅଧିକାରୀ ହୋଇପାରିଥାନ୍ତି । କିଂତୁ ବିଧାତାର ଇଚ୍ଛା ଭିନ୍ନ । ମୋର ସେହି ମୂଲ୍ୟବାନ ବର୍ଷଗୁଡିକ କଟକ ସିଟି କଲେଜ ଗଠନରେ ଲାଗିଗଲା । ତା'ପୂର୍ବରୁ ମୁଁ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଛଅ ବର୍ଷ, ସେକଣ୍ଡାରି ଟ୍ରେନିଂ ସ୍କୁଲରେ ଚାରିବର୍ଷ ଓ ରେଭେନ୍‌ସା କଲେଜରେ ଏଗାର ବର୍ଷ କଟକରେ ଚାକିରି କରିଥିଲି । ବର୍ତ୍ତମାନ କଟକର ବାସିନ୍ଦା ହୋଇ ରହିଅଛି । ତେଣୁ କଟକ ପ୍ରତି ମୋର ଗଭୀର କୃତଜ୍ଞତା ଅର୍ପଣ କରିପାରିଥିବାରୁ ମୁଁ ଆତ୍ମସଂତୋଷ ଅନୁଭବ କରୁଅଛି ଏବଂ ନିଜକୁ ଧନ୍ୟ ମନେ କରୁଅଛି । ତା' ଛଡା, ସେହି ନଅ ବର୍ଷ ଭିତରେ ମୁଁ କଲେଜରୁ ଯାହା କିଛି ପାଇଥିଲି, ତାହା ସମସ୍ତ ମୋ ଗାଁର କମଳା ମଡେଲ ଗାର୍ଲସ୍ ହାଇସ୍କୁଲକୁ ଦେଇଥିଲି । ଏହା ମଧ୍ୟ ମୋ ଜୀବନରେ ପରମ ଆନନ୍ଦ ହୋଇ ରହଛି ।



# ଦଣ୍ଡେ ମୁହୂର୍ତ୍ତେ ଥିଲେ ପ୍ରାଣ

। ୧ ।

ମୁଁ କଟକ ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ ଶିକ୍ଷକ ଥିବା ସମୟରେ ଓଡ଼ିଶାରେ ଏକ ସାଧାରଣ ନିର୍ବାଚନ ପଡ଼ିଥିଲା । ବିଧାନସଭା ପାଇଁ ଓ ଲୋକସଭା ପାଇଁ ଏକ ସମୟରେ ନିର୍ବାଚନ କରାଯାଉଥିଲା । ସେ ସମୟରେ ଲୋକ ସଭା ନିର୍ବାଚନ ବିଷୟରେ କେହି ମୁଣ୍ଡ ଖେଳାଉ ନଥିଲେ । ବିଧାନସଭା ନିର୍ବାଚନ ପାଇଁ ଲୋକେ ଯାହା କିଛି ମୁଣ୍ଡ ଖେଳାଉଥିଲେ । ଏପରିକି ଲୋକସଭା ନିର୍ବାଚନ ପାଇଁ କିଏ ପ୍ରାର୍ଥୀ ହୋଇଛନ୍ତି, ଲୋକେ ଜାଣିବାକୁ ଋହୁଁ ନ ଥିଲେ । ନିର୍ବାଚନରେ ମୋତେ ୭୦/୮୦ କିଲୋମିଟର ଦୂରରେ ଗୋଟିଏ ଗ୍ରାମର ଭୋଟଗ୍ରହଣ କେନ୍ଦ୍ରକୁ ପଠାହୋଇଥିଲା । ମୁଁ ଓ ମୋର ପାଞ୍ଚଜଣ ନିର୍ବାଚନ ସହକର୍ମୀ କଟକ କଲେକ୍ଟୋରିଏଟ୍‌ରୁ ଗୋଟିଏ ଟ୍ରକ୍‌ରେ ଭୋଟ୍ ସାମଗ୍ରୀସବୁ ଗ୍ରହଣ କରି ବାହାରିଲୁ । ସେତେବେଳେ ଜଗତସିଂହପୁର ଅବିଭକ୍ତ କଟକ ଜିଲ୍ଲାରେ ଥିଲା । ପାଞ୍ଚଜଣ ନିର୍ବାଚନ ସହକର୍ମୀଙ୍କ ମଧ୍ୟରେ ଜଣେ ଥିଲେ ପୁଲିସ୍ କନେଷ୍ଟବଳ । ସେ ସମୟରେ ନିର୍ବାଚନରେ ଲେଶମାତ୍ର ଭୟ ବା ଗଣ୍ଡଗୋଳର ଆଶଙ୍କା ନଥିଲା । କେବଳ ନାମକୁ ମାତ୍ର ଜଣେ ପୁଲିସ୍ କନେଷ୍ଟବଳ ସାଙ୍ଗରେ ଯାଉଥିଲେ ଏବଂ ଭୋଟଗ୍ରହଣ କେନ୍ଦ୍ରରେ ଆନନ୍ଦରେ ବସୁଥିଲେ ଏବଂ ଢୁଳାଉଥିଲେ ମଧ୍ୟ । ବିଧାନସଭା ଓ ଲୋକସଭା ପାଇଁ ଦୁଇଟି ଭୋଟବାକ୍ସ ଅଲଗା ଅଲଗା ରଖାଯାଉଥିଲା । ଲୋକସଭା ନିର୍ବାଚନର ଆଦୌ ଗୁରୁତ୍ୱ ନ ଥିଲା କହିଲେ ଚଳେ ।

ନିର୍ବାଚନ ତାରିଖ ପୂର୍ବ ଦିନ ଆମେ ଯାଇ ପ୍ରାୟ ଅପରାହ୍ଣ ୫ଟା ବେଳକୁ

ଭୋଟଗ୍ରହଣ କେନ୍ଦ୍ରରେ ପହଞ୍ଚିଲୁ । ଗ୍ରାମଟିର ନାମ ମୁଁ ଭୁଲିଗଲିଣି । ଦେବୀ ନଈର ଏପଟ କୂଳରେ ଆମକୁ ଟ୍ରକ୍ ରଖି ଡ଼ଂଗାରେ ନଦୀ ପାର ହେବାକୁ ପଡ଼ିଲା । ଆମେ କେନ୍ଦ୍ରଗୃହରେ ସରଂଜାମ ସବୁ ରଖିଦେଲୁ । ଗୋଟିଏ ପ୍ରାଇମେରୀ ସ୍କୁଲ ଗୃହ ଭୋଟଗ୍ରହଣ କେନ୍ଦ୍ର ହୋଇଥାଏ । ସହକର୍ମୀମାନେ ସ୍କୁଲ ପାଖ ପୋଖରୀରେ ଗୋଡ଼ହାତ ଧୂଆଧୋଇରେ ଲାଗିଗଲେ । ମୋତେ ଟିକିଏ ଝାଡ଼ାତଲବ ଲାଗିଲା । ବନ୍ଧୁମାନଙ୍କୁ କହିଲି - ଆପଣମାନେ ଜଳଖିଆ ବ୍ୟବସ୍ଥା କରୁଥାନ୍ତୁ, ମୁଁ ଟିକିଏ ନିତ୍ୟକର୍ମ ସାରି ଆସୁଛି ।

ପାଖରେ ଦେବୀ ନଈ ବନ୍ଧ । ଭାବିଲି, ବଂଧ ତଳକୁ ଝାଡ଼ା ଯିବି, ନଈରେ ଶୌଚ ହୋଇ ଆସିବି । ଖୋଲା ପରିବେଶ, ନିର୍ମଳ ପବନ । ସୂର୍ଯ୍ୟ ଦିଗ୍‌ବଳୟ ତଳକୁ ଲାଗିଆସୁଥାନ୍ତି । ଭାରି ଭଲ ଲାଗୁଥାଏ । ମୁଁ ଯାଇ ନଈବଂଧରେ ପହଞ୍ଚିଲି । ବନ୍ଧ ତଳେ ଝାଡ଼ା ବସିଲି । ବନ୍ଧର ଆର ପଟତଳକୁ ନଈ । ନଈ ପାଣିରେ ଶୌଚ ହେବାକୁ ଗଲି । ନଈର ଭିତର ଆଡ଼କୁ ମୁହଁ କରି ଶୌଚ ହେଉଛି, ଏହି ସମୟରେ ମୋତେ ଦେଖାଗଲା, ପାଣିଟା ଟିକିଏ ଚହଲି ଉଠୁଛି । ମୋର ଗ୍ରାମ ତ କନିକାରେ ଖରସୁଆ ନଈକୂଳରେ । କୁମ୍ଭୀର ଧାରଣାଟା ମୋର ପିଲାଦିନରୁ ଥିଲା । କାରଣ ଗୋରୁ ଗାଈ ଛେଳି ମେଣ୍ଢାଙ୍କୁ ଆମ ଗାଁ ପାଖ ନଈକୂଳରୁ କୁମ୍ଭୀର ନେଇଯାଉଥିଲେ । କେତେଜଣ ମନୁଷ୍ୟ ମଧ୍ୟ କୁମ୍ଭୀର ଗ୍ରାସରେ ପଡୁଥିଲେ । ଉପଦ୍ରବ କରୁଥିବା କୁମ୍ଭୀରକୁ କନିକା ରାଜା ବା ଆଳି ରାଜା ମଟର ଲଞ୍ଚରେ ଆସି କୌଶଳରେ ମାରୁଥିଲେ । ପାଣି କିଛି ଦୂରରେ ଚହଲି ଉଠୁଥିବାର ଦେଖିପକାଇ ସହସା ମୋ ମନକୁ କୁମ୍ଭୀର ଧାରଣାଟା ଆସିଗଲା । ମୁଁ ଏକ ମୁହୂର୍ତ୍ତରେ ଉଠି ପଡ଼ି ବନ୍ଧ ଉପରକୁ ଦୌଡ଼ି ପଳାଇ ଆସିଲି । ବନ୍ଧ ଉପରୁ ପଛକୁ ଋହିଁ ଦିଏ ତ, ଗୋଟାଏ ପ୍ରକାଣ୍ଡ କୁମ୍ଭୀର ପାଣି ଅତିକ୍ରମ କରି ୧୦-୧୫ ହାତ କୂଳ ଉପରକୁ ଉଠିଆସିଛି । ସେ ମୋତେ ନିଶାଣ କରି ଦ୍ରୁତ ବେଗରେ ଆସୁଥିଲା । ଆଉ ମୁହୂର୍ତ୍ତେ ବିଳମ୍ବ ହୋଇଥିଲେ ସେ ମୋତେ ଧରି ନେଇଥାନ୍ତା । ମୁଁ ଜାଣିଥିଲି, କୁମ୍ଭୀର ସ୍ଥଳ ଉପରେ ମଧ୍ୟ ଗତି କରିପାରେ । ତେଣୁ ସଂପୂର୍ଣ୍ଣ ବନ୍ଧ ଉପରକୁ ଦୌଡ଼ି ଆସିଥିଲି । ବନ୍ଧ ଉପରେ ଠିଆ ହୋଇ ଦେଖିଲି କୁମ୍ଭୀରଟା ପାଣି ଭିତରକୁ ପଶିଗଲା । ମୋର ହୃତ୍‌ସ୍ପନ୍ଦନ ବଢିଗଲା । ଧଇଁସଇଁ ହୋଇ ବସିପଡ଼ିଲି । ମନେମନେ ଭାବିଲି ଭଗବାନ ମୋତେ ରକ୍ଷା କରିଦେଲେ ।

ଭୋଟ କେନ୍ଦ୍ରକୁ ଆସି ଅବସନ୍ନ ଭାବରେ ବସିପଡ଼ିଲି । ସହକର୍ମୀମାନେ ଶୁଣି ସ୍ତବ୍ଧ ହୋଇଗଲେ । କହିଲେ, ସାର୍, ଆପଣ ନିଶ୍ଚିତ ମୃତ୍ୟୁମୁଖରୁ ରକ୍ଷା ପାଇଗଲେ । ଗ୍ରାମବାସୀମାନେ କହିଲେ - ଆଜ୍ଞା, ସେଠି ଗଭୀର ଗଣ୍ଡ, କୁମ୍ଭୀର ଥାଆନ୍ତି । ଆପଣ

ସେଠିକି ଯାଉଥିଲେ କାହିଁକି ? କାହାକୁ ପଚାରି ଯାଇଥାନ୍ତେ ସିନା । ମୋର ସଂସ୍କୃତ ଶ୍ଳୋକଟିଏ ମନେ ପଡ଼ିଲା -

ନଦୀନାଂ ଚ ନଖିନାଂ ଚ ଶୃଙ୍ଗିଣାଂ ଶସ୍ତ୍ରପାଣୀନାମ୍ ।
ବିଶ୍ୱାସୋ ନୈବ କର୍ତ୍ତବ୍ୟଃ ସ୍ତ୍ରୀଷୁ ରାଜକୁଳେଷୁ ଚ ॥

ଅର୍ଥାତ୍ ନଦୀକୁ, ନଖଥିବା ପ୍ରାଣୀକୁ, ଶିଙ୍ଗଥିବା ପ୍ରାଣୀକୁ, ହାତରେ ଅସ୍ତ୍ରଶସ୍ତ୍ର ଧରିଥିବା ଲୋକକୁ, ସ୍ତ୍ରୀ ଲୋକଙ୍କୁ ଓ ରାଜକୁଳର ଲୋକଙ୍କୁ (ବର୍ତ୍ତମାନ ସରକାରୀ କର୍ମଚାରୀମାନଙ୍କୁ) ବିଶ୍ୱାସ କରିବା ଉଚିତ ନୁହେଁ । ଏହି ମହତ୍ତ୍ୱପୂର୍ଣ୍ଣ ବାଣୀଟିକୁ ମୁଁ ପଢିଥିଲି ସିନା, ହେଜି ନ ଥିଲି । ବର୍ତ୍ତମାନ ଭଲଭାବେ ହେଜି ପାରିଲି ।

। ୨ ।

ମୁଁ ରେଭେନ୍ସା କଲେଜରେ ଅଧ୍ୟାପକ ଥାଏ । ରହୁଥାଏ ପ୍ରଫେସର ପଡ଼ାରେ ଗୋଟିଏ ମାତ୍ର କୋଠରୀ ଭଡ଼ା ନେଇ । ସୁନ୍ଦରଗଡ଼ କଲେଜରୁ ପ୍ରାୟ ମାସେ ଦୁଇମାସ ହେଲା ବଦଳି ହୋଇ ଆସିଥାଏ । ପିଲା ପରିବାର ଗାଁରେ ଥାଆନ୍ତି । ମୁଁ ପ୍ରଫେସର ପଡ଼ାରୁ ରେଭେନ୍ସା କଲେଜକୁ ସାଇକେଲ୍‌ରେ ଯିବା ଆସିବା କରୁଥାଏ । ଆଗରୁ ସାଇକେଲ୍ ଶିଖି ନ ଥିଲି । ସୁନ୍ଦରଗଡ଼ କଲେଜ ଯଦିଓ ସୁନ୍ଦରଗଡ଼ ସହରଠାରୁ ୩ କିଲୋମିଟର ଦୂରରେ ଥିଲା, ମୁଁ କଲେଜ ପାଖରେ ରହୁଥିଲି ଏବଂ କଲେଜ ପାଖରୁ ଚାଲିଚାଲି ଯାଇ ସହରରୁ ଜିନିଷପତ୍ର କିଣୁଥିଲି ଏବଂ ତାହା ବ୍ୟାଗ୍‌ରେ ପୂରାଇ ପୁଣି ଚାଲିଚାଲି କଲେଜ ପାଖକୁ ଫେରୁଥିଲି । କଟକ ରେଭେନ୍ସା କଲେଜକୁ ଆସିବାପରେ ମୁଁ ରବିନ୍ ହୁଡ୍ ସାଇକେଲଟିଏ କିଣିଲି ଓ ଚଢିବା ଶିଖିଲି । ମୁଁ ଯେଉଁ ଘଟଣାଟି କହିବାକୁ ଯାଉଛି, ସେତେବେଳକୁ ମୋର ସାଇକେଲ ଅଭ୍ୟାସ ବିଶେଷ ଭଲ ହୋଇ ନ ଥିଲା ।

ସେତେବେଳେ ରାଣୀହାଟ ପୋଲ ପାଖରୁ କଲେଜ ଛକ ପର୍ଯ୍ୟନ୍ତ ରାସ୍ତା ପ୍ରଶସ୍ତ ନଥିଲା । ଦୁଇ ପାଖରେ ଘର ଓ ଦୋକାନ ବଜାର ହୋଇ ରାସ୍ତାକୁ ସଂକୀର୍ଣ୍ଣ କରିଦେଇଥିଲା । ଦିନକର କଥା । ମୁଁ ସାଇକେଲ୍‌ରେ ପ୍ରଫେସର ପଡ଼ାରୁ କେନାଲ କୂଳେ କୂଳେ ଯାଇ ହିନ୍ଦ୍ ସିନେମା ପାଖକୁ ଉଠିଲି । ରାସ୍ତାର ବାମ ପଟକୁ ଯାଇ କଲେଜ ଆଡ଼କୁ ସାଇକେଲ୍ ଚଳାଇଲି । ମନରେ ଆନନ୍ଦ ଉଲ୍ଲାସ ଖେଳୁଥାଏ । କାରଣ, ସେ ଦିନ ଏମ୍.ଏ. (ଓଡ଼ିଆ) ଦ୍ୱିତୀୟ ବର୍ଷ ଶ୍ରେଣୀରେ ମୋର ପ୍ରଥମ କରି କ୍ଲାସ୍ ନେବାର ଥାଏ । ପିଲାଦିନେ ମୋତେ ପ୍ରାଇମେରୀ ସ୍କୁଲର ଚତୁର୍ଥ ଶ୍ରେଣୀରୁ ପୋଥିରେ ଡୋରି ବାନ୍ଧିବାକୁ ପଡିଥିଲା । ମୁଁ କେବେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ଯେ ମୁଁ ଦିନେ ରେଭେନ୍ସା

କଲେଜରେ ପଢାଇବି, ପୁଣି ଏମ୍.ଏ. ଶ୍ରେଣୀରେ ପଢାଇବି । ତେଣୁ ଯେଉଁଦିନ ମୁଁ ରେଭେନ୍ସା କଲେଜରେ ଯୋଗ ଦେଲି ଏବଂ ନାମଜାଦା ପ୍ରଫେସରମାନଙ୍କ ମେଳରେ ବସିଲି, ସେଦିନ ମୋର ଆନନ୍ଦର ସୀମା ରହିନଥିଲା ।

ଓଡ଼ିଆ ଏମ୍.ଏ. ଦ୍ୱିତୀୟ ବର୍ଷ ଶ୍ରେଣୀରେ କ'ଣ ପଢାଇବି ଏବଂ କିପରି ଭାବରେ ପଢାଇବି, ତାହାର ଏକ ପରିକଳ୍ପନା ମନରେ କରୁଥାଏ, ତତ୍ ସଂଗେ ସଂଗେ ସାଇକେଲ୍ ଚଳାଉଥାଏ । ତେଣୁ ଅନ୍ୟମନସ୍କ ଥାଏ କହିଲେ ଭୁଲ୍ ହେବନାହିଁ । ଏହି ସମୟରେ ଗୋଟାଏ ଷଣ୍ଢ ବାମପଟରୁ ଗୋଟାଏ ଗାଈ ଆଡ଼କୁ ମାଡ଼ି ଆସିଲା । ଗାଈଟା ଏତେ ସହସା ମୋ ଆଡ଼କୁ ମାଡ଼ି ଆସିଲା ଯେ ମୁଁ କିଛି ଚିନ୍ତା କରି ନ ପାରି ରାସ୍ତାର ଭିତର ଆଡ଼କୁ ମାଡ଼ି ଗଲି ଏବଂ ସାଇକେଲ୍‌ର ଭାରସାମ୍ୟ ରକ୍ଷା କରି ନ ପାରି ସାଇକେଲ୍ ସହିତ ରାସ୍ତା ମଝିରେ ପଡ଼ିଗଲି । ଠିକ୍ ସେତିକିବେଳେ ପଛପଟୁ ଏକ କାର ଆସୁଥିଲା ଏବଂ ମୋର ଖୁବ୍ ନିକଟବର୍ତ୍ତୀ ହୋଇଯାଇଥିଲା । ଡ୍ରାଇଭର ହଠାତ୍ ଏତେ ଜୋର୍‌ରେ ବ୍ରେକ୍ ଦେଲା ଯେ ଗାଡ଼ିଟା ପ୍ରଚଣ୍ଡ ଶବ୍ଦ କରି ମୋ ମୁଣ୍ଡ ପାଖରୁ ଚାରି ଆଙ୍ଗୁଳି ମାତ୍ର ଥାଇ ଅଟକିଗଲା । ଗାଡ଼ିଟି ଅବଶ୍ୟ ଦ୍ରୁତ ଗତିରେ ଆସୁନଥିଲା, ତଥାପି ବ୍ରେକ୍ ଦେବାରେ ଆଉ ମୁହୂର୍ତ୍ତେ ମାତ୍ର ବିଳମ୍ବ ହୋଇଥିଲେ କିମ୍ବା ଆଉ ଟିକେ ମାତ୍ର କମ୍ ଜୋର୍‌ରେ ବ୍ରେକ୍ ଦେଇଥିଲେ ଗାଡ଼ି ଚକ ମୋ ମୁଣ୍ଡ ଉପରକୁ ମାଡ଼ିଯାଇଥାନ୍ତା ଏବଂ ମୁଣ୍ଡକୁ ଚୂନା କରିଦେଇ ଥାଆନ୍ତା । ସଂଗେ ସଂଗେ ବହୁ ଲୋକ ଜମା ହୋଇ ପଡ଼ିଲେ । ବହୁ ଲୋକ ବହୁ କଥା କହିଲେ, କିନ୍ତୁ ସମସ୍ତେ ଆଶ୍ୱସ୍ତି ପ୍ରକାଶ କଲେ ଯାହା ହେଉ ଲୋକଟି ବଂଚିଗଲା । କାର୍ ଡ୍ରାଇଭରର ଦକ୍ଷତାକୁ ମଧ୍ୟ ସମସ୍ତେ ପ୍ରଶଂସା କଲେ ।

ମୁଁ ସନ୍ତର୍ପଣରେ ତଥା ଭୀତଚକିତ ଭାବରେ ଉଠି ସାଇକେଲ ଉଠାଇ ଗଡ଼ାଇ ଗଡ଼ାଇ ରେଭେନ୍‌ସା କଲେଜ ଭିତରକୁ ପଶିଲି ଏବଂ ଆଗ କଲେଜ ଡ଼ାକ୍ତରଖାନାକୁ ଗଲି । ମୋ ଗୋଡ଼ହାତରେ ୩-୪ ଜାଗା ଛଞ୍ଚି ହୋଇଯାଇଥିଲା । ଡ଼ାକ୍ତର ସେଥିରେ ଔଷଧ ଲଗାଇଦେଲେ ଏବଂ ଆଣ୍ଟି ଟିଟାନସ୍ ଇଂଜେକ୍‌ସନ ଦେଲେ । ଏହି ସମୟରେ ପ୍ରଥମ ପିରିୟଡ଼ ବେଲ୍ ବାଜିଲା । ମୁଁ ଷ୍ଟାଫ୍ କମନ୍‌ରୁମ୍‌କୁ ଯାଇ ସେଠାରୁ ଉପସ୍ଥାନ ଖାତା ନେଇ ଦ୍ୱିତୀୟ ବାର୍ଷିକ ଏମ୍.ଏ. ଶ୍ରେଣୀକୁ ଗଲି ଏବଂ ପଢାଇଲି ।

। ୩ ।

ମୁଁ ଗାଁ ପ୍ରାଥମିକ ବିଦ୍ୟାଳୟରେ (U.P. School) ଚତୁର୍ଥ ଶ୍ରେଣୀଯାଏ ପଢି ପଢା ଛାଡିବାକୁ ବାଧ୍ୟ ହୋଇଥିଲି ଏବଂ ପେଟ ପୋଷିବାକୁ ବିଭିନ୍ନ ଧଂଦା ଧରୁଥିଲି । ମୋର ଧଂଦା ହୋଇଥିଲା ଗୋରୁ ଚରାଇବା ଓ ଘାସ କାଟିବା । ଦୁଇଟି ଗାଈ ଓ ଗୋଟିଏ

ଦାମୁଡି (ବଢି ଯାଇଥିବା ଅଣ୍ଡିରା ବାଛୁରି) ମୁଁ ଚରାଇବାକୁ ନେଉଥିଲି ଏବଂ ଉପରବେଳା ସେମାନଙ୍କ ପାଇଁ ବିଲରୁ ଘାସ କାଟି ଆଣୁଥିଲି ।

ଦିନେ ମୁଁ କୁଆରିପଟ ବିଲକୁ ତିନୋଟି ଗୋରୁଙ୍କୁ ଚରାଇବାକୁ ନେଇଥାଏଁ । ଆଷାଢ ମାସ । ବର୍ଷା ଋତୁ ଆରମ୍ଭ ହୋଇଯାଇଥାଏ । ଦୁଇତିନି ଦିନଧରି ବର୍ଷା ହୋଇଯାଇଥାଏ । ବନ୍ୟା ଆସିବାର ସୂଚନା ମିଳୁଥାଏ । କାରଣ ଜୋଡପାଣି ହଳଦିଆ ଦିଶୁଥାଏ ଏବଂ ଖରସୁଆ ନଈରୁ ପ୍ରବଳ ସୁଅରେ ପାଣି ଜୋଡ ଭିତରକୁ ପଶୁଥାଏ । ମୁଁ ତିନୋଟି ଗୋରୁଙ୍କୁ ଜୋଡ ପହଁରାଇ ଆରପଟ ଆଡିଆକୁ ଚରାଇବାକୁ ନେଲି । (ନଈରୁ ବାହାରିଥିବା ନାଳକୁ ଆମ ଆଡେ 'ଜୋଡ' କୁହାଯାଏ । ଶୂଦ୍ରମାନେ 'ଜୋର' କହନ୍ତି । ଆମ ଗାଁର ଅଳ୍ପ ଦୂରରେ ଖରସୁଆ ନଈ । ଖରସୁଆ ନଈରୁ ବାହାରିଥିବା ଆମ ଗାଁ ପାଖ ଜୋଡକୁ ଆୟତନ ଜୋଡ କୁହାଯାଏ । ସେହିପରି ଶିକୋ ଗାଁ ପାଖ ଜୋଡକୁ ଶିକୋ ଜୋଡ, ଗୋବାଙ୍ଗ ଗାଁ ପାଖ ଜୋଡକୁ ଗୋବାଙ୍ଗ ଜୋଡ, ଖଣ୍ଡେଇତା ଗାଁ ପାଖ ଜୋଡକୁ ଖଣ୍ଡେଇତା ଜୋଡ, ସିଙ୍ଗିରି ଗାଁ ପାଖ ଜୋଡକୁ ସିଙ୍ଗିରି ଜୋଡ, କାଟଣା ଗାଁ ପାଖ ଜୋଡକୁ କାଟଣା ଜୋଡ, ଇତ୍ୟାଦି କୁହାଯାଏ ।)

ମୁଁ ଗୋରୁ ଚରାଉଥାଏଁ । କ୍ରମେ କ୍ରମେ ଜୋଡ ପୂରି ହଳଦିଆ ପାଣି ବିଲକୁ ମାଡିଲା । ଘରିଆଡେ ପାଣି ଦେଖାଗଲା । ବଢିପାଣି ବୋଲି ଜାଣିପାରିଲି । ସେତେବେଳକୁ ସୂର୍ଯ୍ୟ ମୁଣ୍ଡ ଉପରୁ ଟିକିଏ ପଶ୍ଚିମ ଆଡକୁ ଢଳିଲେଣି । ଗୋରୁଙ୍କୁ ପାଣିରେ ଅଡାଇ ଅଡାଇ ଗାଁ ଆଡକୁ ନେଲି । ଜୋଡରେ ପାଣି ସୁଅ ଭଉଁରି ଖେଳାଇ ଏପରି ବହୁଥାଏ ଯେ ଦେଖିଲେ ଡର ଲାଗୁଥାଏ । ଗାଈ ଦୁଇଟିରୁ ଗୋଟିଏ ଥିଲା ଧଳୀ, ଅନ୍ୟଟି ନାଲି । ଧଳୀଟି ଶାନ୍ତ, ନରମ ପ୍ରକୃତିର, କିନ୍ତୁ ନାଲିଟି ଉଦଣ୍ଡି ଓଲିଆ ପ୍ରକୃତିର । ମୁଁ ସବୁଦିନେ ଧଳୀର ଲାଙ୍ଗୁଳ ଧରି ଜୋଡ ପାରି ହୁଏଁ । ଧଳୀ ତା ଦେହର ପଛ ଭାଗକୁ ଆଦୌ ପାଣିରେ ବୁଡାଏ ନାହିଁ । ମୁହଁ ପାଖରୁ ଲାଂଗୁଳ ପର୍ଯ୍ୟଂତ ପାଣି ଉପରେ ଭାସିଲା ଭଳି ରଖି ପହଁରେ । ତେଣୁ ତା ଲାଂଗୁଳ ଧରି ଜୋଡ ପାରି ହେବାକୁ ଅସୁବିଧା ହୁଏନାହିଁ ।

ମୁଁ ଗୋରୁ ତିନିଟାକୁ ପାଣିରେ ଅଡେଇ ଅଡେଇ ନେଇ ଜୋଡ ପାଖରେ ପହଂଚିଲା ମାତ୍ରେ ଧଳୀ ଗାଈଟା ଆଗେ ଜୋଡ ଭିତରକୁ ପଶିଗଲା ଏବଂ ପହଁରିଲା । ମୁଁ ତା ଲାଂଗୁଳ ଧରି ପାରିଲି ନାହିଁ । ଦାମୁଡିଟା ଛୋଟ ଥିଲା । ତେଣୁ ବାଧ୍ୟ ହୋଇ ନାଲି ଗାଈର ଲାଂଗୁଳ ଧରିଲି । ପହଁରୁ ପହଁରୁ ଗାଈଟା ଦେହର ପଛ ଭାଗକୁ ବୁଡାଇଲା । କେବଳ ମୁହଁଟି ଉପରକୁ ରଖି, ଦେହର ଅନ୍ୟ ସବୁ ଭାଗକୁ ପାଣିରେ ବୁଡାଇ ପହଁରିଲା ।

ମୁଁ ଲାଂଗୁଳ ଧରିଥାଏଁ, ବୁଡିଗଲି । ବୁଡିଯିବାରୁ ମୋ ହାତ ଗାଈ ଲାଂଗୁଳରୁ ଛାଡିଗଲା । ଗଭୀର ଜୋଡ, ପ୍ରବଳ ସୁଅ । 'କଣ୍ଟାପାହି' ପାଖରେ ପୁଣି ଜୋଡ ବେଶୀ ଗଭୀର, ବେଶୀ ସୁଅ । ଲାଂଗୁଳ ଛାଡି ଦେଲାପରେ କଅଣ ହେଲା, ମୁଁ ଆଉ ଜାଣେ ନାହିଁ । ମୁଁ ସେତେବେଳେ ୧୧/୧୨ ବର୍ଷର ପିଲା । ପହଁରା ଜାଣିନଥିଲି । ପାଣି ଭିତରେ ଅଣନିଃଶ୍ୱାସୀ ହୋଇ ମରିଯିବା ପୂର୍ବରୁ ମୁଁ କିପରି କେଜାଣି ଜୋଡ ଏପାଖ କିଆ ଭୁଲ ଭିତରେ ଗୋଟିଏ ଢିପ ଜାଗା ଉପରେ ଲାଗିଗଲି । (କିଆ ବୁଦା ଘେରା ଜାଗାକୁ ଆମ ଆଡେ 'କିଆ ଭୁଲ' କୁହାଯାଏ ।) ଢିପ ଉପରେ ମୋ ଗୋଡ ଲାଗିଯିବାରୁ ମୁଁ ଠିଆ ହୋଇଗଲି । ଆଶ୍ଚର୍ଯ୍ୟର କଥା, ମୁଁ ପାଣି ପିଇଯାଇନଥିଲି । କିପରି ଜୋଡର ଏ ପଟକୁ ଆସି ଢିପରେ ଲାଗିଗଲି, ଜାଣିପାରିଲି ନାହିଁ । ଅବଶ୍ୟ ବର୍ତ୍ତମାନ ମୋର ଅନୁମାନ ହେଉଛି, ପ୍ରବଳ ସୁଅ ମୋତେ ଖୁବ୍ ଜୋରରେ ଠେଲିଆଣିଥିଲା । କିଂତୁ ଠେଲି ଆଣି, ଆଉ କୁଆଡକୁ ନ ନେଇ ଢିପ ଉପରେ ଲଗାଇଦେଲା କାହିଁକି ? ଗୋରୁ ତିନିଟା ସେତେବେଳକୁ ଗାଁ ଆଡକୁ ମୁହାଁଇଲେଣି । ମୁଁ ଆଂଠୁଏ ପାଣିରେ ତରତର ହୋଇ ଯାଇ କଷ୍ଟେ ମଷ୍ଟେ ସେମାନଂକ ପିଛା ଧରିଲି । ସେହି ଦିନଠାରୁ ମୁଁ ଆଉ କେବେ ନାଳିଗାଈ ଲାଂଗୁଳ ଧରି ଜୋଡ ପାରିହେଇନାହିଁ ।



# ଜୀବନର ପରମ ବିଭବ : ଗୁଣୀଜନଙ୍କ ସାନ୍ନିଧ

କଟକ ରେଭେନ୍‌ସା କଲିଜିଏଟ୍ ସ୍କୁଲ, କଟକ ସେକଣ୍ଡାରି ଟ୍ରେନିଂ ସ୍କୁଲ ଓ କଟକ ରେଭେନ୍‌ସା କଲେଜ, ଏ ତିନିଟି ଓଡିଶାର ସୁପ୍ରସିଦ୍ଧ ଶିକ୍ଷାନୁଷ୍ଠାନ । ଏ ତିନିଟିରେ ଶିକ୍ଷକତା କାମ କରି ମୋ ଜୀବନ ଧନ୍ୟ ହୋଇଛି । ମୁଁ ବହୁ ଛାତ୍ରଛାତ୍ରୀ, ସହକର୍ମୀ ଓ ଉପରିସ୍ଥମାନଂକର ସଂପର୍କରେ ଆସିଛି । ସେମାନଂକର ମହନୀୟ ସାହଚର୍ଯ୍ୟ ମୋ ଜୀବନର ପରମ ବିଭବ ହୋଇଛି ।

ସୁନ୍ଦରଗଡ କଲେଜରୁ ଅଢେଇ ବର୍ଷ ମାତ୍ର ପରେ ମୁଁ ବଦଳି ହୋଇ ଆସି ଯେଉଁ ଦିନ ରେଭେନ୍‌ସା କଲେଜ ଷ୍ଟାଫ୍ କମନରୁମରେ ବସିଲି, ଅସୀମ ଆନନ୍ଦ ଅନୁଭବ କରିଥିଲି । ସେଠାରେ ବହୁ ଖ୍ୟାତନାମା ଅଧ୍ୟାପକଂକ ସଙ୍ଗରେ ମୁଁ କାମ କରିଥିଲି । ସେମାନେ କେବଳ ପାଠ ପଢାଇବାରେ ଧୁରୀଣ ନଥିଲେ, ଜ୍ଞାନୀ, ଗୁଣୀ ଓ ଉତ୍ତମ ସ୍ୱଭାବର ଲୋକ ମଧ୍ୟ ଥିଲେ । ଡକ୍‌ଟର ବଂଶୀଧର ସାମନ୍ତରାୟ, ଡକ୍‌ଟର ଦେବେନ୍ଦ୍ରଚନ୍ଦ୍ର ମିଶ୍ର, ଡକ୍‌ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍‌ଟର ପ୍ରଫୁଲ୍ଲଚନ୍ଦ୍ର ପତି, ଡକ୍‌ଟର କ୍ଷେତ୍ରମୋହନ ପଟ୍ଟନାୟକ, ଡକ୍‌ଟର କୁଂଜବିହାରୀ ତ୍ରିପାଠୀ, ଡକ୍‌ଟର କୁଂଜବିହାରୀ ଦାଶ, ପ୍ରଫେସର ଜୟକୃଷ୍ଣ ମିଶ୍ର, ପ୍ରଫେସର ନଟବର ସାମନ୍ତରାୟ, ପ୍ରଫେସର ଗୌରୀ କୁମାର ବ୍ରହ୍ମା, ପ୍ରଫେସର ବିବେକାନନ୍ଦ ମୁଖାର୍ଜି, ଡକ୍ଟର ବେଣୀମାଧବ ପାଢୀ, ଡକ୍‌ଟର ରମାନାଥ ମହାନ୍ତି, ପ୍ରଫେସର ଆଲତାପ ହୋସେନ୍, ଡକ୍‌ଟର ଗଦାଧର ମିଶ୍ର, ଡକ୍‌ଟର କାହ୍ନୁଚରଣ ମିଶ୍ର, ପ୍ରଫେସର ଗୋଲୋକ ବିହାରୀ ଧଳ, ଡକ୍‌ଟର ହରିହର ମିଶ୍ର, ଡକ୍‌ଟର ମହେନ୍ଦ୍ର ଚନ୍ଦ୍ର ରାଉତ, ଡକ୍‌ଟର ଗୋକୁଳାନନ୍ଦ ମହାପାତ୍ର, ପ୍ରଫେସର

ସର୍ବେଶ୍ୱର ଦାଶ, ପ୍ରଫେସର ସିଦ୍ଧେଶ୍ୱର ହୋତା, ପ୍ରଫେସର ତ୍ରିଲୋଚନ ମିଶ୍ର, ପ୍ରଫେସର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ, ଡକ୍ଟର କୁଳମଣି ସାମଲ, ଡକ୍ଟର ବ୍ରଜସୁନ୍ଦର ମହାନ୍ତି, ପ୍ରଫେସର ରାମନାରାୟଣ ମହାନ୍ତି, ପ୍ରଫେସର ବେଣୁଧର ରାଉତ, ଡକ୍ଟର କୃଷ୍ଣଚରଣ ବେହେରା, ପ୍ରଫେସର କେ.ସି. ଆର ମୂର୍ତ୍ତି ପ୍ରମୁଖଙ୍କ ସଂଗରେ ମୁଁ ଅଧ୍ୟାପକ ଭାବରେ କାର୍ଯ୍ୟ କରିବାର ସୌଭାଗ୍ୟ ପାଇଥିଲି ।

ସବୁଠାରୁ ଅଧିକ ଅମାୟିକ ବ୍ୟକ୍ତି ଥିଲେ ଓଡିଆ ଓ ସଂସ୍କୃତ ବିଭାଗର ଅଧ୍ୟାପକ ଜୟକୃଷ୍ଣ ମିଶ୍ର । ଛନ୍ଦ କପଟ କଅଣ, ସେ ଜାଣି ନଥିଲେ । ତାଂକର ଜୀବନ ଜଂଜାଳରେ ଜର୍ଜରିତ ଥିଲା ସତ, କିଂତୁ ମୁଖ ସର୍ବଦା ହସ ହସ ଥିଲା । ଓଡିଆ ଓ ସଂସ୍କୃତ ସାହିତ୍ୟରେ ତାଂକର ଅଗାଧ ଜ୍ଞାନ ଥିଲା । ତାଂକର ମଧୁର ସ୍ୱରରେ ସଂସ୍କୃତ ଶ୍ଳୋକାବୃତ୍ତି ଶ୍ରୋତାମାନଂକ ମନରୁ ବ୍ୟଥା ହରିନେଉଥିଲା । ସେ ଷ୍ଟାଫ କମନରୁମକୁ ପ୍ରବେଶ କଲାମାତ୍ରେ ଷ୍ଟାଫ କମନରୁମ୍ ସତେ ଯେପରି ଜୀବନ ଉଲ୍ଲାସରେ ଉଦ୍‌ବେଳିତ ହୋଇ ଉଠୁଥିଲା । ତାଂକର ଅଧ୍ୟାପନା ଏପରି ଆନନ୍ଦ ଦାୟକ ଥିଲା ଯେ ଛାତ୍ରଛାତ୍ରୀମାନେ ଅନ୍ୟ କ୍ଲାସ୍‌ରୁ ଆସି ତାଙ୍କ କ୍ଲାସ୍‌ରେ ବସୁଥିଲେ । ସେ 'ମାତୃମୁକ୍ତି ମୁକ୍ତାବଳୀ' ନାମକ ଏକ ଅନବଦ୍ୟ ସଂସ୍କୃତ କାବ୍ୟ (ଗଦ୍ୟପଦ୍ୟ ମିଶ୍ରିତ ଚଂପୂ କାବ୍ୟ) ଲେଖୁଥିଲେ ଏବଂ ବେଳେ ବେଳେ ଆମକୁ ଶୁଣାଉଥିଲେ । ତାଂକ ପରି ବିଦ୍ୱାନ୍ , ଗୁଣୀ, ଗୁଣଗ୍ରାହୀ, ସରଳ, ଅମାୟିକ, ପରୋପକାରୀ, ଛାତ୍ରବତ୍ସଳ, ଅଧ୍ୟାପକ ଓଡିଶାରେ ଆଉ ଜନ୍ମଗ୍ରହଣ କରିବେ ବୋଲି ମୋର ମନେ ହେଉନାହିଁ ।

ଓଡିଆ ବିଭାଗ ଓ ସଂସ୍କୃତ ବିଭାଗ ମିଶି ଗୋଟିଏ ବିଭାଗ ଥିଲା ଏବଂ ଡକ୍‌ଟର କୁଂଜ ବିହାରୀ ତ୍ରିପାଠୀ ଉକ୍ତ ବିଭାଗର କିଛି ବର୍ଷ ମୁଖ୍ୟ ଥିଲେ । ଓଡିଆ ଓ ସଂସ୍କୃତ ଭାଷା ତତ୍ତ୍ୱରେ ତାଂକର ଗଭୀର ଜ୍ଞାନ ଥିଲା । ଧୀର ସ୍ଥିର, ଶାନ୍ତଶିଷ୍ଟ ସ୍ୱଭାବ ସାଂଗକୁ ଜ୍ଞାନର ଗଭୀରତା ଓ ଛାତ୍ରବତ୍ସଳତା ତଂକୁ ବିରଳ ବ୍ୟକ୍ତିତ୍ୱର ଅଧିକାରୀ କରିଥିଲା । ଗରିବ ଛାତ୍ରଛାତ୍ରୀଂକର ଦୁଃଖ ଦୁର୍ଦ୍ଦଶା ଶୁଣିଲେ ତାଂକ ଚକ୍ଷୁରୁ ଅଶ୍ରୁ ଝରିଆସୁଥିଲା । ମୁଁ ତାଂକ ତତ୍ତ୍ୱାବଧାନରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି.ଡିଗ୍ରୀ ଲାଭ କରିଥିଲି ।

ଭୁବନେଶ୍ୱର ଟେକ୍ସ୍ଟ ବୁକ୍ ବ୍ୟୁରୋରେ ମୁଁ କେତେକ ବର୍ଷ ଓଡିଆ ଭାଷାବିଶେଷଜ୍ଞ ଭାବେ କାର୍ଯ୍ୟ କରିଥିଲି । ସେହି ସମୟରେ ମୁଁ ଡାକ୍ତର ଗୋପାଳଚନ୍ଦ୍ର ପଟ୍ଟନାୟକ, ଡାକ୍ତର ଘନଶ୍ୟାମ ମହାପାତ୍ର, କବିରାଜ ବନମାଳୀ ଦାସ, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ଡକ୍‌ଟର ଶ୍ରୀରାମ ଚନ୍ଦ୍ର ଦାଶ, ଡକ୍‌ଟର ବିଦ୍ୟାଧର ପାଢୀ, ଡକ୍‌ଟର ଶ୍ରୀନିବାସ ସାହୁ,

ଡକ୍ଟର ବସନ୍ତକୁମାର ବେଉରା ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନଂକ ସଂଗରେ କାମ କରି ଅତ୍ୟନ୍ତ ଆନନ୍ଦ ଲାଭ କରିଥିଲି । ପରେ ବ୍ୟୁରୋରେ ଡାକ୍ତର ବାସୁଦେବ କରଙ୍କ ସଂଗରେ ପରିଭାଷା କାମ କରି ଅପାର ଆନନ୍ଦ ଲାଭ କରିଥିଲି ।

ସୁନ୍ଦରଗଡ କଲେଜରେ ଅଢେଇ ବର୍ଷ ମାତ୍ର ରହିବା ଭିତରେ ଅଧ୍ୟାପକ ବିନୋଦ ଚନ୍ଦ୍ର ନାୟକ (କବି), ଅଧ୍ୟାପକ ବସନ୍ତକୁମାର ନାୟକ, ଅଧ୍ୟାପକ ଗୋପବଂଧୁ ପତି, ଅଧ୍ୟାପକ ଶକ୍ତି ପ୍ରସାଦ ମିଶ୍ର ପ୍ରମୁଖଂକ ସଂଗେ କାମ କରି ଆନନ୍ଦ ଅନୁଭବ କରିଥିଲି । ମୋ ସମୟରେ ସେହି କଲେଜରେ ଅଧ୍ୟକ୍ଷ ଥିଲେ ଶ୍ରୀଯୁକ୍ତ କେ.ସି. ଆର. ମୂର୍ତ୍ତି । ସେ ଅତ୍ୟନ୍ତ ସ୍ନେହୀ, ମିଷ୍ଟଭାଷୀ ଓ ଉଦାର ପ୍ରକୃତିର ଲୋକ ଥିଲେ । କ୍ରୀଡା ଅଧ୍ୟାପକ ଶ୍ରୀ ଦୀନମଣି ପଟେଲଙ୍କ ଉପକାର ମୁଁ ଭୁଲିପାରିବି ନାହିଁ ।

କଟକ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଦ୍ୱିତୀୟ ସଂସ୍କୃତ ଶିକ୍ଷକ ଭାବେ କାମ କରୁଥିଲାବେଳେ ମୋର ଅତ୍ୟନ୍ତ ଆନନ୍ଦରେ ଦିନ କଟିଥିଲା । ମୋ ସମୟରେ ପ୍ରଧାନ ଶିକ୍ଷକ ଥିଲେ ଶ୍ରୀଯୁକ୍ତ ନାରାୟଣ ପତି ଏବଂ ତାଂକ ପରେ ଆସିଲେ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ କାନୁନ୍‌ଗୋ । ଗଣିତ ଶିକ୍ଷକ ଭାବେ ନାରାୟଣ ପତିଂକର ସମଗ୍ର ଓଡିଶାରେ ଖ୍ୟାତି ଥିଲା । ଶ୍ରୀ କୈଳାସଚନ୍ଦ୍ର ରାୟ, ଶ୍ରୀ ଦୈତ୍ୟାରି ମହାନ୍ତି, ଶ୍ରୀ ନିରଂଜନ ମହାପାତ୍ର, ଶ୍ରୀ ଚୈତନ୍ୟ ଚରଣ ମଲ୍ଲିକ, ଶ୍ରୀ ଲକ୍ଷ୍ମଣ କର, ଶ୍ରୀ ଅଭିରାମ ମହାପାତ୍ର, ଶ୍ରୀ ସୁଧାକର ଦାସ, ଶ୍ରୀ ଭାସ୍କର ଚନ୍ଦ୍ର ଶତପଥୀ, ପଣ୍ଡିତ ମହେଶ୍ୱର କର, ଶ୍ରୀ କେଶବ ଚନ୍ଦ୍ର ପତି, ଶ୍ରୀ କରୁଣାକର ପରିଡା, ଶ୍ରୀ ଧନେଶ୍ୱର ମିଶ୍ର, ଶ୍ରୀ କିଶୋରୀଚରଣ ମହାନ୍ତି, ଶ୍ରୀ ବାଚୁନାରାୟଣ ମୂର୍ତ୍ତି, ଶ୍ରୀ ସଚ୍ଚିଦାନନ୍ଦ ରାଉତ, ଶ୍ରୀ ଅନ୍ନଦା ପ୍ରସାଦ ନାଗ, ଶ୍ରୀ ଦମୋଦର ସ୍ୱାଇଁ ପ୍ରମୁଖ ପ୍ରବୀଣ ଶିକ୍ଷକମାନଂକ ସଂଗେ କାମ କରି ମୁଁ ଖୁବ ଆନନ୍ଦ ଲାଭ କରିଥିଲି ।

ମୁଁ କଟକ ସେକଣ୍ଡାରି ଟ୍ରେନିଂ ସ୍କୁଲରେ ଟ୍ରେଣ୍ଡ ଗ୍ରାଜୁଏଟ୍ ଶିକ୍ଷକ ଥିଲାବେଳେ ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ପ୍ରାଣକୃଷ୍ଣ ପଟ୍ଟନାୟକ । ସେ ଏପରି ସରଳ ପ୍ରକୃତିର ଲୋକ ଥିଲେ ଏବଂ ଏପରି ସରଳ ଭାବରେ ଜୀବନ ଯାପନ କରୁଥିଲେ ଯେ ତାଂକୁ ଏକ ପ୍ରସିଦ୍ଧ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ବୋଲି ଭାବି ହେଉନଥିଲା । ଶ୍ରୀ ଅଭିମନ୍ୟୁ ସ୍ୱାଇଁ, ପଣ୍ଡିତ ଗୋବିନ୍ଦଚନ୍ଦ୍ର ମିଶ୍ର, ଶ୍ରୀ ରାଧାମୋହନ ମିଶ୍ର, ଶ୍ରୀ ପ୍ରଭାକର ରଥ, ଶ୍ରୀ ଜୟନ୍ତ କୁମାର ଦାସ ପ୍ରମୁଖ ଶିକ୍ଷକ ଥିଲେ ଏବଂ ହେଡ୍ କ୍ଲର୍କ ଥିଲେ ଶ୍ରୀ ମହେଶ୍ୱର ସ୍ୱାଇଁ । ମହେଶ୍ୱର ବାବୁଂକ ଭଳି ଧୀରସ୍ଥିର, ଉଦାର, ସାହାଯ୍ୟକାରୀ, ବଂଧୁ ପ୍ରକୃତିର କ୍ଲର୍କ ଓଡିଶାରେ ଆଉ ନଥିବେ ବୋଲି ମୋର ଧାରଣା । ହିନ୍ଦୀ ସଂସ୍କୃତ ଶିକ୍ଷକ ପଣ୍ଡିତ

ଶ୍ରୀ ଗୋବିନ୍ଦ ଚନ୍ଦ୍ର ମିଶ୍ର ଛାତ୍ରାବାସର ପରିଚାଳକ ଥିଲେ । ତାଙ୍କ ଉଦ୍ୟମରେ ଛାତ୍ରାବାସର ଉଦ୍ୟାନ ସର୍ବଦା ଫୁଲଫଳରେ ସୁଶୋଭିତ ରହୁଥିଲା । ଗୋବିନ୍ଦ ବାବୁ ବନ୍ଧୁମାନଙ୍କୁ ବିଭିନ୍ନ ପ୍ରକାରେ ସାହାଯ୍ୟ କରି ଜଣେ ବନ୍ଧୁ ବତ୍ସଳ ଶିକ୍ଷକ ଭାବେ ଶ୍ରଦ୍ଧା ଓ ସମ୍ମାନ ଲାଭ କରୁଥିଲେ ।

୧୯୫୫ ରୁ ୧୯୬୪ ମଧ୍ୟରେ ମୋ ଶିକ୍ଷକଜୀବନରେ ମୁଁ ସହକର୍ମୀମାନଙ୍କଠାରୁ ଶିଷ୍ଟ ଆଚରଣ, ସ୍ନେହ, ସଦିଚ୍ଛା ଓ ଭ୍ରାତୃଭାବ ଲାଭ କରିଥିଲି । ସେତେବେଳେ ସ୍କୁଲଶିକ୍ଷକ ଜୀବନରେ ଅଶାନ୍ତି, ଈର୍ଷା, ଅସୂୟା ଓ ଅନୁଦାରତା ନଥିଲା । ସେ କାଳରେ ଟିଉସନ କରିବା ନଥିଲା । କିଏ କେମିତି ଅଭିଭାବକଙ୍କ ବହୁତ ଅନୁରୋଧରେ ଟିଉସନ କରୁଥିଲେ । କଲିଜିଏଟ୍ ସ୍କୁଲରେ ମୁଁ ସଂସ୍କୃତ ଶିକ୍ଷକ ଥିଲାବେଳେ ବାରିଷ୍ଟର ବୀରେନ୍ଦ୍ରମୋହନ ପଟ୍ଟନାୟକଙ୍କ ବାରଂବାର ଅନୁରୋଧରେ ତାଂକର ଦୁଇଟି ପିଲା ଦୀପ୍ତି ଓ ଦିଲୀପଙ୍କୁ ସପ୍ତାହରେ ଦୁଇଥର ସଂସ୍କୃତ ପଢାଇବାକୁ ଯାଉଥିଲି । ତାଂକର ପତ୍ନୀ କଲ୍ୟାଣୀ ଥିଲେ କଲ୍ୟାଣର ପ୍ରତିମୂର୍ତ୍ତି । ମୁଁ ପିଲାଂକୁ ପଢାଇବାକୁ ପହଂଚିଲା ମାତ୍ରେ ସେ କିଛି ଜଳଖିଆ ମୋ ପାଇଁ ପଠାଇ ଦେଉଥିଲେ । ସେତେବେଳେ ଶିକ୍ଷକମାନଙ୍କ ପ୍ରତି ଅଭିଭାବକମାନଙ୍କର ଯଥେଷ୍ଟ ଆଦର ଓ ସମ୍ମାନବୋଧ ଥିଲା ।



# ଛାତ୍ରଙ୍କ ଗୁଣେ ଶିକ୍ଷକ ଗୁଣୀ

ମୁଁ କଟକ ରାଧାନାଥ ଟ୍ରେନିଂ କଲେଜର ସ୍ୱନାମଧନ୍ୟ ଅଧ୍ୟକ୍ଷ ବୈଦ୍ୟନାଥ ରଥଙ୍କଠାରୁ ନିଯୁକ୍ତିପତ୍ର ପାଇ ରେଭେନ୍‌ସା କଲିଜିଏଟ୍ ସ୍କୁଲର ଦ୍ୱିତୀୟ ସଂସ୍କୃତ ଶିକ୍ଷକ ଭାବରେ ଯେଉଁଦିନ ପ୍ରଥମ କରି ଶ୍ରେଣୀଗୃହକୁ ପଢାଇବାକୁ ଗଲି, ସେଦିନର ଅନୁଭୂତି ମୁଁ କେବେ ଭୁଲିପାରିବି ନାହିଁ । ମୁଁ ପିଂଧିଥିଲି ଖଂଡିଏ ଛୋଟ ଧୋତି ଏବଂ ଖଣ୍ଡିଏ ମାଟିଆ ରଂଗର ଛୋଟ ଜାମା (ହାଫ୍ ଶାର୍ଟ) । ମୁଁ ସେତେବେଳେ ଜୋତା କି ଚପଲ ପିଂଧୁନଥିଲି, ଖାଲି ପାଦରେ ଚାଲୁଥିଲି । ଛାତ୍ରଛାତ୍ରୀଙ୍କ ଉପସ୍ଥାନଖାତା, ଗୋଟିଏ ଡଷ୍ଟର ଓ ଦିଖଣ୍ଡ ଚକ୍‌ଖଡି ଧରି ଅଷ୍ଟମ (କ) ଶ୍ରେଣୀକୁ ପ୍ରବେଶ କଲି । ମୋତେ ସେତେବେଳେ ୨୩ ବର୍ଷ ବୟସ । ମଫସଲିଆ ଚେହେରା, ପୁଣି ସଂସ୍କୃତ ପଣ୍ଡିତ । ମନରେ ଭାରି ଡର ଲାଗୁଥାଏ । ଶ୍ରେଣୀକୋଠରୀକୁ ପ୍ରବେଶ କଲାମାତ୍ରେ ପିଲାମାନେ ଉଠିପଡି ଠିଆ ହୋଇଗଲେ । ସମସ୍ତେ ଚୁପ୍‌ଚାପ୍ ହାତ ଯୋଡି ନମସ୍କାର କଲେ । ମୁଁ ଜଣେ ନୂଆ ଶିକ୍ଷକ ବୋଲି ସମସ୍ତଂକର ଧାରଣା ହେଲା । ସ୍କୁଲ ଆରଂଭର ପ୍ରଥମ ପିରିୟଡ । ପ୍ରଧାନ ଶିକ୍ଷକ ମୋତେ ଅଷ୍ଟମ (କ) ଶ୍ରେଣୀର ଶ୍ରେଣୀଶିକ୍ଷକ ଦାୟିତ୍ୱ ଦେଇଥିଲେ ।

ସ୍ୱାଧୀନତା ମିଳିବାର ସାତ ବର୍ଷ ମାତ୍ର ହୋଇଥାଏ । ବର୍ତ୍ତମାନର ସମୟଠାରୁ ସେସମୟ ଯେ କେତେ ଭିନ୍ନ ଥିଲା, ଭାବିଲେ ସ୍ୱପ୍ନ ପରି ଲାଗୁଛି । ସଂସ୍କୃତ କାବ୍ୟଶାସ୍ତ୍ର ପଢି ମୋ ମନ ସ୍ୱଚ୍ଛ ତଥା ଭାବପୂର୍ଣ୍ଣ ହୋଇଯାଇଥିଲା । "ଏହି ପିଲାମାନଂକୁ ମୁଁ ପାଠ ପଢାଇ ଧନ୍ୟ ହୋଇଯିବି" ଏହିପରି ଭାବି ମୁଁ ଅତ୍ୟନ୍ତ ଗୌରବ ଓ ଆନନ୍ଦ ଅନୁଭବ

କଲି । ଶୁଣିଥିଲି, ଏହି ସ୍କୁଲରେ କଟକ ସହରର ବଡ ବଡ ଘରର ପ୍ରତିଭାବାନ୍ ପିଲାମାନେ ପଢନ୍ତି । ଏଭଳି ସ୍କୁଲରେ ପୁଣି ମୁଁ ପାଠ ପଢାଇବି ! ଭାବି ଆନନ୍ଦବିଭୋର ହୋଇଗଲି ।

ତା'ପରେ ମୁଁ ଠିଆ ହୋଇ ରହି କହିଲି - "ପିଲାମାନେ, ମୁଁ ତୁମମାନଂକର ଜଣେ ଶିକ୍ଷକ । ନୂଆ ନିଯୁକ୍ତି ପାଇଛି । ମୁଁ ତୁମମାନଂକୁ ସଂସ୍କୃତ ପଢାଇବି । ମୋ ନାମ ଧନେଶ୍ୱର ମହାପାତ୍ର ।"

ସଂଗେ ସଂଗେ ଗୋଟିଏ ପିଲା ଠିଆ ହୋଇପଡି ପଚାରିଲା - "ସାର୍ , ଆପଣ କଅଣ ପାସ୍ କରିଛନ୍ତି ?"

ମୁଁ କହିଲି- "ମୁଁ ସଂସ୍କୃତରେ ସାହିତ୍ୟାଚାର୍ଯ୍ୟ ପାସ୍ କରିଛି ।"

"କେଉଁ ଡିଭିଜନ୍‌ରେ ?"

"ଫାଷ୍ଟ ଡିଭିଜନ୍‌ରେ ।"

ଫାଷ୍ଟ ଡିଭିଜନ କଥା ଶୁଣି ପିଲାଟିର ମୁହଁ ହର୍ଷୋତ୍‌ଫୁଲ୍ଲ ହୋଇଉଠିଲା । ବୋଧହୁଏ ସେ କେବଳ ଫାଷ୍ଟ ଡିଭିଜନ୍‌ରେ ପାସ୍ କରିଥିବା ଶିକ୍ଷକଂକଠାରୁ ପଢିବାକୁ ଚାହୁଁଥିଲା ।

ଉତ୍ତମ ପାଠପଢା ଓ ଶୃଂଖଳା ପାଇଁ ରେଭେନ୍‌ସା କଲିଜିଏଟ୍ ସ୍କୁଲର ଖୁବ୍ ସୁନାମ ଥିଲା । ପ୍ରଧାନ ଶିକ୍ଷକ ନାରାୟଣ ପତି ପ୍ରତିଦିନ ସ୍କୁଲ ଆରମ୍ଭ ହେବାର ୧୦/୧୫ ମିନିଟ୍ ପରେ ବାରଣ୍ଡାରେ ସବୁ ଶ୍ରେଣୀଗୃହ ଆଗରେ ଥରେ ବୁଲି ଆସୁଥିଲେ । ବେଶ୍, ଅପରାହ୍ଣ ଚାରିଟା ପର୍ଯ୍ୟନ୍ତ ପାଠପଢା ଓ ଶୃଂଖଳା ରକ୍ଷା ପାଇଁ ସେତିକି ଥିଲା ଯଥେଷ୍ଟ । ପ୍ରଧାନ ଶିକ୍ଷକ ଗଣିତରେ ପ୍ରବୀଣ ଥିଲେ ଏବଂ ଏକାଦଶ ଶ୍ରେଣୀର ଦୁଇ ସେକ୍‌ସନରେ ନିୟମିତ ଭାବେ ଗଣିତ ପଢାଉଥିଲେ । ସବୁ ଶିକ୍ଷକଂକର ପାଠପଢାଇବାରେ ସୁନାମ ଥିଲା । ଓଡିଆ ଭାଷା ସାହିତ୍ୟ ପଢାଇବାରେ ଶ୍ରୀ ସୁଧାକର ଦାଶ ଖୁବ୍ ସୁନାମ ଅର୍ଜନ କରିଥିଲେ ।

ପିଲାମାନଂକ ମଧ୍ୟରୁ କେହି ପାଠ ପ୍ରସ୍ତୁତ ନ କରି ଆସୁଥିଲେ ତାକୁ ବାରଣ୍ଡା ତଳକୁ ଆଣ୍ଠେଇ ବସେଇ ଦିଆଯାଉଥିଲା । ତାହାକୁ 'ନିଲ୍ ଡାଉନ୍' କୁହାଯାଉଥିଲା । ଏତିକି ଛଡା ଅଧିକ ଦଣ୍ଡ ବ୍ୟବସ୍ଥା ନଥିଲା । ନିତାନ୍ତ ଦରକାର ପଡିଲେ ପିଲାକୁ ପ୍ରଧାନଶିକ୍ଷକଂକ ପାଖକୁ ନିଆଯାଉଥିଲା । ପ୍ରଧାନ ଶିକ୍ଷକ (ନାରାୟଣ ପତି) ଚଷମା ତଳୁ ପିଲାଆଡକୁ ଥରେ ଚାହିଁ ଦେଉଥିଲେ । ସେତିକିରେ ପିଲା ତା' ପରଦିନଠାରୁ ପାଠ ପ୍ରସ୍ତୁତ କରି ସ୍କୁଲକୁ ଆସୁଥିଲା । କ୍ଲାସକୁ ଯାଇ ପଢାଇବାରେ ମୁଁ ବହୁତ ଆନନ୍ଦ ଅନୁଭବ କରୁଥିଲି । ମୁଁ ସଂସ୍କୃତ, ଓଡିଆ, ହିନ୍ଦୀ ପ୍ରଭୃତି ପଢାଉଥିଲି ।

ଦିନକର କଥା, (କଲିଜିଏଟ୍ ସ୍କୁଲରେ) ନବମ (କ) ଶ୍ରେଣୀରେ ମୋର ପିରିଅଡ ଥିଲା । ଖେଳଛୁଟିର ପରବର୍ତ୍ତୀ ପିରିଅଡ । ତେଣୁ ମୁଁ ୨/୩ ମିନିଟ୍ ଡେରି କରି ଗଲି । ତଥାପି ସବୁ ପିଲା ଶ୍ରେଣୀକୁ ଆସି ବସିନଥିଲେ । ମୁଁ ଯାଇ ଶ୍ରେଣୀଗୃହରେ ଠିଆ ହେଲା ପରେ ମଧ୍ୟ କେତେଜଣ ପିଲା ଆସିଲେ । ତେଣୁ ଶ୍ରେଣୀଗୃହରେ ଟିକିଏ କୋଳାହଳ ସୃଷ୍ଟି ହେଲା । ମୁଁ ଧୀରସ୍ଥିର ଭାବରେ ଠିଆ ହୋଇ ରହିଲି । କ୍ରମେ କୋଳାହଳ ବଂଦ ହେଲା, ମୁଁ ପଢାଇଲି । କିଂତୁ ଘଣ୍ଟା ବାଜିଲାପରେ ଆସିଲାବେଳକୁ ପିଲାମାନଂକୁ କହିଦେଇ ଆସିଲି - "ପିଲାମାନେ, ମୁଁ ଆଉ ତୁମମାନଂକର କ୍ଲାସ ନେବି ନାହିଁ । କାରଣ, ତୁମେମାନେ ବିଶୃଂଖଳା କଲ ।" ସ୍କୁଲ ଛୁଟି ପରେ ସେହି ଶ୍ରେଣୀର ସବୁ ପିଲା ଛାତ୍ରାବାସରେ ମୁଁ ରହୁଥିବା କୋଠରୀ ପାଖରେ ପହଂଚିଲେ । ନମ୍ର ଭାବରେ କହିଲେ - "ସାର୍, ଆମର ଭୁଲ ହୋଇଯାଇଛି । ଆଉ ଏପରି କରିବୁଁ ନାହିଁ ।" ସେ ସମୟର ଆନନ୍ଦ ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । ଆଦର ସହକାରେ ସେମାନଂକୁ ଉପଦେଶ ଦେଇ ବିଦା କଲି । ମନେ ମନେ ସେମାନଂକ ପ୍ରତି କୃତଜ୍ଞତା ଜଣାଇଲି । କାରଣ, ସେମାନେ ମୋତେ ଶିକ୍ଷକର ମର୍ଯ୍ୟାଦା ଦେଲେ । ମୁଁ ପୁଣି ଦ୍ୱିତୀୟ ସଂସ୍କୃତ ଶିକ୍ଷକ ମାତ୍ର ଥିଲି । ସତରେ କ'ଣ ମୁଁ ସେମାନଂକୁ ପଢାଇବା ବଂଦ କରିପାରିଥା'ନ୍ତି ?

ସେ ସମୟରେ ଶିକ୍ଷକମାନଂକ ପ୍ରତି ଅଭିଭାବକ ମାନଂକର ସମ୍ମାନ ବୋଧ ଥିଲା । ଦିନକର କଥା । ସେସମୟରେ କଲିଜିଏଟ୍ ସ୍କୁଲରେ ନିୟମ ଥିଲା ଯେ କୌଣସି ପିଲା ଯଦି ଶ୍ରେଣୀରେ ତିନିଦିନ ଲାଗିଲାଗି ଅନୁପସ୍ଥିତ ରହେ, ତେବେ ଶ୍ରେଣୀଶିକ୍ଷକ ପ୍ରଧାନ ଶିକ୍ଷକଂକୁ ତାର ଅନୁପସ୍ଥିତି ବିଷୟ ଜଣାନ୍ତି । ମୁଁ ଅଷ୍ଟମ (କ) ଶ୍ରେଣୀରେ ଶ୍ରେଣୀ ଶିକ୍ଷକ ଭାବେ ଦେଖିଲି, ଗୋଟିଏ ପିଲା ତିନି ଦିନ ଧରି କ୍ଲାସ୍‌କୁ ଆସିନାହିଁ । ଚତୁର୍ଥ ଦିନ ମୁଁ ଯାଇ ପ୍ରଧନ ଶିକ୍ଷକଂକୁ (ନାରାୟଣ ପତିଂକୁ) କହିଲି - "ମୋ ଶ୍ରେଣୀର ଗୋପୀକାନ୍ତ ଘୋଷ ନାମକ ପିଲାଟିଏ ତିନିଦିନ ହେଲା ଆସୁନାହିଁ ।" ଆଡମିଶନ ରେଜିଷ୍ଟରରୁ ଜଣାପଡିଲା, ପିଲାଟି ତତ୍‌କାଳୀନ ପୁଲିସ ଆଇ.ଜି. ଶ୍ରୀକାନ୍ତ ଘୋଷଂକର ପୁତ୍ର । ସେସମୟରେ ଆଇ.ଜି.ଥିଲେ ପୁଲିସ୍ ବିଭାଗର ମୁଖ୍ୟ । କଲିଜିଏଟ୍ ସ୍କୁଲପାଖ ଦ୍ୱିତୀୟ ଗଳିରେ ତାଂକର ଘର ଥିଲା । ସେତେବେଳେ ସ୍କୁଲରେ ଟେଲିଫୋନ ନଥିଲା । ପ୍ରଧାନ ଶିକ୍ଷକ ମୋତେ ତାଂକ ଘରକୁ ଯାଇ ଗୋପୀକାନ୍ତ କାହିଁକି ଆସୁନାହିଁ, ବୁଝି ଆସିବାକୁ କହିଲେ ।

ମୁଁ ଆଇ.ଜି.ଙ୍କ ଘରକୁ ଗଲି । ଧୋତି ଓ ହାଫଶାର୍ଟ ପିଂଧିଥିବା ଶିକ୍ଷକ ଜଣେ । ପାଦରେ ଜୋତା କି ଚପଲ ନଥାଏ । ଗେଟ୍‌ରେ ଜଣେ ପୁଲିସ୍ ପ୍ରହରୀଂକୁ ଠିଆ ହୋଇଥିବାର ଦେଖିଲି । ତାଂକଠାରୁ ବୁଝିଲି, ଆଇ.ଜି. ଅଛନ୍ତି ଏବଂ ଅଫିସକାର୍ଯ୍ୟ

କରୁଛନ୍ତି । ତାଂକ ପାଖରେ କେତେଜଣ ପୁଲିସ୍ ଅଫିସର ମଧ୍ୟ ଅଛନ୍ତି । ମୁଁ ପ୍ରହରୀଂକୁ କହିଲି - "ଶୀଘ୍ର ଯାଇ ଜଣାନ୍ତୁ, କଲିଜିଏଟ୍ ସ୍କୁଲରୁ ଜଣେ ଶିକ୍ଷକ ଆସିଛନ୍ତି ।" ସେ ଟିକେ କୁଂଠାବୋଧ କରିବାରୁ ମୁଁ ଦୃଢ ଭାବରେ କହିଲି - "ଶୀଘ୍ର ଯାଆନ୍ତୁ, ଅପେକ୍ଷା କରିବାକୁ ମୋର ସମୟ ନାହିଁ ।" ଲୋକଟି ସଂତର୍ପଣରେ ଯାଇ ଜଣାଇଲା । ସଂଗେ ସଂଗେ ଆଇ.ଜି. ବାହାରି ଆସିଲେ । ତାଂକ ସଂଗରେ ପୁଲିସ ଅଫିସରମାନେ ମଧ୍ୟ ଆସିଲେ । ଦୁର୍ଗାମାଧବ ମିଶ୍ରଂକୁ ଚିହ୍ନିଲି । ସେ ସେତେବେଳେ ଏସ୍.ପି. ଥିଲେ । ତାଂକର ପୁଅଟିଏ କଲିଜିଏଟ୍‌ରେ ପଢୁଥିଲା । ଶ୍ରୀକାନ୍ତ ବାବୁ ହାତଯୋଡି ଗେଟ୍ ପାଖକୁ ଚାଲିଆସିଲେ । କହୁଥାଆନ୍ତି - "କ୍ଷମା କରିବେ, କ୍ଷମା କରିବେ । ଗୋପୀକାନ୍ତକୁ ଜର । ତିନିଦିନ ହେଲା ସ୍କୁଲକୁ ଯାଇନାହିଁ । ମୁଁ ହେଡମାଷ୍ଟରଂକୁ ଜଣାଇବାକୁ ଭୁଲିଯାଇଛି । ଆଉ ଦିନେ ଦୁଇଦିନ ପରେ ସ୍କୁଲକୁ ଯିବ ।" ଏହା କହି ସେ ମୋତେ ତାଂକ ବାସ ଗୃହର ବଂଗଳା (ଡ୍ରଇଂ ରୁମ)କୁ ପାଛୋଟି ନେଇ, ତୁରନ୍ତ ଅଭ୍ୟର୍ଥନାର ବ୍ୟବସ୍ଥା କରିବାକୁ କହି ଦେଇ ଅଫିସକୁ ଗଲେ ।

ଏ ଗୋଟିଏ ନମୁନା ମାତ୍ର । ପ୍ରାୟ ସବୁ ଅଭିଭାବକମାନଂକର ଶିକ୍ଷକମାନଂକ ପ୍ରତି ଏହିପରି ସମ୍ମାନବୋଧ ଥିଲା ।

ରେଭେନ୍‌ସା କଲିଜିଏଟ୍ ସ୍କୁଲର ଛାତ୍ରାବାସର ସହକାରୀ ପରିଚାଳକ ଭାବେ ମୁଁ ପାଂଚ ବର୍ଷ ଦାୟିତ୍ୱ ତୁଲାଇଥିଲି । ଚାକିରି କରିବା ପୂର୍ବରୁ ମୁଁ ଚାଷ କାମରେ ଅଭିଜ୍ଞ ଥିଲି । ତେଣୁ ଛାତ୍ରବାସ ମଝିରେ ପଡିଆ ପଡିଥିବା ଜାଗାରେ ପିଲାମାନଂକୁ ଲଗାଇ ଫସଲ କରାଇଲି । ବାଇଗଣ, ଶିମ୍ବ, କୋବି, ମୂଳା, ଶାଗ ପ୍ରଭୃତି ସହିତେ ବିଭିନ୍ନ ପ୍ରକାର ଫୁଲଗଛ ଛାତ୍ରାବାସ ବଗିଚାର ଶୋଭା ବର୍ଦ୍ଧନ କଲା । ବଗିଚାକାମ ସାରି ପିଲାମାନେ ଖେଳିବାକୁ ଯାଉଥିଲେ । ଯେଉଁସବୁ ପନିପରିବା ହେଉଥିଲା, ତାହା ଛାତ୍ରାବାସର ରୋଷେଇରେ ଲାଗୁଥିଲା । ଛାତ୍ରାବାସ ବାରଣ୍ଡାରେ ପ୍ରତିଦିନ ସଂଜବେଳେ ପ୍ରାର୍ଥନା କରାଯାଉଥିଲା । ଓଡିଆ କିଂବା ସଂସ୍କୃତ ଭାଷାର ପ୍ରାର୍ଥନାଗୀତ ମୁଁ ଆଗେ ବୋଲୁଥିଲି, ତା'ପରେ ପିଲାମାନେ ବୋଲୁଥିଲେ ।

ଟ୍ରେନିଂ ସ୍କୁଲରେ ଟ୍ରେଣ୍ଡ ଗ୍ରାଜୁଏଟ୍ ପଦରେ ନିଯୁକ୍ତି ପାଇଲା ପରେ ମଧ୍ୟ ମୁଁ କଲିଜିଏଟ୍ ସ୍କୁଲର ଛାତ୍ରାବାସର ସେହି କୋଠରୀରେ ରହିଥିଲି, ଯେଉଁଠି ଆଗରୁ ରହି ଆସିଥିଲି । ପୂର୍ବ ପରି ପିଲାମାନଂକୁ ବଗିଚା କାମ କରାଉଥିଲି ଏବଂ ସଂଧ୍ୟା ସମୟରେ ସମବେତ ପ୍ରାର୍ଥନା କରାଉଥିଲି । କଲିଜିଏଟ୍ ସ୍କୁଲକୁ ଏକ ଟ୍ରେଣ୍ଡ ମାଟ୍ରିକ୍ ପଦରେ ଶ୍ରୀ ସୁଧାକର ଦାଶ ଶିକ୍ଷକ ହୋଇ ଆସିଥିଲେ । ସେ ମୋ ସ୍ଥାନରେ ଛାତ୍ରାବାସର ସହକାରୀ

ପରିଚାଳକ ହେଲେ । ଆମେ ଦୁହେଁ ସେହି କୋଠରୀରେ ପ୍ରାୟ ଦଶ ବର୍ଷ ରହିଥିଲୁଁ । ମୁଁ କଲେଜକୁ ଅଧ୍ୟାପକ ହୋଇ ଯିବା ପର୍ଯ୍ୟଂତ ସୁଧାକର ବାବୁଂକ ସାହଚର୍ଯ୍ୟ ଲାଭ କରିଥିଲି । ସେ ଜଣେ କର୍ତ୍ତବ୍ୟ ପରାୟଣ, ସୁଦକ୍ଷ ଶିକ୍ଷକ ଥିଲେ । ଓଡିଆ ଭାଷା ସାହିତ୍ୟରେ ତାଂକର ଗଭୀର ଜ୍ଞାନ ଓ ପଢାଇବାରେ ଦକ୍ଷତା ଥିଲା । କଲିଜିଏଟ୍ ସ୍କୁଲର ପ୍ରତିବର୍ଷ ପୁରସ୍କାର ବିତରଣୀ ଉତ୍ସବରେ ତାଂକର ଭୂମିକା ମୁଖ୍ୟ ଥିଲା । ସେ ନିଜେ ନୃତ୍ୟ ନାଟିକା ଲେଖି ଅଭିନୀତ କରାଉଥିଲେ । ତାଂକର ନୃତ୍ୟନାଟିକା ଓ ମୋର ସଂସ୍କୃତ ଏକାଂକିକା ଖୁବ୍ ଆଦୃତ ହେଉଥିଲା । ସୁଧାକର ବାବୁ ଏମ୍.ଏ., ବି.ଇଡି. ପର୍ଯ୍ୟନ୍ତ ମୋ'ରି ଭଳି ଘରୋଇ ଉଦ୍ୟମରେ ଶିକ୍ଷାଲାଭ କରି ସେହି ସ୍କୁଲରେ ଟ୍ରେଣ୍ଡ ଗ୍ରାଜୁଏଟ୍ ପଦକୁ ପଦୋନ୍ନତି ପାଇ ଚାକିରି ଶେଷ ପର୍ଯ୍ୟଂତ ସେହି ସ୍କୁଲରେ ରହିଥିଲେ ।

ସ୍କୁଲ ଶିକ୍ଷକତାରେ ମୁଁ ଯେଉଁ ଆନନ୍ଦ ଲାଭ କରୁଥିଲି, ତାହା ସେହି ସମୟର ହିଁ ଅବଦାନ ବୋଲି କୁହାଯାଇପାରେ । ଇଂରେଜ ଶାସନ କାଳରୁ ଚାଲିଆସିଥିବା ଶୃଂଖଳା, ନୈତିକତା ଓ କର୍ତ୍ତବ୍ୟପରାୟଣତାର ଝଲକ ଆହୁରି ପ୍ରାୟ ପନ୍ଦର ବର୍ଷ ପର୍ଯ୍ୟନ୍ତ ରହିଥିଲା । କଲିଜିଏଟ୍ ସ୍କୁଲ ପାଖରେ ବର୍ତ୍ତମାନ ଯେଉଁ ଶିଶୁଭବନ, ତାହା ସେତେବେଳେ ରାଜଭବନ ଥିଲା । ଓଡିଶାର ରାଜ୍ୟପାଳ ସେଠାରେ ରହୁଥିଲେ । ରାଜ୍ୟପାଳ ଭୀମସେନ ସାଚାରଂକୁ ପ୍ରତିଦିନ ପ୍ରଭାତ ସମୟରେ ଏକାକୀ ନଈକୂଳକୁ ବୁଲିଯିବାର ମୁଁ ଦେଖିଛି । ସଂଗରେ ଅଂଗରକ୍ଷୀ କେହି ଯାଉନଥିଲେ । ରାସ୍ତା ଘାଟରେ ଭୟ, ଆତଂକ କିଛି ନଥିଲା । ନିସ୍ତବ୍ଧ ରାତିରେ ଲୋକମାନେ ଟ୍ରେନରୁ ଓହ୍ଲାଇ ଷ୍ଟେସନରୁ ହାତଟଣା ରିକ୍ସାରେ ଘରକୁ ଆସୁଥିଲେ । ଘୋଡା ଗାଡିର ବ୍ୟବହାର ଥିଲା । କଟକର ରାସ୍ତାସବୁ ବର୍ତ୍ତମାନ ପରି ଜନଗହଳି ନଥିଲା । ମୁଁ ଛାତ୍ରାବାସର ପିଲାମାନଂକୁ ବାଲିଯାତ୍ରା, ଝୁଲଣ ପୂର୍ଣ୍ଣିମା, ମହରମ, ସର୍କସ ଆଦି ଦେଖାଇବାକୁ ସଂଗରେ ନେଇ ଯାଉଥିଲି । ସେସମୟର ଅନୁଭୂତିକୁ ସ୍ମରଣ କଲେ ମନରେ ଆକୁଳ ଭାବ ଜାତ ହୁଏ ।

ମୁଁ କଟକ ସେକଣ୍ଡାରି ଟ୍ରେନିଂ ସ୍କୁଲରେ ଶିକ୍ଷକ ଥିଲାବେଳେ ଅଧ୍ୟକ୍ଷ ବୈଦ୍ୟନାଥ ରଥଂକ ପରିଚାଳନାରେ ଟ୍ରେନିଂ କଲେଜ ଓ ଟ୍ରେନିଂ ସ୍କୁଲ ସର୍ବଦା ପ୍ରାଣବନ୍ତ ଥିଲା । ପରେ ସେଠାରେ ଗୋଟିଏ ପ୍ରାକ୍‌ଟିସିଂ ବାଳିକା ହାଇସ୍କୁଲ ପ୍ରତିଷ୍ଠା ହୋଇଥିଲା । ନିଜେ ଅଧ୍ୟକ୍ଷ ରଥ ନାଟକ ଲେଖି ଅଭିନୀତ କରାଉଥିଲେ । ଟ୍ରେନିଂ ସ୍କୁଲ ୨ଟି ଶାଖା ହୋଇଗଲା । ପୁରୁଷ ଟ୍ରେନିଂ ସ୍କୁଲ ଓ ମହିଳା ଟ୍ରେନିଂ ସ୍କୁଲ । ମୁଁ ଉଭୟରେ ଓଡିଆ ଭାଷା ସାହିତ୍ୟ ପଢାଉଥିଲି । ଟ୍ରେନିଂ ସ୍କୁଲରେ ଓଡିଆ ଭାଷା ସାହିତ୍ୟ ଥିଲା ପ୍ରଧାନ ବିଷୟ । କଲେଜରେ ଆଇ.ଏ., ବି.ଏ. ସ୍ତରରେ ଯେଉଁ ମାନର ଓଡିଆ ଭାଷାସାହିତ୍ୟ

ପାଠ୍ୟ ଥିଲା, ଟ୍ରେନିଂ ସ୍କୁଲରେ ସେହି ମାନର ଓଡ଼ିଆ ଭାଷା ସାହିତ୍ୟ ପାଠ୍ୟ ଥିଲା । ପ୍ରଣୟବଲ୍ଲରୀ, ମହାଯାତ୍ରା, ଶର୍ମିଷ୍ଠା ଆଦି କାବ୍ୟ ମୁଁ ପଢାଉଥିଲି । ଗୁରୁଛାତ୍ରଛାତ୍ରୀମାନଂକର ଏପରି ଆଗ୍ରହ ଥିଲା ଯେ ମୋର ଅଧିକ ପଢି ଅଧିକ ଜ୍ଞାନ ଅର୍ଜନ କରିବାର ପ୍ରେରଣା ଜାତ ହେଉଥିଲା । ସେ ସମୟରେ ହାଇସ୍କୁଲମାନଂକରେ ସି.ଟି. ଟ୍ରେନିଂ ପ୍ରାପ୍ତ ଶିକ୍ଷକମାନେ ହିଁ ଓଡ଼ିଆ ଭାଷା ସାହିତ୍ୟ ପଢାଇବାକୁ ଅଧିକ ଯୋଗ୍ୟ ବିବେଚିତ ହେଉଥିଲେ ।

ଟ୍ରେନିଂ ସ୍କୁଲରେ ଗୁରୁଛାତ୍ରଛାତ୍ରୀମାନଂକର ଅଧ୍ୟୟନ ସାଂଗକୁ ଶିକ୍ଷାଦାନ କାର୍ଯ୍ୟ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଥିଲା । ସେମାନେ ଶିକ୍ଷାଦାନର ପ୍ରଣାଳୀ ଅବଲଂବନ କରୁଥିଲେ । ସେହି ପ୍ରଣାଳୀ ଶିଖୁଥିଲେ ନମୁନା କ୍ଲାସରୁ । ପ୍ରାୟ ସେପ୍ଟେମ୍ବର ମାସରୁ ନମୁନା (ଡିମନଷ୍ଟ୍ରେସନ) କ୍ଲାସ ଆରମ୍ଭ ହେଉଥିଲା । ପ୍ରତି ବର୍ଷ ମୁଁ ଡିମନଷ୍ଟ୍ରେସନ କ୍ଲାସ ଆଗ ନେଉଥିଲି । ମୋର ଡିମନଷ୍ଟ୍ରେସନ କ୍ଲାସରେ ଟ୍ରେନିଂ ସ୍କୁଲ ତଥା କଲେଜର ଗୁରୁଛାତ୍ରଛାତ୍ରୀମାନେ ବିଭିନ୍ନ ପ୍ରଶ୍ନ ପଚାରୁଥିଲେ ଏବଂ ମୁଁ ତାହାର ଉତ୍ତର ଦେଉଥିଲି । ମୁଁ ଥରେ ପଂଚମ ଶ୍ରେଣୀ ପିଲାଂକୁ ଡିମନଷ୍ଟ୍ରେସନ କ୍ଲାସରେ ଓଡ଼ିଆ ବ୍ୟାକରଣର ଉପସର୍ଗ ବିଷୟ ପଢାଇଥିଲି । କ୍ଲାସକୁ ମେଂଚାଏ ହଳଦୀ ଓ ମେଂଚାଏ ଚୂନ ନେଇଥିଲି । ଦୁଇ ପଦାର୍ଥକୁ ମିଶାଇଦେବା ଫଳରେ ଲାଲ ରଂଗ ହୋଇଗଲା । ମୁଁ ତାହାର ନଜିର ଦେଇ ପ୍ର/ହାର, ବି/ହାର, ଆ/ହାର, ଉପ/ହାର ପ୍ରଭୃତି ଶବ୍ଦରେ ଉପସର୍ଗ ଯୋଗରେ କିପରି ଅର୍ଥ ପରିବର୍ତ୍ତନ ହେଉଛି, ତାହା ଦର୍ଶାଇଥିଲି । ତାହା ଛୋଟ ଛୋଟ ପିଲାଂକ ମନକୁ ଚମତ୍କାର ବୋଧ ହୋଇଥିଲା ଓ ଉପସର୍ଗଗୁଡ଼ିକ ବିଷୟରେ ସେମାନେ ବେଶ୍ ବୁଝିପାରିଥିଲେ ।

ସେକଣ୍ଡାରି ଟ୍ରେନିଂ ସ୍କୁଲରେ ପଢିବା ଓ ପଢାଇବାର ବାତାବରଣ ଏପରି ଥିଲା ଯେ ସେହି ଚାରି ବର୍ଷ ଭିତରେ ମୁଁ ନିଜେ ଅଧ୍ୟୟନ କରି ଓଡ଼ିଆରେ ଏମ୍.ଏ.ପରୀକ୍ଷା ଦେଇଥିଲି । ଓଡ଼ିଆ ଏମ୍.ଏ. ରେ ମୋର ପ୍ରଥମ ଶ୍ରେଣୀକୁ ତିନି ନମ୍ବର ମାତ୍ର କମ୍ ରହିଲା । ମନ ଖରାପ ହେବାରୁ ପୁଣି ସଂସ୍କୃତରେ ଏମ୍.ଏ. ପରୀକ୍ଷା ଦେଇ ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀ ପ୍ରଥମ ହେଲି । କିଂତୁ ଘରୋଇ ଭାବରେ ପରୀକ୍ଷା ଦେଇଥିବାରୁ ମୋତେ ସ୍ୱର୍ଣ୍ଣପଦକ ମିଳିନଥିଲା ।

ସେ ସମୟରେ ଉତ୍କଳ ବିଶ୍ୱ ବିଦ୍ୟାଳୟ ପକ୍ଷରୁ ରେଭେନ୍‌ସା କଲେଜରେ ସାଂଧ କଲେଜ ଖୋଲାଯାଇଥିଲା । ମୁଁ ଓଡ଼ିଆରେ ଏମ୍.ଏ. କରିବା ପରେ ଏବଂ ସଂସ୍କୃତରେ ଏମ୍.ଏ. କରିବା ପୂର୍ବରୁ ସାଂଧ କଲେଜରେ ଓଡ଼ିଆ ଅଧ୍ୟାପକ ପଦ ପାଇଁ ଆବେଦନ କରିଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସ୍‌ରେ ଇଂଟରଭ୍ୟୁ ହୋଇଥିଲା । କୁଳପତି ଥିଲେ ଡକ୍‌ଟର ପ୍ରାଣକୃଷ୍ଣ ପରିଜା । ସେ ମୋତେ 'ବୈଦେହୀଶ ବିଳାସ'ର "ବିଭୂଷଣ ପୁଷ୍ପେ

ଯା କାନ୍ତି ଜାଣ" ଛାନ୍ଦ ଅର୍ଥ କରି ବୁଝାଇବାକୁ କହିଲେ । ମୁଁ ପ୍ରାଂଜଳଭାବରେ ମୂଳ କେତେ ପଦ ଗାଇ ବୁଝାଇଲି । ଇଂଟରଭ୍ୟୁରେ ବସିଥିବା ସମସ୍ତ ସଭ୍ୟ ଖୁସି ହେଲେ । ରେଭେନ୍‌ସା ସାଂଧ କଲେଜରେ ମୋତେ ଓଡିଆ ଅଧ୍ୟାପକ ପଦରେ ନିଯୁକ୍ତି ମିଳିଲା । ମୁଁ ବହୁତ ଚିନ୍ତା କଲି । ଟ୍ରେନିଂ ସ୍କୁଲରେ ରହି ସଂସ୍କୃତ ଏମ୍.ଏ. ପରୀକ୍ଷା ଦେବି ଏବଂ ତା'ପରେ କଲେଜ ଅଧ୍ୟାପକ ହେବି ବୋଲି ସ୍ଥିର କରି ସାଂଧ କଲେଜରେ ଯୋଗ ଦେଲି ନାହିଁ । ତା'ପରେ ସଂସ୍କୃତରେ ପ୍ରଥମ ଶ୍ରେଣୀ ପ୍ରଥମ ହେବାରୁ ଡି.ପି.ଆଇ. ମୋତେ ସୁନ୍ଦରଗଡ କଲେଜକୁ ସଂସ୍କୃତ ଅଧ୍ୟାପକ ପଦରେ ଆଡହକ ନିଯୁକ୍ତି ଦେଲେ । ମୁଁ କଲିଜିଏଟ୍ ସ୍କୁଲରୁ ଏବଂ ଟ୍ରେନିଂ ସ୍କୁଲରୁ ବିଦାୟ ନେଲାବେଳେ ପିଲାମାନେ ଯେପରି ଭାବାବେଗରେ ବିଦାୟ ଦେଇଥିଲେ ଏବଂ ମୁଁ ଯେପରି ଭାବାବେଗ ଅନୁଭବ କରିଥିଲି, ତାହା ଏପର୍ଯ୍ୟନ୍ତ ମୋ ସ୍ମୃତିରେ ଅଲିଭା ରହିଛି ।

କଲିଜିଏଟ୍ ଓ ଟ୍ରେନିଂ ସ୍କୁଲର ଛାତ୍ରଛାତ୍ରୀମାନଙ୍କର ଗୁଣ ହିଁ ମୋତେ ଅଧିକ ଅଧିକ ପାଠ ପଢିବା ପାଇଁ ଏବଂ ଉଚ୍ଚତର ଶିକ୍ଷକ ପଦକୁ ଯିବାପାଇଁ ପ୍ରେରଣା ଦେଇଥିଲା । ମୋର ଅନୁଭବ, ଶିକ୍ଷକମାନଙ୍କର ଗୁଣ ଯେପରି ଛାତ୍ରଛାତ୍ରୀମାନଙ୍କୁ ପ୍ରଭାବିତ କରେ, ଛାତ୍ରଛାତ୍ରୀମାନଙ୍କର ଗୁଣ ସେହିପରି ଶିକ୍ଷକମାନଙ୍କୁ ପ୍ରଭାବିତ କରେ । ଉକ୍ତ ଦୁଇ ସ୍କୁଲର ସେ ସମୟର ଛାତ୍ରଛାତ୍ରୀମାନଙ୍କ ନିକଟରେ ମୁଁ ଋଣୀ । କାରଣ ସେମାନଙ୍କ ସଂପର୍କରେ ଆସି ନ ଥିଲେ ମୋ ଜୀବନରେ ଯେତିକି ଉନ୍ନତି ସାଧିତ ହୋଇଛି, ତାହା ହୋଇପାରି ନ ଥାଆନ୍ତା । ବିଭିନ୍ନ କଲେଜର କେତେକ ଛାତ୍ରଛାତ୍ରୀଙ୍କ ଗୁଣ ମଧ୍ୟ ମୋତେ ପ୍ରେରଣା ଦେଇଥିଲା ।

୨୦୦୨ ମସିହାରେ ଜଷ୍ଟିସ୍ ରାଜକିଶୋର ଦାସ ସ୍ମୃତି କମିଟି ପକ୍ଷରୁ କଟକ ଶହୀଦ ଭବନରେ ଏକ ସଭା ହୋଇଥିଲା । ସେଥିରେ ମୋତେ ମୋର ସାହିତ୍ୟସେବା ନିମନ୍ତେ ସମ୍ମାନିତ କରାଯାଇଥିଲା । ମୁଖ୍ୟ ଅତିଥି ଭାବେ ଆସିଥିଲେ ସୁପ୍ରିମ କୋର୍ଟର ବିଚାରପତି ଶ୍ରୀମାନ୍ ଅରିଜିତ୍ ପଶାୟତ । ମୁଁ କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲାବେଳେ ସେ ସେଠାରେ ପଢୁଥିଲେ । ସେ ମୋତେ ଯେତେବେଳେ ଉତ୍ତରୀୟ ପିନ୍ଧାଇ ସମ୍ମାନିତ କଲେ, ଆବେଗରେ କାନ୍ଦିବାକୁ ଲାଗିଲେ । ଭରପୂର ସଭା ନିସ୍ତବ୍ଧ ହୋଇଗଲା । ଶିକ୍ଷକ ଜୀବନର ଗୌରବବୃଦ୍ଧିର କାରଣ ହେଉଛନ୍ତି ଛାତ୍ରଛାତ୍ରୀମାନେ । କିନ୍ତୁ ଦୁଃଖର କଥା, ବର୍ତ୍ତମାନ ଶିକ୍ଷକମାନଙ୍କର ପ୍ରଭାବ ଛାତ୍ରଛାତ୍ରୀମାନଙ୍କ ଉପରେ କିମ୍ବା ଛାତ୍ରଛାତ୍ରୀମାନଙ୍କ ପ୍ରଭାବ ଶିକ୍ଷକମାନଙ୍କ ଉପରେ ଆଉ ପଡୁନାହିଁ କହିଲେ ଚଳେ ।



# ସରସ୍ୱତୀଙ୍କ ଅବତାର

୧୯୬୧ କିମ୍ୱା ୧୯୬୨ ମସିହା କଥା । 'ସମାଜ' ତଥା 'ପ୍ରଜାତନ୍ତ୍ର'ରେ ବାହାରିଲା ଯେ ହିମାଳୟ ଆଡୁ ଜଣେ ବୃଦ୍ଧ ସାଧୁ ଏକ ତେର ବର୍ଷର ବାଳିକା ଶିଷ୍ୟାକୁ ଘେନି କଟକ ଆସିଛନ୍ତି । ବାଳିକାଟି ବେଦବେଦାନ୍ତ ଉପନିଷଦ୍ ଆଦି ଶାସ୍ତ୍ରରେ ଏପରି ପାରଦର୍ଶିନୀ ଯେ ତାଙ୍କୁ ଯିଏ ଯାହା ପଚାରିବେ, ସେ ତାହାର ଉତ୍ତର ଦେଇ ପାରିବେ । ଏପରିକି କୌଣସି ମନ୍ତ୍ର, ସୂକ୍ତ କିମ୍ୱା ତଥ୍ୟ କେଉଁଠି ଅଛି ପଚାରିଲେ କହିଦେଇ ପାରିବେ । ବାଳିକାଟି ସ୍ୱୟଂ ସରସ୍ୱତୀଙ୍କ ଅବତାର ବୋଲି କୁହାଯାଉଥାଏ । ସାଧୁଙ୍କୁ ଓ ବାଳିକାଟିକୁ ସମ୍ବର୍ଦ୍ଧନା ଜ୍ଞାପନ କରିବା ଉଦ୍ଦେଶ୍ୟରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଏକ ସଭା ଅନୁଷ୍ଠିତ ହେବା ପାଇଁ ଦିନ ଧାର୍ଯ୍ୟ କରାଯାଇଥାଏ ।

ମୁଁ ସେ ସମୟରେ କଟକ ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ ଟ୍ରେଣ୍ଡ ଗ୍ରାଜୁଏଟ୍ ପଦରେ ଶିକ୍ଷକ ଥିଲି । ସମ୍ବାଦପତ୍ରରୁ ଓ ଲୋକମୁଖରୁ ଏଭଳି ଶୁଣିବାକୁ ପାଇଲି ଯେ କୌତୂହଳ ବଶତଃ ସେହି ସଭାରେ ଯୋଗ ଦେବାକୁ ଆଗ୍ରହ ଅନୁଭବ କଲି । ମୋ ସଙ୍ଗରେ ଟ୍ରେନିଂ ସ୍କୁଲ୍‌ର କେତେଜଣ ଛାତ୍ର ମଧ୍ୟ ଗଲେ । ଆମେ ପ୍ରାୟ ଅଧଘଣ୍ଟା ପୂର୍ବରୁ ଶ୍ରୀରାମଚନ୍ଦ୍ର ଭବନରେ ପହଞ୍ଚିଲୁ, ତଥାପି ସେତେବେଳକୁ ସଭାଗୃହ ପରିପୂର୍ଣ୍ଣ ହୋଇଯାଇଥିଲା । ଆମେ ଗୋଟିଏ ଦ୍ୱାରମୁହଁରେ ବାରଣ୍ଡାରେ ଠିଆ ହେଲୁ, ସଂପୂର୍ଣ୍ଣ ନୀରବତା ଭିତରେ ସଭାକାର୍ଯ୍ୟ ଆରମ୍ଭ ହେଲା । ସଭାପତି ହେଲେ ପଣ୍ଡିତ ନୀଳକଣ୍ଠ ଦାସ ଏବଂ ଅତିଥି 'ସମାଜ' ସଂପାଦକ ରାଧାନାଥ ରଥ । ମଞ୍ଚ ଉପରେ ସାଧୁ ମହାଶୟ ଓ ସେହି ତେରବର୍ଷର ବାଳିକାଟି ମଧ୍ୟ ବସିଲେ ।

ସଭାର ଆବାହକ ବା ଆୟୋଜକ କିଏ ଥିଲେ ମୋର ସ୍ପଷ୍ଟ ଭାବେ ମନେ ପଡୁନାହିଁ, ବୋଧହୁଏ ଜଣେ ଅଣଓଡ଼ିଆ ଲୋକ ଥିଲେ । ସାଧୁ ହିମାଳୟରେ ରହନ୍ତି ଓ ବାଳିକାଟି

ସରସ୍ୱତୀଙ୍କ ଅବତାର ରୂପେ ସାଧୁଙ୍କର ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି ବୋଲି କହିଲେ । ଏଭଳି ପ୍ରାଥମିକ ସୂଚନା ପରେ ସରସ୍ୱତୀରୂପିଣୀ ବାଳିକାଟିର ପାଣ୍ଡିତ୍ୟ ପରୀକ୍ଷା କରାଯିବାର କାର୍ଯ୍ୟକ୍ରମ ଆରମ୍ଭ କରାହେଲା । ସଭା ଭିତରୁ କେହି ଜଣେ ଋଗ୍‌ବେଦର ଅମୁକ ମଣ୍ଡଳର ଅମୁକ ସୂକ୍ତ କୁହନ୍ତୁ ବୋଲି ପଚାରିଲା । ବାଳିକାଟି ସଂଗେସଂଗେ କହିଦେଲା । କେହି ଯଜୁର୍ବେଦରୁ ପଚାରିଲା, କେହି ସାମବେଦରୁ କେହି ବା କୌଣସି ଉପନିଷଦ୍‌ରୁ ପଚାରିଲା, ବାଳିକାଟି ସଙ୍ଗେ ସଙ୍ଗେ ସବୁର ଉତ୍ତର ଦେଇଦେଲା । କେହି କେହି କୌଣସି ପ୍ରସଙ୍ଗର ତତ୍ତ୍ୱ ବୁଝାଇବା ପାଇଁ କହିଲେ । ବାଳିକାଟି ହିନ୍ଦୀ ଭାଷାରେ ବୁଝାଇଲା । କେବଳ ହିନ୍ଦୀ ଭାଷାରେ ପଚାରିବାକୁ ଶ୍ରୋତାମାନଙ୍କୁ ଆଗରୁ ଅନୁରୋଧ କରାଯାଇଥିଲା । ଏହିପରି ଭାବରେ ସାତଆଠଜଣ ଲୋକ ସଭା ମଧ୍ୟରୁ ପ୍ରଶ୍ନ ପଚାରିଲେ । ବାଳିକାଟି ସମସ୍ତଙ୍କର ଉତ୍ତର ଦେଲା । ରାଧାନାଥ ରଥ ବାଳିକାଟିର ଅଦ୍‌ଭୁତ ବିଦ୍ୱତ୍ତା ଓ ଜ୍ଞାନରେ ଅଭିଭୂତ ହୋଇ ତାକୁ ସରସ୍ୱତୀଙ୍କ ଅବତାର ବୋଲି ବର୍ଣ୍ଣନା କଲେ ଏବଂ ମୁକ୍ତ କଣ୍ଠରେ ତା'ର ପ୍ରଶଂସା ଗାନ କରିବାକୁ ଲାଗିଲେ । ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା ମଧ୍ୟ ସଭା ମଧ୍ୟରୁ ଉଠିଯାଇ ତା ସମ୍ମୁଖରେ ଠିଆ ହୋଇ ସରସ୍ୱତୀଙ୍କ ବନ୍ଦନା ଗାଇଲେ ।

ଶେଷରେ ଉଠିଲେ ସଭାପତି ପଣ୍ଡିତ ନୀଳକଣ୍ଠ ଦାସ ।

ସେ ସେତେବେଳକୁ କ୍ରୋଧରେ ଥରୁଥାନ୍ତି । ତୀବ୍ର ବିରକ୍ତିର ସହିତ ଭର୍ତ୍ସନା କରି କହିଲେ - "ଆମେ ଏଭଳି ଲୀଳା ବହୁତ ଦେଖିଛୁ । ଗୋଟାଏ ବାଳିକାକୁ ଶୁଆ ଭଳି ଘୋଷାଇ ଘୋଷାଇ ଭେଲିକି ଦେଖାଉଛନ୍ତି । ଏ ଭେଲିକି କାହାର କି ଉପକାରରେ ଲାଗିବ ? ପିଲାଟାକୁ ଘୋଷାଇ ଘୋଷାଇ କ୍ଷୀଣଶରୀରା କରିଛନ୍ତି, ଏ ସାଧୁ ଜଣେ ଅପରାଧୀ । ହିମାଳୟ ସାଧୁ ତ ହିମାଳୟରେ ରହିବେ, କଟକ ଆସିଛନ୍ତି କାହିଁକି ?" ଇତ୍ୟାଦି ।

ପ୍ରକୃତରେ ବାଳିକାଟି କ୍ଷୀଣଶରୀରା ଓ ରୋଗିଣା ଦେଖା ଯାଉଥିଲା (ତା'ର ସ୍ଫୂର୍ତ୍ତି ପରିଲକ୍ଷିତ ହେଉ ନଥିଲା ।) ପଣ୍ଡିତ ନୀଳକଣ୍ଠ ସାଧୁଙ୍କ ଉପରେ ମଧ୍ୟ ବାକ୍ୟବାଣ ବର୍ଷିଲେ । ସଭାର ଆୟୋଜକ, ଅତିଥି ଓ ଶ୍ରୋତାବୃନ୍ଦ କେହି ତାଙ୍କ ତୀବ୍ର ଭର୍ତ୍ସନାରୁ ଛାଡ଼ ପାଇଲେ ନାହିଁ । ରାଧାନାଥ ରଥ ବଡ଼ ବ୍ୟତିବ୍ୟସ୍ତ ଭାବରେ ତାଙ୍କୁ ବୁଝାଇ ସୁଝାଇ ବସାଇଲେ । ସାଧୁ ଅପମାନ ବୋଧକରି ଶିଷ୍ୟା ବାଳିକାଟିକୁ ନେଇ ମଞ୍ଚ ଉପରୁ ଚାଲିଗଲେ ।

ସଭା ଭଙ୍ଗ ହେଲା ।

ମୁଁ ଲକ୍ଷ୍ୟ କରିଥିଲି, ପଣ୍ଡିତ ନୀଳକଣ୍ଠଙ୍କର ଭର୍ତ୍ସନାକୁ କେତେକ ଶ୍ରୋତା ଯୁକ୍ତିଯୁକ୍ତ ମନେ କରିଥିଲେ, ଆଉ କେତେକ ବାଳିକାଟିର ଅଲୌକିକ ସ୍ମରଣଶକ୍ତିକୁ ପ୍ରଶଂସା କରିଥିଲେ । ତେବେ ପ୍ରକୃତରେ କଅଣ ଠିକ୍ ଥିଲା, ମୁଁ ତାହା ନିର୍ଣ୍ଣୟ କରି ପାରି ନ ଥିଲି, ଏବେ ମଧ୍ୟ କରିପାରୁ ନାହିଁ ।



# ସମାଜ ସାମାଜ୍ୟ

ମୁଁ ରେଭେନ୍ସା କଲେଜରୁ ସ୍ୱଇଛାରେ ଅବସର ନେଲାପରେ ଏବଂ କଟକ ସିଟି କଲେଜର ଅଧ୍ୟକ୍ଷ ଦାୟିତ୍ୱ ନେବା ପୂର୍ବରୁ ଦିନେ 'ସମାଜ' ଅଫିସ୍‌କୁ ଯାଇଥିଲି । ଅଫିସ ଭିତରେ ଜଣେ ବଂଧୁଙ୍କ ସହିତ ବ୍ୟକ୍ତିଗତ କଥାବାର୍ତ୍ତା ହୋଇ ଫେରିବା ବେଳକୁ ଜଣେ ସୌମ୍ୟଦର୍ଶନ ପ୍ରୌଢ ବ୍ୟକ୍ତିଙ୍କୁ ବସିଥିବାର ଦେଖିଲି । ସେ ଥିଲେ 'ସମାଜ'ର ଜେନେରାଲ ମ୍ୟାନେଜର ଶ୍ରୀ ପଦାରବିନ୍ଦ ମହାପାତ୍ର । ତାଙ୍କ ଉପରେ ମୋର ଦୃଷ୍ଟି ପଡ଼ିବା ମାତ୍ରେ ତାଙ୍କ ପାଖରେ ଟିକେ ବସିବାକୁ ମୋର ଇଛା ହେଲା । ମୁଁ ନମସ୍କାର କରି ନାମଟି କହିଲି । ସେ ସଂଗେ ସଂଗେ ହସହସ ତଥା ନମ୍ର ଭାବରେ ମୋତେ ବସିବାକୁ କହିଲେ । ବୋଧହୁଏ ସେ ମୋର ସ୍ୱେଛାକୃତ ଅବସର ଗ୍ରହଣ କଥା ଜାଣିଥିଲେ । କାରଣ ସେ ବିଷୟରେ ସମାଜରେ ଛୋଟ ସମ୍ୱାଦଟିଏ ବାହାରିଥିଲା । ପଦାରବିନ୍ଦ ବାବୁଙ୍କ ପତ୍ନୀ ଶ୍ରୀମତୀ ମନୋରମା ମହାପାତ୍ର ମଧ୍ୟ ରେଭେନ୍ସା କଲେଜରୁ ସ୍ୱେଛାରେ ଅବସର ଗ୍ରହଣ କରିସାରିଥିଲେ । ମୋର ବହୁତ ଲେଖା ସମାଜରେ ପ୍ରକାଶ ପାଉଥିଲା । ସେତେବେଳକୁ ସମାଜରୁ ତିନିଜଣ ସୁଦକ୍ଷ ବ୍ୟକ୍ତି ଅବସର ଗ୍ରହଣ କରିସାରିଥିଲେ । ସେମାନେ ଥିଲେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀ, ଶ୍ରୀ ଭଗବାନ ପତି ଓ ଶ୍ରୀ ବାଞ୍ଛାନିଧି ଦାସ । ସମାଜରେ ବୋଧହୁଏ ସେତେବେଳେ ସାହିତ୍ୟିକ ଲୋକ ଦରକାର ହେଉଥିଲେ । ତେଣୁ ପଦାରବିନ୍ଦ ବାବୁ ମୋତେ ସମାଜରେ କାମ କରିବା ପାଇଁ ଅନୁରୋଧ ଜଣାଇଲେ । ମୋର ଆଉ ପରାଧୀନତା ବରଣ କରିବାକୁ ଯଦିଓ ଇଛା

ନଥିଲା, ତଥାପି ପଦାରବିନ୍ଦବାବୁଙ୍କ ସୌଜନ୍ୟପୂର୍ଣ୍ଣ ଆଚରଣ ମୋତେ ସତେ ଯେପରି ବଶୀଭୂତ କରିଦେଲା । ମୁଁ ସ୍ୱୀକୃତି ଦେଇଆସିଲି । ମୋ ବଡ଼ଭାଇ ସେତେବେଳେ କର୍କଟ ରୋଗରେ ଆକ୍ରାନ୍ତ ହୋଇ ମୋ ପାଖରେ ରହି ଚିକିତ୍ସିତ ହେଉଥାନ୍ତି । ଗାଁରେ ମାଆ ପାରାଲିସିସ୍‌ରେ ଅଚଳ ହୋଇ ପଡ଼ିଥାନ୍ତି । କିଛି ଖର୍ଚ୍ଚ ତୁଲାଇବା ଆଶାରେ ମଧ୍ୟ ସମାଜରେ କାମ କରିବାକୁ ଉଚିତ ମନେକଲି ।

ସମାଜରେ ମୋତେ ଯୋଡ଼ିଏ ଦାୟିତ୍ୱ ଦିଆଯାଇଥିଲା । ଗୋଟିଏ ହେଲା, ପ୍ରତିଦିନ ଡ଼ାକରେ ଯେତେ ସଂବାଦ ଆସୁଥିଲା, ସେଗୁଡ଼ିକୁ ତନଖି କରି ସଂପାଦନା ଟେବୁଲକୁ ପଠାଇବା ଏବଂ ଅନ୍ୟଟି ହେଲା ସାପ୍ତାହିକ ସାହିତ୍ୟ ପୃଷ୍ଠା ପାଇଁ ତଥା ଅନ୍ୟାନ୍ୟ ଉଦ୍ଦେଶ୍ୟରେ ଆସୁଥିବା ଲେଖାଗୁଡ଼ିକୁ ବାଛି ସଂକଳନ କରିବା ।

ମୁଁ ପ୍ରତିଦିନର କାମ ସାରି ଆସିଲାବେଳକୁ ପଦାରବିନ୍ଦବାବୁଙ୍କ ପାଖଦେଇ ଏବଂ କିଛି ଆଳାପ କରି ଆସୁଥିଲି । ମୁଁ ଲକ୍ଷ୍ୟ କରିଛି, ପଦାରବିନ୍ଦବାବୁ କାହାକୁ ଟିକେହେଲେ ଉଚ୍ଚସ୍ୱରରେ କହୁନଥିଲେ । କହୁଥିଲେ ଧୀର ଶାନ୍ତ ଭାବରେ । ଚାଲିଗଲାବେଳେ କାହାକୁ ନ ଚାହିଁ ତଳକୁ ଚାହିଁ ଚାଲିଯାଉଥିଲେ । କିନ୍ତୁ ଅଫିସ ଭିତରେ ଥିଲା ସଂପୂର୍ଣ୍ଣ ନୀରବତାର ବାତାବରଣ । ଦିନକର କଥା । ୧୯୨୨ ମସିହାରେ ଘଟିଥିବା କନିକା ଆନ୍ଦୋଳନ ବିଷୟରେ ଗୋଟିଏ ଲେଖା ସମାଜରେ ପ୍ରକାଶ ପାଇଁ ଆସିଥିଲା । ଉତ୍କଳମଣି ଗୋପବଂଧୁ ସେହି ଆନ୍ଦୋଳନ ସହିତ ସଂପୃକ୍ତ ଥିଲେ । ତେଣୁ ମୁଁ ଲେଖାଟିକୁ ପ୍ରକାଶ କରିବା ପାଇଁ ଉଚିତ ମନେକଲି । ଲେଖାଟି ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଅର୍ଥାତ୍ ଅପ୍ରେଲ ମାସ ୨୩ ତାରିଖ ଦିନ ପ୍ରକାଶ ପାଇବା ଉଦ୍ଦିଷ୍ଟ ଥିଲା । ମୁଁ ଲେଖାଟିକୁ ଆବଶ୍ୟକ ସଂକଳନ କରି ପ୍ରେସ୍‌କୁ ପଠାଇଦେଲି । କେହି ଜଣେ ସଂପାଦକଙ୍କୁ (ରାଧାନାଥ ରଥଙ୍କୁ) ଜଣାଇଲେ ଯେ ଲେଖା ଉପରେ ସଂପାଦକଙ୍କର ସ୍ୱାକ୍ଷର ନାହିଁ ଏବଂ ତାଙ୍କୁ ଉସୁକାଇ କହିଦେଲେ ଯେ ମୁଁ ସ୍ୱଇଚ୍ଛାରେ ଲେଖା ବାଛିବାର ବାଟ ଧରିଲିଣି । ସଂପାଦକ ମୋତେ ଡ଼କାଇଲେ ଏବଂ ପ୍ରେସ୍‌କୁ ପଠାଇବା ପୂର୍ବରୁ ତାଙ୍କ ସ୍ୱାକ୍ଷର କରାଇ ନେବାକୁ କହିଲେ । ମୁଁ ସବୁଥର ତାଂକର ସ୍ୱାକ୍ଷର କରାଇଆଣୁଥିଲି, କିନ୍ତୁ ସେହି ଥରଟି କରାଇ ପାରି ନଥିଲି । କାରଣ ସେ କୌଣସି ସଭାକୁ ଚାଲିଯାଇଥିଲେ । ମୁଁ ଆଉ 'ସମାଜ' ଅଫିସକୁ ଗଲି ନାହିଁ । ପଦାରବିନ୍ଦ ବାବୁ ଟେଲିଫୋନରେ ଅନୁରୋଧ କଲେ । ମୁଁ କିନ୍ତୁ ନମ୍ରତାର ସହିତ କ୍ଷମା ମାଗିନେଲି । ସେ ଦୁଃଖିତ ହେଲେ । ସେ ଥର ମୁଁ ସମାଜରେ କାମ କରିଥିଲି ପ୍ରାୟ ଏକବର୍ଷ । ପଦାରବିନ୍ଦ ବାବୁ ସୌଜନ୍ୟ, ଉଦାରତା ଓ ନମ୍ରତାର ପ୍ରତିମୂର୍ତ୍ତି ଥିଲେ ।

ପ୍ରଚଣ୍ଡ ମହାବାତ୍ୟାପରେ ୨୦୦୦ ମସିହା ଫେବୃୟାରୀ ମାସରେ ଦିନେ ସମାଜ ଅଫିସରେ ରିଲିଫ୍ ବିଷୟ ନେଇ ଗୋଟିଏ ସଭା ଆହୂତ ହୋଇଥିଲା । କେନ୍ଦ୍ରମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ଓଡ଼ିଶାର ମନ୍ତ୍ରୀ ଶ୍ରୀ କାହ୍ନୁଚରଣ ଲେଙ୍କା, ପୂର୍ବତନ ରାଜ୍ୟପାଳ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ଏବଂ କଟକର ବହୁ ବିଶିଷ୍ଟ ଲୋକ ସେଥିରେ ଯୋଗ ଦେଇଥିଲେ । ମୋ ଗାଁରେ ବାଳିକା ହାଇସ୍କୁଲଟି ବାତ୍ୟାରେ ନିତାନ୍ତ କ୍ଷତିଗ୍ରସ୍ତ ହୋଇଥିଲା । ତେଣୁ ଅନୁଷ୍ଠାନଟି ପାଇଁ କିଛି ସାହାଯ୍ୟ ମିଳିବାର ଆଶା ନେଇ ମୁଁ ମଧ୍ୟ ସେଠାକୁ ଯାଇଥିଲି । ବୈଠକ ପରେ ଫେରିବା ବେଳକୁ ସମାଜର ପ୍ରକାଶକ ଓ ମୁଦ୍ରାକର ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀଙ୍କ ସହ ଦେଖାହେଲା । ତ୍ରିପାଠୀ ବାବୁ ମୋତେ ପାଖକୁ ଡ଼ାକି ସମାଜ ପାଇଁ କିଛି ସମୟ ଦେଇପାରିବେ କି ବୋଲି ପଚାରିଲେ । ମୁଁ ରାଜି ହେବାରୁ ସେ ମୋତେ ଗୋଟିଏ ଦରଖାସ୍ତ ଲେଖି ପଠାଇବାକୁ ପରାମର୍ଶ ଦେଲେ ।

ମୁଁ ଘରକୁ ଆସି ଦୁଇତିନି ଦିନ ପରେ ଦରଖାସ୍ତଟିଏ ତାଂକ ପାଖକୁ ପଠାଇଦେଲି । ପ୍ରାୟ ମାସେ ପରେ ଲୋକସେବକ ମଣ୍ଡଳର ସେକ୍ରେଟାରୀ ଶ୍ରୀ ସତ୍ୟପାଳଙ୍କଠାରୁ ଏକ ନିଯୁକ୍ତି ପତ୍ର ପାଇଲି । 'ଚିଫ୍ ନିଉଜ୍ ଏକ୍‌ଜାମିନର୍' ନାମକ ପଦରେ (ବୋଧହୁଏ ଗୋଟିଏ ନୂଆ ପଦ କରାଯାଇଥିଲା) କାର୍ଯ୍ୟ କରିବାକୁ ମୋତେ ନିଯୁକ୍ତି ଦିଆଯାଇଥିଲା । କିନ୍ତୁ ସେତେବେଳକୁ ସମାଜ ଅନୁଷ୍ଠାନର ଆଭ୍ୟନ୍ତରୀଣ ବିଶୃଙ୍ଖଳା ଚରମ ସୀମାରେ ପହଂଚିଥିଲା ବୋଲି ମୋତେ ଆଦୌ ଜଣା ନଥିଲା । ମୁଁ ସମାଜକୁ ଯାଇ କାର୍ଯ୍ୟାରମ୍ଭ କଲି, କିନ୍ତୁ କର୍ମଚାରୀ ଗୋଷ୍ଠୀ ଓ ପରିଚାଳନା ଗୋଷ୍ଠୀ ମଧ୍ୟରେ ପ୍ରକାଶ୍ୟ ବିବାଦ ଆରମ୍ଭ ହୋଇଗଲା ଏବଂ କର୍ମଚାରୀ ଗୋଷ୍ଠୀ ଆନ୍ଦୋଳନ କଲେ । ପରସ୍ପର ବିରୁଦ୍ଧରେ ବିଭିନ୍ନ କୁତ୍ସାରଟନା ହେଲା । ସେଭଳି ଅଶାନ୍ତି ପୂର୍ଣ୍ଣ ବାତାବରଣ ଭିତରେ କାର୍ଯ୍ୟ କରିବାକୁ ମୋର ଆଦୌ ଇଚ୍ଛା ହେଲାନାହିଁ । ତେଣୁ ମୁଁ ଆଉ ସେଠାକୁ ଗଲିନାହିଁ ।

ସମାଜରେ ମୋର ଦୁଇଥର ରହିବା ଭିତରେ ଅନୁଭୂତି ହୋଇଥିଲା ଯେ ତାହାର ନାମ ଥିଲା 'ସମାଜ', କିନ୍ତୁ ପ୍ରକୃତରେ ତା'ଭିତରେ ସାମାଜ୍ୟ ନଥିଲା । ଅର୍ଥାତ୍ ସୌହାର୍ଦ୍ଦ୍ୟ, ସଦିଚ୍ଛା, ସାହାଯ୍ୟ ପ୍ରଭୃତି ଯାହାକିଛି ସାମାଜିକ ଗୁଣ, ତାହା ନ ଥିଲା । ଥିଲା କେବଳ ପରସ୍ପର ପ୍ରତି ଈର୍ଷା, ଛଳନା, କପଟ ଓ ଅହଂକାର । ଅବଶ୍ୟ ପଦାରବିନ୍ଦ ବାବୁ ଥିଲେ ଏ ସବୁର ଉର୍ଦ୍ଧ୍ୱରେ । କିନ୍ତୁ ଦାରୁଣକାଳ ତାଂକୁ ଅସମୟରେ ନେଇଯାଇଥିଲା ।

ପ୍ରଥମଥର କାମ କରିବାର ଆଠଦଶ ଦିନ ପରେ ସଂପାଦକ (ରାଧାନାଥ ରଥ) ମୋତେ ଡ଼କାଇ ଗୋଟିଏ ଦୀର୍ଘ ବେନାମୀ ଚିଠି ମୋ ହାତକୁ ବଢାଇଦେଇଥିଲେ । ଚିଠିଟି ପଢି ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ସେଥିରେ ମୋତେ ଏକ କଦର୍ଯ୍ୟ ମଣିଷ ଭାବରେ ଚିତ୍ରଣ କରାଯାଇଥିଲା । ଏପରିକି ମୋର ଚରିତ୍ର ଉପରେ କଳଂକ ବୋଳାଯାଇଥିଲା । ସଂପାଦକ ମୋତେ ଦୁଃଖିତ ନହେବାକୁ ପରାମର୍ଶ ଦେଇଥିଲେ ।

ଦ୍ୱିତୀୟଥର ମୋ ବିରୁଦ୍ଧରେ ଗୋଟିଏ ଚିଠି ଶ୍ରୀ ସତ୍ୟପାଳଙ୍କ ନିକଟକୁ ଲେଖାଯାଇଥିଲା । ତାହା ଥିଲା ସ୍ୱାକ୍ଷର ଯୁକ୍ତ । ଅବଶ୍ୟ ତାଂକ ଅଭିଯୋଗକୁ ଲୋକସେବକମଣ୍ଡଳ ନାକଚ କରିଦେଇଥିଲେ ଏବଂ ନିଯୁକ୍ତିକୁ କାଏମ ରଖିଥିଲେ । ପରିଣତ ବୟସରେ କୌଣସି ଅପ୍ରୀତି ବା ଅସମ୍ମାନର ସମ୍ମୁଖୀନ ହୋଇ କାମ କରିବାକୁ ମୋର ଆଦୌ ଇଚ୍ଛା ନଥିଲା । ତେଣୁ ଆଉ 'ସମାଜ'କୁ ଯାଇନଥିଲି ।

•••

# କାଲିର କୁମର : କଲ୍ୟାଣୀନଗର

ମୁଁ କଟକ ସିଟି କଲେଜର ଅଧ୍ୟକ୍ଷରୂପେ କଲେଜ ଗଠନ କରୁଥିବା ସଂଗେ ସଂଗେ ମୋ ସାହି କଲ୍ୟାଣୀନଗରର ଗଠନରେ ମଧ୍ୟ ଲାଗିଥିଲି । କଲ୍ୟାଣୀନଗର ସେତେବେଳେ ବର୍ତ୍ତମାନ ପରି ନଥିଲା । ପିଚୁ ରାସ୍ତା ନଥିଲା କି ରାସ୍ତା ଆଲୋକ ନଥିଲା । ପାୱାର ହାଉସଠାରୁ ଦରଖାପାଟଣା ଆଡକୁ ପାଦବାଟ ଥିଲା ମାତ୍ର । ରାସ୍ତା ମଧ୍ୟ କୁହାଯାଉନଥିଲା । କାରଣ ତାହା ରାସ୍ତା ଆକୃତିର ନଥିଲା । ମଝିରେ ମଝିରେ ଏତେ ଖାଲୁଆ ଜାଗା ଥିଲା ଯେ ସେସବୁଥିରେ ପାଣି ଜମୁଥିଲା । ପାୱାରହାଉସ ପାଖରେ ବାଟରେ ଗୋଟାଏ ନାଳ ଥିଲା । ସେଥିରେ ଦକ୍ଷିଣ ପଟରୁ ଉତ୍ତର ପଟକୁ (ବଡ ନର୍ଦ୍ଦମା ପଟକୁ) ଆଣ୍ଠୁଏ ଗଭୀରରେ ପାଣି ବହୁଥିଲା । କଲ୍ୟାଣୀନଗରରେ କେତୋଟି କାଁ ଭାଁ ଘର ଥିଲା ମାତ୍ର । ରାଜେନ୍ଦ୍ର ନଗର ଅଂଚଳର ମଧ୍ୟ ବିକାଶ ହୋଇନଥିଲା । ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲା ବେଳେ କଲ୍ୟାଣୀନଗରରେ ଅଢେଇଗୁଣ୍ଠ ଜାଗା କିଣିଥିଲି । ଗୁଣ୍ଠ ଥିଲା ଅଢେଇ ହଜାର । ସେତେବେଳେ ମୋର ଗାଁ ପ୍ରତି ଅତ୍ୟନ୍ତ ମମତା ଥିଲା, ଏବେ ମଧ୍ୟ ଅଛି । ମୁଁ ଗାଁରେ ରହି ଅବଶିଷ୍ଟ ଜୀବନ ବିତାଇବି ବୋଲି ଠିକ୍ କରିଥିଲି । ତେଣୁ କଟକରେ ଜାଗା କିଣିନଥିଲି । କିଂତୁ ମୋ ପତ୍ନୀଙ୍କ ଆଗ୍ରହ ମୋତେ କଟକରେ ଖଂଡିଏ ଜାଗା କିଣିବାପାଇଁ ବାଧ୍ୟ କଲା । ପତ୍ନୀ ସର୍ବଦା ଦର୍ଶାଇଲେ ଯେ କଟକରେ ଖଂଡିଏ ଯାହିତାହି ଘର ନ ହେଲେ ଏଗାରଟି ପିଲା ପାଠ ପଢିବେ କିପରି ? ମୋର ଚାରି ଝିଅ ଓ ଗୋଟିଏ ପୁଅ ଏବଂ ବଡ ଭାଇଂକର ଦୁଇ ଝିଅ ଓ ଚାରି ପୁଅ । ଏ ରୂପେ ପରିବାରରେ

ଏଗାରଟି ପିଲା । ମୁଁ ବଦଳି ହେଲେ ମଧ୍ୟ ପିଲାଏ ଏଇଠି ରହି ପାଠ ପଢିବେ, ଏହା ଥିଲା ମୋ ପତ୍ନୀଂକର ଲକ୍ଷ୍ୟ ।

ସେ ସମୟରେ କଲ୍ୟାଣୀନଗରର ଶ୍ରୀ କୈଳାସ ଚନ୍ଦ୍ର ମହାନ୍ତି ରାଣୀହାଟ ହାଇସ୍କୁଲରେ ଶିକ୍ଷକ ଥିଲେ । ଖୁବ୍ ସରଳ, ଅମାୟିକ ବ୍ୟକ୍ତିଟିଏ । ମୁଁ ସେତେବେଳେ ଓ.ଏମ୍.ପି. ଛକ ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲର ସହକାରୀ ପରିଚାଳକ ଭାବେ କ୍ୱାଟର ପାଇ ସପରିବାର ରହୁଥିଲି । କୈଳାସ ବାବୁ ଦିନେ ସ୍ୱତଃ ମୋ ପାଖରେ ପହଂଚି କଲ୍ୟାଣୀନଗରରେ ଖଂଡିଏ ଜାଗା କିଣନ୍ତୁ ବୋଲି କହିଲେ । ତାଂକରି ସାହାଯ୍ୟରେ ମୁଁ ଅଢେଇ ଗୁଣ୍ଠର ଜାଗା ଖଂଡିଏ କିଣିଥିଲି । କିଣିଲାବେଳକୁ ନନାଙ୍କୁ ଡାକି କବଲାରେ ତାଂକ ନାମ ମଧ୍ୟ ରଖିଥିଲି । ନନା ଏହି ଜାଗାକୁ ସାନ ବୋହୂ (ମୋ ସ୍ତ୍ରୀ)ଙ୍କ ନାମରେ କବଲା କରିବାକୁ କହୁଥିଲେ । କିନ୍ତୁ ମୁଁ ରାଜି ହୋଇନଥିଲି । ଦୁଇଭାଇଙ୍କ ନାମରେ କବଲା ହୋଇଥିଲା । ସବୁ ଖର୍ଚ୍ଚ ସହିତେ ପ୍ରାୟ ଆଠ ହଜାର ଟଂକା ପଡିଥିଲା । ଏହା ୧୯୭୦ରେ ହୋଇଥିଲା । ସେହି ଜାଗାରେ ୧୯୭୬ ଜାନୁଆରିରୁ ଖଂଡିଏ ଛୋଟ ଘର (କାଠ କଡି ବରଗା ଛାତ) କରି କଲ୍ୟାଣୀ ନଗରରେ ସପରିବାର ରହିଲି । ଏହି ଅଯାଚିତ ଉପକାର ପାଇଁ ମୁଁ କୈଳାସ ବାବୁଂକ ନିକଟରେ ଚିର ଋଣୀ । (ହାୟ ! କୈଳାସ ବାବୁ ବର୍ତ୍ତମାନ ସ୍ୱର୍ଗତ ।)

କଲ୍ୟାଣୀନଗରର ଉନ୍ନତି ଉଦ୍ଦେଶ୍ୟରେ ଅଳ୍ପ ଦିନ ହେଲା ଗୋଟିଏ ସମିତି ସେତେବେଳକୁ ଆରମ୍ଭ ହୋଇଥିଲା । ମୋତେ ସେହି ସମିତିର ସଭାପତି ରୂପେ ଲୋକେ ବାଛିଲେ । ମୁଁ ସଭାପତି ଥିବା ସମୟରେ ସଂପାଦକ ଥିଲେ ଶ୍ରୀ ଜଗବନ୍ଧୁ ମହାପାତ୍ର । ଆମେ ପ୍ରଥମେ ସମିତିକୁ "କଲ୍ୟାଣୀନଗର ଉନ୍ନୟନ ସମିତି" ନାମରେ କଲେକ୍ଟୋରିଏଟ୍‌ରେ ରେଜିଷ୍ଟ୍ରିଭୁକ୍ତ କରାଇଲୁଁ । ସେତେବେଳେ ରାଣୀହାଟ ଇଲେକ୍ଟ୍ରିସିଟି ଅଫିସରେ ଏକ୍‌ଜିକ୍ୟୁଟିଭ ଇଂଜିନିଅର ଥିଲେ ଶ୍ରୀ ଗଣେଶ ଲାଲ ଧଳ । ମୁଁ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲାବେଳେ ସେ ସେଠାରେ ପଢୁଥିଲେ । କଲ୍ୟାଣୀନଗରର କଚ୍ଚା, ଖାଲପୂର୍ଣ୍ଣ ରାସ୍ତାରେ ଅଂଧାର ରାତିରେ ଚଳପ୍ରଚଳ କରିବା ଭାରି କଷ୍ଟକର ହେଉଥିଲା । ମୁଁ ଓ ଜଗବଂଧୁ ବାବୁ ଦୁହେଁ ଗଣେଶଂକୁ ଭେଟିଲୁଁ ଏବଂ କଲ୍ୟାଣୀନଗର ରାସ୍ତାରେ ବିଦ୍ୟୁତ୍ ଆଲୋକ ବ୍ୟବସ୍ଥା କରାଇବାକୁ ଅନୁରୋଧ କଲୁଁ । ସେତେବେଳେ ଏ ଅଂଚଳ କଟକ ମ୍ୟୁନିସିପାଲିଟିର ଅନ୍ତର୍ଗତ ନଥିଲା । ଜଗବଂଧୁ ବାବୁ ରାଣୀହାଟ ଇଲେକ୍ଟ୍ରିସିଟି ଅଫିସରେ କର୍ମଚାରୀ ଥିଲେ ଏବଂ ଇଲେକ୍ଟ୍ରିସିଟି କର୍ମଚାରୀ ସଂଘର ଜଣେ ନେତା ଥିଲେ । ଗଣେଶ ସାଦରେ ଆମ ଅନୁରୋଧ ରକ୍ଷା

କଲେ ଏବଂ ଖୁଣ୍ଟ, ତାର ପ୍ରଭୃତି ବାବଦରେ ଅଳ୍ପମାତ୍ର ଖର୍ଚ୍ଚ ନେଇ ଆଲୋକ ବ୍ୟବସ୍ଥା କରିଦେବାକୁ କହିଲେ । ଆମେ କଲ୍ୟାଣୀ ନଗରର ତତ୍‌କାଳୀନ ଅଧିବାସୀଗଣ ନିଜ ହାତରୁ ସେହି ଅର୍ଥ ଦେଲୁଁ । ତାହା ରାଣୀହାଟ ବିଦ୍ୟୁତ୍ ଅଫିସ୍‌ରେ ପୈଠ ହେଲା ।

ତା'ପରେ ବିଦ୍ୟୁତ୍ ବିଭାଗ ପକ୍ଷରୁ କଲ୍ୟାଣୀନଗର ପାୱାର ହାଉସଠାରୁ ଜଗବଂଧୁ ବାବୁଂକ ଘର ପର୍ଯ୍ୟନ୍ତ ଲାଇନ୍ ଖୁଂଟମାନ ପୋତା ହେଲା ଏବଂ ତାର ଟଣାଯାଇ ଅନ୍ୟାନ୍ୟ ସବୁ ବ୍ୟବସ୍ଥା କରାହେଲା । ଯେଉଁଦିନ କଲ୍ୟାଣୀନଗର ପାଦଚଲା ରାସ୍ତାରେ ବିଦ୍ୟୁତ୍ ଆଲୋକ ଜଳିଲା, ସେଦିନର ଆନଂଦ କହିଲେ ନସରେ । ପିଲାମାନେ ଖୁସିରେ ଡିଆଁ ଡେଇଁ କରି ଖେଳିଲେ । ରାସ୍ତା ଉପରେ ପ୍ରତିଦିନ ସଂଜ ବେଳେ ପିଲାମାନଂକର ଖେଳ ଚାଲିଲା । ସେତେବେଳେ ଏ ରାସ୍ତାରେ ଗାଡି ଚାଲୁନଥିଲା କହିଲେ ଚଳେ । ତେଣୁ ପିଲାମାନେ ଆନନ୍ଦରେ ନିର୍ଭୟରେ ଖେଳୁଥିଲେ । ରାସ୍ତା ଆଲୋକ ଉଦ୍‌ଘାଟନ ଉପଲକ୍ଷେ ଏକ ସଭାର ଆୟୋଜନ କରାଯାଇଥିଲା । ଉଦ୍‌ଘାଟକ ରୂପେ ଯୋଗ ଦେଇଥିଲେ 'ସମାଜ'ର ତତ୍‌କାଳୀନ ବାର୍ତ୍ତା ସଂପାଦକ ଶ୍ରୀ ଉଦୟନାଥ ଷଡଙ୍ଗୀ ଏବଂ ମୁଖ୍ୟ ଅତିଥିରୂପେ ଯୋଗ ଦେଇଥିଲେ ଶ୍ରୀ ଗଣେଶଲାଲ ଧଳ ।

ଆଲୋକ ବ୍ୟବସ୍ଥା ହେଲା ପରେ ଆମେମାନେ ରାସ୍ତାନିର୍ମାଣ ପାଇଁ ଚିନ୍ତା କଲୁଁ । କଲ୍ୟାଣୀନଗର ଅଂଚଳ କଟକ ମ୍ୟୁନିସିପାଲିଟିର ଅନ୍ତର୍ଗତ ହୋଇନଥିଲା, ଥିଲା ସଦର ବ୍ଲକ୍ ଅଧୀନରେ । ବ୍ଲକ୍‌ରେ କାହାକୁ ତୋଷାମୋଦ କରିବାକୁ ଉଚିତ ମନେ ନ କରି, ନିଜ ହାତରୁ ଖର୍ଚ୍ଚ କରି ରାସ୍ତା ତିଆରି କରିବାକୁ ସିଦ୍ଧାନ୍ତ ଗ୍ରହଣ କଲୁଁ । କଲ୍ୟାଣୀନଗରରେ ଅଳ୍ପ ଲୋକ ଘର କରି ରହିଥିଲେ । ସେମାନେ ଖୁସିରେ ଅର୍ଥ ଦାନ କଲେ । ପ୍ରାୟ କୋଡିଏ ହଜାର ଟଂକା ସଂଗ୍ରହ ହୋଇଗଲା । ଟ୍ରକ୍‌ରେ ବୋଲଡର, ନାଲିଗୁଡି ଓ ବାଲି ଅଣାଯାଇ ଖାଲୁଆ ସ୍ଥାନ ସବୁ ପୋତାଗଲା ଏବଂ ରାସ୍ତା ଢାଂଚାଟିଏ ହୋଇଗଲା । ରାସ୍ତାର ଗୋଟିଏ ପଟରୁ ଅନ୍ୟ ପଟକୁ ପାଣି ନିଷ୍କାସନ ନିମନ୍ତେ ଦୁଇଟି ନଳାର ଆବଶ୍ୟକତା ପଡିଲା । ଆମେ ସମିତିର କାର୍ଯ୍ୟନିର୍ବାହୀ ସଭ୍ୟଗଣ ତଥା ସାହିର ଅନ୍ୟ କେତେକ ଲୋକ ସକାଳୁ ସକାଳୁ ଯାଇ ଅନ୍ଦରପୁର ପାଖରେ କେନାଲ ବଂଧ ତଳକୁ ପଡିଥିବା ଦୁଇଟା ନଳାକୁ (ପାଇପ୍) ବହୁ କଷ୍ଟରେ ବଂଧ ଉପରକୁ ଉଠାଇ, ଗଡାଇ ଗଡାଇ ଘେନି ଆସିଲୁଁ । ପାଇପ୍ ଦୁଇଟା କୌଣସି ସରକାରୀ ବିଭାଗର ଥିଲା ଏବଂ ସେଠାରେ ପରିତ୍ୟକ୍ତ ଭଳି ପଡିଥିଲା । ଦୁଇଟାକୁ ଗୋଟିଏ ଜାଗାରେ ରାସ୍ତାର ଏପଟରୁ ସେପଟକୁ ପୋତି ପାଣିନିଷ୍କାସନର ବ୍ୟବସ୍ଥା କଲୁଁ । କଲ୍ୟାଣୀନଗର ଲୋକମାନଂକ ମଧ୍ୟରେ ସେତେବେଳେ ଖୁବ୍ ଭ୍ରାତୃଭାବ ଓ ସହଯୋଗ ଥିଲା ।

ରାସ୍ତା ହୋଇଗଲା ପରେ ଆମେ ଚିନ୍ତା କଲୁ ଗୋଟିଏ ପୋଷ୍ଟ ଅଫିସ ପ୍ରତିଷ୍ଠା କରିବାକୁ । ସେତେବେଳେ କଲ୍ୟାଣୀନଗର ବାସୀ ଶ୍ରୀ ନିତ୍ୟାନନ୍ଦ ମହାନ୍ତି ଡାକବିଭାଗରେ ଜଣେ ପଦସ୍ଥ କର୍ମଚାରୀ ଥାଆନ୍ତି । ସେ ବହୁତ ସହଯୋଗ କଲେ । ଆମେ ଲେଖାଲେଖି କରି ଗୋଟିଏ ସବ୍ ପୋଷ୍ଟ ଅଫିସ୍ ମଂଜୁର କରାଇଲୁଁ । କଲ୍ୟାଣୀନଗର ଅଂଚଳ ହେଲା କଟକ-୧୩ । ପୋଷ୍ଟ ଅଫିସ ଉଦ୍‌ଘାଟନ ଉପଲକ୍ଷେ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ଓ ତତ୍‌କାଳୀନ ଡାକବିଭାଗ ଡାଇରେକ୍‌ଟର ଶ୍ରୀ ଭାସ୍କର ମହାନ୍ତି ଆସିଥିଲେ । ଗୋଟିଏ ସଭା ହୋଇଥିଲା । ମୋ ଘରେ ଅତିଥିମାନଂକ ପାଇଁ ଜଳଯୋଗର ବ୍ୟବସ୍ଥା କରାଯାଇଥିଲା । ମୋର ମନେ ଅଛି, ଶ୍ରୀମତୀ ପଟ୍ଟନାୟକ ମୋତେ କଂଗ୍ରେସ୍ ଦଳରେ ମିଶିବାକୁ ପରାମର୍ଶ ଦେଇଥିଲେ । କିଂତୁ ମୁଁ ସେଥି ପ୍ରତି ଧ୍ୟାନ ଦେଇନଥିଲି । ମୁଁ ରାଜାବଗିଚା କଟକ ସିଟି କଲେଜ ଓ କଲ୍ୟାଣୀନଗର ସାହି ନିର୍ମାଣରେ ନିମଜ୍ଜିତ ଥିଲି । ଏବେ ମୁଁ ଅନୁଭବ କରୁଛି, ଶ୍ରୀମତୀ ପଟ୍ଟନାୟକଂକ ପରାମର୍ଶ ପ୍ରତି ଧ୍ୟାନ ନ ଦେଇ ଏବଂ ପରେ ବିଭ୍ରାନ୍ତ ହୋଇ ବି.ଜେ.ପି.ରେ ଯୋଗ ଦେଇ ମସ୍ତବଡ ଭୁଲ କରିଥିଲି ।

ଡାକଘର ହେଲା ପରେ ଆମେ କଲ୍ୟାଣୀନଗରରେ ଗୋଟିଏ ଷ୍ଟେଟ୍ ବ୍ୟାଂକ୍ ଶାଖା ଖୋଲାଇବାପାଇଁ ଉଦ୍ୟମ କଲୁଁ । ସେହି ଉଦ୍ଦେଶ୍ୟରେ ଭୁବନେଶ୍ୱର ମୁଖ୍ୟ ଶାଖାକୁ ଲେଖାଲେଖି କଲୁ । ଯାହା ହେଉ, ବ୍ୟାଂକ୍ କର୍ତ୍ତୃପକ୍ଷ ଆବଶ୍ୟକ ଅନୁସଂଧାନ କରି ଏଠାରେ ଏକ ଶାଖା ଖୋଲିବା ପାଇଁ ଉଚିତ ମନେ କଲେ ଏବଂ ତାହାର ନାମ ହେଲା କଲ୍ୟାଣୀନଗର ଶାଖା । ପ୍ରଥମେ ଏହି ଶାଖା ଯେଉଁ ଘରେ ଉଦ୍‌ଘାଟିତ ହେଲା, ସେହି ଘର ମଧୁପାଟଣାର ଅନ୍ତର୍ଗତ ବୋଲି ଦର୍ଶାଇ "ମଧୁପାଟଣା ଶାଖା" ନାମ ହେଉ ବୋଲି କେତେକ ଲୋକ ଦାବୀ କରିବାରୁ ବ୍ୟାଂକ୍‌ର ନାମଫଳକରେ "କଲ୍ୟାଣୀନଗର ଶାଖା, ମଧୁପାଟଣା" ବୋଲି ଲେଖା ହେଲା । ବ୍ୟାଂକ୍ ଲାଭଦାୟକ ଭାବରେ ଚାଲିଲା । ଅଳ୍ପ କାଳ ପରେ ଷ୍ଟେଟ୍ ବ୍ୟାଙ୍କର ଜଣେ ଉଚ୍ଚପଦସ୍ଥ କର୍ମକର୍ତ୍ତା (ଶ୍ରୀ ଭୋଳାନାଥ ବେହେରା, ଯେ କି ମୁଁ କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲାବେଳେ ସେହି ସ୍କୁଲରେ ପଢୁଥିଲେ) ତାଂକୁ କହି ଆମେ କଲ୍ୟାଣୀନଗର ଶାଖାରେ ଟେଲର କାଉଣ୍ଟର ଓ ପେନସନ ପ୍ରଭୃତିର ବ୍ୟବସ୍ଥା କରାଇଥିଲୁଁ । ଏବେ ବ୍ୟାଂକ୍ କଲ୍ୟାଣୀନଗର ଅନ୍ତର୍ଗତ ସ୍ଥାନରେ ହେଉଛି ।

ସଂପାଦକ ଜଗବଂଧୁ ବାବୁଂକ ସଂଗେ ମୋର ଗୋଟିଏ ମାତ୍ର ବିଷୟରେ ମତାନ୍ତର ଘଟିଥିଲା । ତାଂକ ଘର ଆଗରେ ଯେଉଁ ଛୋଟିଆ ତିନିକୋଣିଆ ଜାଗା ଖଂଡିଏ ଅଛି, ସେଠାରେ ସେ ଗୋଟିଏ ଛୋଟିଆ ଶିବ ମଂଦିର ଗଢିବାକୁ ଚାହିଁଲେ । ମୁଁ ତାଂକୁ ସେହି କାମ ନ କରିବା ପାଇଁ ବୁଝାଇଲି । ମୋ ବିଚାରରେ ମନ୍ଦିର, ମସଜିଦ, ଗୀର୍ଜା ପ୍ରଭୃତି

ନିର୍ମାଣ କରାଇବା ଉନ୍ନୟନ କାର୍ଯ୍ୟ ନୁହେଁ । ହିଂନ୍ଦୁ ଓ ମୁସଲମାନମାନେ ସେଇଥିରୁ ଗୁଡ଼ାଏ କରି ନିଜ ଦୁର୍ଦ୍ଦଶାକୁ ଡାକି ଆଣିଛନ୍ତି ଏବଂ ଏବେ ମଧ୍ୟ ଆଣୁଛନ୍ତି । କିଂତୁ ଜଗବଂଧୁ ବାବୁ ନିଜ ଜିଦ୍‌ରେ ଅଟଳ ରହିଲେ ଏବଂ ଛୋଟିଆ ମଂଦିରଟିଏ ତୋଳାଇବା ଆରଂଭ କରିଦେଲେ । ଅଦ୍ଧମାତ୍ର ନିର୍ମାଣ ହେଲା ପରେ ପାଖ ଗାଆଁରୁ କେତେକ ଲୋକ ଖଣ୍ଡା ଧରି ଆସି ବାଧା ଦେଲେ । କାର୍ଯ୍ୟ ବନ୍ଦ ରହିଲା । ଜଗବଂଧୁ ବାବୁ ଜିଦ୍‌ରେ କଲ୍ୟାଣୀନଗର ଭିତରେ ମନ୍ଦିରଟିଏ କରିବାପାଇଁ ଚିନ୍ତା କଲେ ଏବଂ ମୋତେ ବାରଂବାର ପ୍ରବର୍ତ୍ତାଇଲେ । ଆମେ ଜାଗାଖଂଡିଏ ଯୋଗାଡ କରିବାକୁ ଝଉଲିଆଗଂଜ କୁଜବିହାରୀ ମଠ ଟ୍ରଷ୍ଟିଂକ ସଂଗେ ଯୋଗାଯୋଗ କଲୁ । ବର୍ତ୍ତମାନ କଲ୍ୟାଣୀନଗରରେ ସେହି ଜାଗାଖଂଡିକ ଉପରେ ଦେବଦେବୀ ମୂର୍ତ୍ତି ସ୍ଥାପିତ ହୋଇଛନ୍ତି ଏବଂ ତାହାକୁ ମନ୍ଦିର କୁହାଯାଉଛି ।

ଛୋଟିଆ ତିନି କୋଣିଆ ଜାଗାଟିରେ କ୍ଷୁଦ୍ର ମନ୍ଦିରଟିଏ ନିର୍ମାଣ ଆରମ୍ଭ ହେବାରୁ ଆମକୁ କ୍ରମେ ପଡୋଶୀ ସାହିମାନଂକ ସହ ଉତ୍‌କଟ ସୀମାବିବାଦର ସମ୍ମୁଖୀନ ହେବାକୁ ପଡିଲା । ଏ ସଂକ୍ରାନ୍ତରେ ଆମକୁ ଜିଲ୍ଲାପାଳ ଓ ଏସ୍.ପି. ଆଦିଂକ ପାଖକୁ ଯିବାକୁ ପଡିଲା । ମୁଁ ଅନୁଭବ କଲି, କଟକରେ ସାହି ସୀମା ବିବାଦରେ ଖୁବ୍ ରୁଚି । ହିଂନ୍ଦୁ ଧର୍ମର ପ୍ରକୃତ ସାତ୍ତ୍ୱିକ ଭାବ ପ୍ରତି କାହାରି ଆଗ୍ରହ ନାହିଁ । ସାହିସୀମା ବିବାଦରେ ଅଧିକ ଅପ୍ରୀତିର ଆଶଂକା କରି ମୁଁ ଉନ୍ନୟନ ସମିତିର ସଭାପତି ପଦ ତ୍ୟାଗ କଲି ।

ସେ ସମୟରେ କଲ୍ୟାଣୀନଗରର ବାସିନ୍ଦାମାନଂକ ମଧ୍ୟରେ ଉତ୍ତମ ସଦ୍‌ଭାବ ଥିଲା । ବିବାହ, ବ୍ରତ, ପୂଜା ଆଦି ଉତ୍ସବରେ ସମସ୍ତେ ସମସ୍ତଂକୁ ନିମଂତ୍ରଣ କରୁଥିଲେ । ସ୍ତ୍ରୀଲୋକମାନେ ଆନନ୍ଦରେ ମିଶି ହୋଲି ଖେଳୁଥିଲେ । ଏ ଅଂଚଳ ଥିଲା ଶାନ୍ତି, ସୌନ୍ଦର୍ଯ୍ୟ ଓ ଆନନ୍ଦର ଅଂଚଳ । ଏହି ଅଂଚଳକୁ ଲାଗିଥିବା ଅନ୍ଦରପୁର ଗ୍ରାମର ବହଳ ଆମ୍ବତୋଟା ଓ ବଟ ଅଶ୍ୱତ୍‌ଥ ଆଦି ବୃକ୍ଷ ଅତ୍ୟନ୍ତ ଆନନ୍ଦ ଦାୟକ ବୋଧ ହେଉଥିଲା ।

କଲ୍ୟାଣୀନଗରର ପ୍ରଥମେ ନାମ ଥିଲା କଲ୍ୟାଣନଗର । କ୍ରମେ ଲୋକମୁଖରେ ହୋଇଗଲା କଲ୍ୟାଣୀନଗର ।

ଏହା ଥିଲା ମୁକ୍ତ ପରିବେଶ, ମୁକ୍ତ ବାୟୁ ଓ ପରିଷ୍କାର ପରିଛନ୍ନ ସାହି । କିଂତୁ ସମୟକ୍ରମେ ଏହା ଘନଜନବସତି ପୂର୍ଣ୍ଣ ଓ ଦୂଷିତ ଆବର୍ଜନାପୂର୍ଣ୍ଣ ଅଂଚଳ ହୋଇଗଲା ।



# ମାତୃଭାଷା ମହୀୟସୀ

ଓଡିଶାରେ କେବଳ ସ୍କୁଲସ୍ତରରେ ନୁହେଁ, କଲେଜ ସ୍ତରରେ ମଧ୍ୟ ଓଡିଆ ମାଧ୍ୟମରେ ଶିକ୍ଷାଦିଆଯିବା ଦରକାର, ଏ ବିଷୟରେ ମୁଁ ପତ୍ର ପତ୍ରିକାମାନଂକରେ ବହୁତ ଲେଖିଥିଲି । ପୁଣି କୋର୍ଟକଚେରିରେ ବିଚାର କାର୍ଯ୍ୟ ଓ ସରକାରୀ ତଥା ବେସରକାରୀ ଅଫିସମାନଂକରେ ପ୍ରଶାସନ କାର୍ଯ୍ୟ ଓଡିଆ ଭାଷାରେ ଚାଲିବା ଦରକାର, ଏ ବିଷୟରେ ମଧ୍ୟ ବହୁତ ଲେଖିଥିଲି । ବାଣୀବିହାର ପରିସରରେ ଯେଉଁ ବର୍ଷ ସର୍ବ ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ ବସିଥିଲା, ଏବଂ ସେହି ଉପଲକ୍ଷେ 'ସମାଜ'ର ଏକ ସ୍ୱତଂତ୍ର ସଂଖ୍ୟା ପ୍ରକାଶ ପାଇଥିଲା, ସେହି ସଂଖ୍ୟାର ପ୍ରଥମ ପୃଷ୍ଠାରେ ମୋର ଏକ ପ୍ରବଂଧ ପ୍ରକାଶ ପାଇଥିଲା, ଯାହାର ବିଷୟବସ୍ତୁ ଥିଲା ସମସ୍ତ ପ୍ରକାର ବିଜ୍ଞାନଶିକ୍ଷା ମାତୃଭାଷା ମାଧ୍ୟମରେ ଦିଆଯିବା ଦରକାର । ତା'ଛଡା, ବହୁ ସଭାସମିତିରେ ବକ୍ତୃତା ଦେଇ ମୁଁ ଓଡିଆ ଭାଷାର ଗୁରୁତ୍ୱ ପ୍ରତିପାଦନ କରୁଥିଲି । ସ୍କୁଲକଲେଜରେ ବିଶେଷତଃ କଲେଜରେ ଏମ୍.ଆଇ.ଏଲ୍. (ଓଡିଆ) ଶିକ୍ଷା କିପରି ଭାବରେ ଦିଆଯିବା ଉଚିତ, ସେ ବିଷୟରେ ମଧ୍ୟ ଅନେକ ପ୍ରବଂଧ ପତ୍ରପତ୍ରିକାମାନଂକରେ ଲେଖିଥିଲି । ଏସବୁ ଥିଲା ଆଜକୁ ୪୦/୪୫ ବର୍ଷ ତଳର କଥା, ଯେତେବେଳେ କି ଓଡିଶାରେ ଓଡିଆ ଭାଷା କଲେଜରେ ବିଜ୍ଞାନ ଶିକ୍ଷାର ମାଧ୍ୟମ ହେବ, ବିଚାର କାର୍ଯ୍ୟର ମାଧ୍ୟମ ହେବ, ଏବଂ ସରକାରୀ ପ୍ରଶାସନର ମାଧ୍ୟମ ହେବ, ଏଭଳି କଥା ହାସ୍ୟାସ୍ପଦ ମନେ ହେଉଥିଲା ଏବଂ ଏବେ ମଧ୍ୟ ମନେ ହେଉଛି । ତେଣୁ ମାତୃଭାଷା ଓଡିଆ କ୍ଷେତ୍ରରେ ଓଡିଆ ଜାତି ପ୍ରାୟ ଅର୍ଦ୍ଧ ଶତାବ୍ଦୀ ହେଲା ପାଦେ ହେଲେ ଆଗେଇ ନାହାନ୍ତି କହିଲେ ଚଳେ ।

ଓଡିଆ ଭାଷା ମାଧ୍ୟମ ହେବା ପାଇଁ ବହୁତ ଲେଖାଲେଖି କଲା ପରେ ମୋ ମନକୁ ଗୋଟିଏ ଭାବନା ଆସିଲା - ଖାଲି ବାକ୍ୟବୀର ହେଲେ ଲାଭ କଅଣ ? ନିଜ କଥାକୁ ନିଜ କାର୍ଯ୍ୟରେ ପରିଣତ କରିବା ଦରକାର । ମୋ ଚାକିରି ସଂକ୍ରାନ୍ତ ତଥା ଅନ୍ୟାନ୍ୟ ଚିଠିପତ୍ର ମୁଁ ଓଡିଆରେ ଲେଖୁଥିଲି । ମୋ ଝିଅ ଦୁହିଁଙ୍କୁ (ମୋ ବଡ ଝିଅକୁ ଏବଂ ବଡ ଭାଇଂକ ବଡ ଝିଅକୁ) ଓଡିଆ ମାଧ୍ୟମରେ ଆଇ.ଏ. ଏବଂ ବି.ଏ. ପରୀକ୍ଷା ଦିଆଇ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡିଆ ମାଧ୍ୟମରେ ବାଟ ଫିଟାଇବି ବୋଲି ଠିକ୍ କଲି । ତେଣୁ ଝିଅ ଦୁହେଁ ମାଟ୍ରିକ୍ୟୁଲେସନ ପାସ୍ କଲା ପରେ (ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଥିଲେ) କଲେଜରେ ଆଇ.ଏ. .ପରୀକ୍ଷା ଓଡିଆ ମାଧ୍ୟମରେ ଦେବା ପାଇଁ କହିଲି । ଦୁହେଁ କଲେଜରେ (ଭୁବନେଶ୍ୱର ରମାଦେବୀ କଲେଜରେ) ଆଇ.ଏ. ଇଂରାଜି ମାଧ୍ୟମରେ ପଢିଲେ, କିଂତୁ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଓଡିଆରେ ଉତ୍ତର ଲେଖିଲେ । ଓଡିଆରେ ଲେଖିବା ମୁଁ ସେମାନଂକୁ ଶିଖାଇଥିଲି । କଲେଜର ସର୍ବୋଚ୍ଚ ସ୍ତର ପର୍ଯ୍ୟନ୍ତ ମଧ୍ୟ ମାତୃଭାଷା ମାଧ୍ୟମରେ ପରୀକ୍ଷା ଦେଇହେବ, ପାର୍ଲିଆମେଣ୍ଟରେ ଏକ ଗୁରୁତ୍ୱପୂର୍ଣ୍ଣ ନିୟମ ପ୍ରଣୟନ କରାଯାଇଥିଲା । ଏହିପରି ବହୁ ତଥ୍ୟ ସଂବଳିତ ଲେଖା ମୁଁ ପ୍ରକାଶ କରାଇସାରିଥିଲି । ତେଣୁ ଝିଅ ଦୁହିଁଙ୍କର ଆଇ.ଏ. ପରୀକ୍ଷାଖାତା (ଓଡିଆରେ ଲିଖିତ ଉତ୍ତର ଖାତା) ନାକଚ ହେଲା ନାହିଁ । ଦୁହେଁ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଗଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଓଡିଆ ମାଧ୍ୟମରେ ଆଇ.ଏ. ପରୀକ୍ଷା ଦେବାରେ ସେମାନେ ଥିଲେ ପ୍ରଥମ ।

ତା'ପରେ ମୁଁ ଝିଅ ଦୁହିଁଙ୍କୁ (ମୋ ଝିଅ କବିତା ଓ ବଡଭାଇଂକ ଝିଅ ସବିତାକୁ) ବି.ଏ. ପରୀକ୍ଷା ଓଡିଆ ମାଧ୍ୟମରେ ହିଁ ଦେବାକୁ କହିଲି । ସେମାନେ ରାଜି ହେଲେ ଏବଂ ପୂର୍ବପରି ଓଡିଆରେ ଲେଖିବାର ଅଭ୍ୟାସ କଲେ । ସେମାନେ ରାଜନୀତି ବିଜ୍ଞାନ ଓ ସଂସ୍କୃତ ବିଷୟ ନେଇଥିଲେ । ବି.ଏ. ପରୀକ୍ଷାରେ ସେମାନେ ଭଲ କରିଛନ୍ତି ବୋଲି କହିଲେ । ମୁଁ ଆନନ୍ଦ ଅନୁଭବ କରୁଥିଲି ।

ବି.ଏ. ପରୀକ୍ଷାର ଫଳ ବାହାରିଲା । ଦେଖିଲି, ପାସ୍ ତାଲିକାରେ ଝିଅ ଦୁହିଁଙ୍କର ନାମ ନାହିଁ । ଉତ୍କଳ ବିଶ୍ୱବିଦ୍ୟାଳୟକୁ ବୁଝିବାକୁ ଗଲି । ବୁଝିଲି ବାଧ୍ୟତାମୂଳକ ଇଂରାଜି ଓ ବାଧତାମୂଳକ ଓଡିଆ ଛଡା ଅନ୍ୟ ସମସ୍ତ ପତ୍ରରେ ଦୁହେଁ ଶୂନ ପାଇଛନ୍ତି । କାରଣ, ଓଡିଆରେ ଉତ୍ତର ଲେଖିଥିବାରୁ ଖାତାଗୁଡିକର ମୂଲ୍ୟାୟନ କରାଯାଇନାହିଁ । ଉତ୍ତରଗୁଡିକୁ ନାକଚ କରାଯାଇଛି । ମନ ଟିକିଏ ଦବିଗଲା । ଧୈର୍ଯ୍ୟ ଧରି ଘରକୁ ଆସିଲି । ଏ କଥା ଜାଣି ଝିଅ ଦୁହେଁ କାନ୍ଦିଲେ । ଘରେ ସମସ୍ତଂକର ଦୁଃଖର ସୀମା ରହିଲା ନାହିଁ ।

ମୁଁ କିଂତୁ ଦୃଢ ଭାବରେ ଝିଅଂକୁ ବୁଝାଇଲି – ,ଓଡିଆରେ ଲେଖି ତୁମେ ଅପରାଧ କରିନାହଁ । ମୁଁ ଦୁହିଁଙ୍କର ଉତ୍ତର ଖାତାଗୁଡିକର ମୂଲ୍ୟାୟନ କରାଇବି ଏବଂ ଦୁହେଁ ନିଶ୍ଚୟ ପାସ୍ କରିବ ।

ତା'ପରେ ମୁଁ ଆରମ୍ଭ କଲି ମୋର ସଂଗ୍ରାମ । ସେତେବେଳେ 'ସମାଜ'ରେ ବାର୍ତ୍ତାସଂପାଦକ ଥିଲେ ଶ୍ରୀଯୁକ୍ତ ଉଦୟନାଥ ଷଡଙ୍ଗୀ । ମୁଁ ଗୋଟିଏ ବିଶଦ ଲେଖା ଲେଖି ତାଂକୁ ଛାପିବାପାଇଁ ଦେଲି । ଲେଖାଟିରେ ଲୋକସଭାରେ ପ୍ରଣୀତ ହୋଇଥିବା ପରୀକ୍ଷାମାଧ୍ୟମ ଭାଷା ସଂବଂଧୀୟ ଆଇନ୍, ଭାରତରେ ଯେଉଁସବୁ ବିଶ୍ୱବିଦ୍ୟାଳୟରେ ମାତୃଭାଷା ମାଧ୍ୟମ ହୋଇସାରିଥିଲା, ତାହାର ବିବରଣୀ, ମୋ ଝିଅଦୁହିଁଙ୍କର ଖାତାଗୁଡିକର ମୂଲ୍ୟାୟନ କାହିଁକି ନ ହେବ, ଇତ୍ୟାଦି ବିଷୟ ଲେଖି ମୂଲ୍ୟାୟନ ନିମନ୍ତେ ଦାବି ଉପସ୍ଥାପନ କରିଥିଲି । ଉଦୟ ନାଥ ବାବୁ ଲେଖାଟି 'ସମାଜ'ରେ ଛାପିଲେ ।

ତାପରେ ମୁଁ ଧାଇଁଲି ସିଣ୍ଡିକେଟ୍ ସଭ୍ୟମାନଂକ ଘରକୁ । ସମସ୍ତଂକୁ ବୁଝାଇବାକୁ ଚେଷ୍ଟା କଲି । ସେତେବେଳେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ଥାଆନ୍ତି ଖ୍ୟାତନାମା, ବିଜ୍ଞ, ସିଣ୍ଡିକେଟ୍ ସଭ୍ୟ । ସେ ଓଡିଆ ଭାଷାରେ ପ୍ରବୀଣ ଥିଲେ, ଓଡିଆ ଭାଷା ପ୍ରତି ତାଂକର ପ୍ରଗାଢ ଆଦର ଥିଲା, କିଂତୁ ଉତ୍କଳ ବିଶ୍ୱବିଦ୍ୟାଳୟର ଡିଗ୍ରୀ ସ୍ତରରେ ଓଡିଆ ମାଧ୍ୟମ ଚଳାଇବାପାଇଁ ଅପେକ୍ଷା କରିବାକୁ ଚାହୁଁଥିଲେ । ତାଂକର ମତ ଥିଲା ଯେ ଡିଗ୍ରୀ ପରୀକ୍ଷାରେ ଓଡିଆ ମାଧ୍ୟମକୁ ସ୍ୱୀକୃତି ଦେଲେ ଉତ୍କଳ ବିଶ୍ୱବିଦ୍ୟାଳୟର ମାନ ହ୍ରାସ ପାଇବ । ମୁଁ ନମ୍ର ଭାବରେ ତାଂକୁ କହିଥିଲି- "ଉତ୍କଳ ବିଶ୍ୱବିଦ୍ୟାଳୟର ମାନ ହ୍ରାସ ହେବାର ଥିଲେ ଅନେକ ଦିଗରୁ ମାନ ହ୍ରାସ ହେବ । କେବଳ ଇଂରାଜିମାଧ୍ୟମ ସାହାଯ୍ୟରେ ସବୁ ଦିଗରୁ ମାନହ୍ରାସକୁ ରୋକାଯାଇ ପାରିବ ନାହିଁ ।"ଆଉ ମଧ୍ୟ, ସେ ନିଜେ କିପରି ଜର୍ମାନିରେ ଜର୍ମାନ୍ ଭାଷା ପଢିବାପାଇଁ ବାଧ୍ୟ ହେଲେ, ତାହା ସୂଚାଇଦେଲି । ଶ୍ରୀରାମ ବାବୁ ଚିନ୍ତାଶୀଳ ଭାବରେ ମୋ ଆଡକୁ ଚାହିଁଲେ ଏବଂ ସାହାଯ୍ୟ କରିବାକୁ ନିର୍ଭର ପ୍ରତିଶ୍ରୁତି ଦେଲେ । ସେତେବେଳେ ଡି.ପି.ଆଇ. ଥିଲେ ଶ୍ରୀ ବିଧୁଭୂଷଣ ଦାସ । ତାଂକୁ ମଧ୍ୟ ଭେଟି ନିବେଦନ କଲି । ସେ ସହୃଦୟତାର ସହିତ ଶୁଣିଲେ ଏବଂ ଦେଖିବେ ବୋଲି କହିଲେ ।

ଏହିପରି ଭାବରେ ପ୍ରାୟ ସବୁ ସିଣ୍ଡିକେଟ୍ ସଭ୍ୟଂକୁ ଭେଟି ଅନୁରୋଧ କଲି । କେତେକ ସାହାଯ୍ୟ କରିବାକୁ କହିଲେ ଏବଂ କେତେକ କେବଳ ଦୁଇଜଣ ଛାତ୍ରୀଂକ ପାଇଁ ନିୟମ କରାଯାଇପାରିବ ନାହିଁ ବୋଲି ମତ ଦେଲେ । ତଥାପି ମୁଁ ସେମାନଂକ ପାଖକୁ ଏକାଧିକ ଥର ଯାଇ ଅନୁରୋଧ କଲି ।

ଏଣେ ବିଶ୍ୱବିଦ୍ୟାଳୟ ଅଫିସ୍‌ର ସଂପୃକ୍ତ କର୍ମଚାରୀମାନଂକୁ ଅନୁରୋଧ କରିବାରେ

ଲାଗିଲି ସିଣ୍ଡିକେଟ୍ ମିଟିଂରେ ଏହି ବିଷୟଟିକୁ ପକାଇବାପାଇଁ । ସିଣ୍ଡିକେଟ୍‌ର ବହୁ ଗୁରୁତ୍ୱ ପୂର୍ଣ୍ଣ ବିଷୟ ମଧ୍ୟରେ ଦୁଇଜଣ ଛାତ୍ରୀଂକର ଓଡିଆ ମାଧ୍ୟମ ପ୍ରସଂଗ ନିତାନ୍ତ ଗୌଣ ବିଷୟ ଥିଲା । ତେଣୁ ୬/୭ ମାସ ଚାଲିଗଲା, ସିଣ୍ଡିକେଟ୍‌ରେ ପଡି ପାରିଲା ନାହିଁ । ଏଣେ ଝିଅ ଦୁହେଁ ହତାଶ ହେଲେ । ମୁଁ କଟକରୁ ବାଣୀବିହାର ଦଉଡି ଦଉଡି କିଛି କୂଳ କିନାରା ପାଇଲି ନାହିଁ ।

ଶେଷକୁ ଗୋଟାଏ ହତାଶିଆ ବୁଦ୍ଧି ଧରିଲି । ଖବର ନେଇ ଜାଣିଲି ଯେ ଦିନେ ସିଣ୍ଡିକେଟ୍ ମିଟିଂ ବସିବ । ମୁଁ ଅଧଘଂଟା ଆଗରୁ ଯାଇ ସିଣ୍ଡିକେଟ୍ ହଲ୍ ପାଖରେ ଅପେକ୍ଷା କଲି ଏବଂ ଦଶପନ୍ଦର ମିନିଟ୍ ଆଗରୁ ହଲ୍ ଦୁଆର ମୁହଁରେ ବସିପଡିଲି । କର୍ମଚାରୀମାନେ ମୋତେ ଆଶ୍ଚର୍ଯ୍ୟ ଭାବରେ ଚାହିଁ ଚାହିଁ ଗଲେ । ତା'ପରେ ଜଣେ ଜଣେ ସଭ୍ୟ ଆସିଲେ । ମୁଁ ଦୁଆର ମୁହଁରେ ଠିଆ ହୋଇ, ସେଇ ଦିନର ମିଟିଂରେ ମୋ ଝିଅ ଦୁହିଁଙ୍କର ବିଷୟ ଫଇସଲା କରି ଦେବାକୁ ନିବେଦନ କଲି । କେତେକ ସଭ୍ୟ ମୋତେ ଚିହ୍ନିଯାଇଥିଲେ । ସେଦିନର ମିଟିଂରେ ଏକଥା ଯଦିଓ ତାଲିକାଭୁକ୍ତ ନଥିଲା, ତଥାପି ମିଟିଂରେ ପଡିଲା ଏବଂ ମୋ ଝିଅ ଦୁହିଁଙ୍କର ଓଡିଆରେ ଲିଖିତ ଉତ୍ତରପତ୍ରଗୁଡିକର ମୂଲ୍ୟାଂକନ ହେବ ବୋଲି ନିଷ୍ପତ୍ତି ଗୃହୀତ ହେଲା । ମିଟିଂ ସରିବା ପର୍ଯ୍ୟନ୍ତ ମୁଁ ଅପେକ୍ଷା କରିଥାଏଁ । ସେମାନେ ବାହାରି ଗଲା ବେଳକୁ ମୋତେ ଜଣାଇଦେଇ ଗଲେ । ମୋର ଆନଂଦର ସୀମା ରହିଲା ନାହିଁ । ଗୋଟାଏ ଗଡ ଜୟ କରିଥିଲା ଭଳି ମୋତେ ବୋଧ ହେଲା । ପରେ ଜାଣିଲି, ଶ୍ରୀରାମ ବାବୁ ଏ ଦିଗରେ ଆମ ସପକ୍ଷରେ ଦୃଢ ଯୁକ୍ତି ଉପସ୍ଥାପନ କରିଥିଲେ । ତା'ପରେ ନାକଚ ହୋଇଥିବା ପତ୍ରଗୁଡିକର ମୂଲ୍ୟାଂକନ ପାଇଁ ପରୀକ୍ଷକ ନିଯୁକ୍ତ ହେଲେ । ପିଲା ଦୁହେଁ ତ ଭଲ ଲେଖିଥିଲେ, ତେଣୁ ପାସ୍ କଲେ । ଦୁହେଁ ହେଲେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଓଡିଆ ମାଧ୍ୟମ ଗ୍ରାଜୁଏଟ୍ । ତା'ପରେ ଓଡିଶାର ତିନି ବିଶ୍ୱବିଦ୍ୟାଳୟରେ ଓଡିଆ ମାଧ୍ୟମରେ ବି.ଏ. ପରୀକ୍ଷା ଦେବାପାଇଁ ବାଟ ଫିଟିଗଲା ।

କିଂତୁ କ୍ରମେ ମୋ ପରିବାରରେ ମାତୃଭାଷା ପ୍ରୀତିର ସୁଖ ନିଃସାର ବୋଧ ହେଲା । କାରଣ ଝିଅ ଦୁହେଁ ଯେତେ ଇଂଟରଭ୍ୟୁରେ ଯୋଗ ଦେଲେ, ସବୁଠି ଓଡିଆ ମାଧ୍ୟମ ବୋଲି ହତାଦର ପାଇଲେ । କେହି ଜଣେ ହେଲେ ତାଂକୁ ପ୍ରଥମ ଓଡିଆମାଧ୍ୟମ ଗ୍ରାଜୁଏଟ୍ ବୋଲି ଟିକିଏ ହେଲେ ମର୍ଯ୍ୟାଦା ଦେଲେ ନାହିଁ । ଶେଷକୁ ଦୁହେଁ ପ୍ରାଥମିକ ସ୍କୁଲରେ ଶିକ୍ଷୟିତ୍ରୀ ହେଲେ (ସି.ଟି. ଟ୍ରେନିଂ ନେଇ) । ତା'ପରେ ଦୁହେଁ ବି.ଇଡି. କଲେ । କବିତା ଓଡିଆରେ ଏମ୍.ଏ. ଏବଂ ପିଏଚ୍.ଡି.ମଧ୍ୟ କଲା । ଦୁହେଁ ଏପର୍ଯ୍ୟନ୍ତ ପ୍ରାଥମିକ ସ୍କୁଲରେ ଶିକ୍ଷୟିତ୍ରୀ ହୋଇ ରହିଛନ୍ତି ।

ମୋ ପରିବାରରୁ ପ୍ରଥମ ଓଡିଆମାଧ୍ୟମ ଗ୍ରାଜୁଏଟ୍ ବାହାରିବାର ପଚିଶିବର୍ଷ ପରେ ମୋ ନାତିଟିର (ପୁଅର ପୁଅ) ଯେତେବେଳେ ବିଦ୍ୟାରମ୍ଭ କରିବାର ବେଳ ଆସିଲା, ଅର୍ଥନୀତିରେ ଏମ୍.ଏ.ପାସ୍ କରିଥିବା ମୋ ବୋହୂ ତାକୁ ଇଂରାଜି ମାଧ୍ୟମ ସ୍କୁଲରେ ପଢାଇବା ପାଇଁ ବହୁତ ଇଚ୍ଛା ପ୍ରକାଶ କଲା । ଆଜିକାଲି କିପରି ଶିକ୍ଷିତ ତଥା ଧନିକ ବର୍ଗର ଲୋକମାନେ ଶିଶୁଂକୁ ଇଂରାଜି ମାଧ୍ୟମ ସ୍କୁଲରେ ପଢାଉଛନ୍ତି, କିପରି ଗଳିକନ୍ଦିରେ ଇଂରାଜି ମାଧ୍ୟମ ସ୍କୁଲସବୁ ହେଲାଣି, ଓଡିଆ ଭାଷା କିପରି ଅଦରକାରୀ ହୋଇପଡିଲାଣି, ଇତ୍ୟାଦି ବିଷୟରେ ବୋହୂ ମୋତେ ବହୁତ ବୁଝାଇଲା । ତଥାପି ମୁଁ ରାଜି ହେଲି ନାହିଁ । ଓଡିଆମାନେ ଦୁଧଖିଆ ଛୁଆଂକୁ ଇଂରାଜିରେ ପାଠପଢା ଆରମ୍ଭ କରାଇ ଯେ ଯେତେ ବଡ କରାଇବାର କରନ୍ତୁ, ଆମର କିନ୍ତୁ ମାତୃଭାଷା ବଡ଼, ମାତୃଭାଷା ମାଆ, ଏହା ସିଦ୍ଧାନ୍ତ କରି ଆମେ ପୁଅକୁ ମାତୃଭାଷା ଓଡିଆ ମାଧ୍ୟମରେ ପଢାଇଲୁଁ ଏବଂ ନିକଟସ୍ଥ 'ମାତୃଭବନ' ସ୍କୁଲରେ ତାର ନାମ ଲେଖାଇଲୁଁ ।

କିନ୍ତୁ ଓଡିଆମାଧ୍ୟମ ସ୍କୁଲଶିକ୍ଷା ପ୍ରତି ଓଡିଆମାନଙ୍କର ହତାଦର ଏବଂ ଇଂରାଜିମାଧ୍ୟମ ସ୍କୁଲ ଶିକ୍ଷା ପ୍ରତି ଆଦର ପ୍ରବଳ ମାତ୍ରାରେ ବୃଦ୍ଧି ପାଉଥିବାର ଦେଖି ମୁଁ ଅତ୍ୟନ୍ତ ହତାଶା ଓ ବ୍ୟାକୁଳତା ଅନୁଭବ କରୁଛି ।



# ସ୍ୱର୍ଗାଦପି ଗରୀୟସୀ

ଚାକିରି ଛାଡ଼ି ମୁକ୍ତ ହୋଇଗଲା ପରେ ମୋର ବିଭିନ୍ନ କ୍ଷେତ୍ରରେ ପ୍ରତ୍ୟକ୍ଷ ଅନୁଭୂତି ଲାଭ କରିବାର ସ୍ପୃହା ବା କୌତୂହଳ ବୃଦ୍ଧି ପାଇଥିଲା । ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ (RSS) ର ଦୁଇଜଣ ଗଣ୍ୟମାନ୍ୟ ବ୍ୟକ୍ତି ଶ୍ରୀ ଅସିତ୍ କୁମାର ବୋଷ୍ ଓ ଶ୍ରୀ ଜଗବନ୍ଧୁ ମିଶ୍ର ମୋ ଘରକୁ ଆସି ଅନୁରୋଧ କଲେ RSS ର ଏକ ବାର୍ଷିକ ତାଲିମ୍ ଶିବିରରେ ସର୍ବାଧିକାରୀ ରୂପେ ଯୋଗଦେବା ପାଇଁ । ଅସିତ୍ ବାବୁ କଟକ ଖ୍ରୀଷ୍ଟ ମହାବିଦ୍ୟାଳୟର ଫିଜ୍‌କ୍ସ ବିଭାଗର ପ୍ରାଧ୍ୟାପକ ଥିଲେ ଏବଂ ପରେ ଉକ୍ତ କଲେଜର ଅଧ୍ୟକ୍ଷ ହୋଇଥିଲେ । ଜଗବନ୍ଧୁ ବାବୁ 'ରାଷ୍ଟ୍ରଦୀପ'ର ସଂପାଦକ ଥିଲେ । (ହାୟ ! ଅସିତ ବାବୁ ସ୍ୱର୍ଗବାସୀ ହେଲେଣି) ଏଭଳି ଗଣ୍ୟମାନ୍ୟ ବ୍ୟକ୍ତି ଦ୍ୱୟଙ୍କର ଅନୁରୋଧ ମୁଁ ଆନନ୍ଦରେ ଗ୍ରହଣ କଲି ।

କଟକ ପୂର୍ବାଞ୍ଚଳରେ ଗଡିରାଉତ ପାଟଣା ନିକଟ ମହାନଦୀ କୂଳରେ ଉକ୍ତ ତାଲିମ ଶିବିର ଅନୁଷ୍ଠିତ ହୋଇଥିଲା । ଏହା ଏକୋଇଶ ଦିନ ଧରି ଚାଲିଥିଲା । ସମଗ୍ର ଓଡ଼ିଶାରୁ ସ୍ୱୟଂସେବକମାନେ ଆସିଥିଲେ । ସେଠାରେ ପ୍ରାଚୀନ ଗୁରୁକୁଳ ଆଦର୍ଶରେ ଏକ ସୁନ୍ଦର ସରସ୍ୱତୀ ବିଦ୍ୟା ମନ୍ଦିର ଅଛି (ହାଇସ୍କୁଲ ସ୍ତରରେ) । ଏହା ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦର ମଞ୍ଜୁରୀ ପ୍ରାପ୍ତ ଏବଂ RSS ଙ୍କ ପରିଚାଳିତ ଏକ ଆବାସିକ ଉଚ୍ଚ ବିଦ୍ୟାଳୟ । ଏଠାରେ ସମସ୍ତ ଛାତ୍ର ଛାତ୍ରାବାସରେ ରହନ୍ତି । ସେମାନଙ୍କୁ ଉତ୍ତମ ଭାବେ ହାଇସ୍କୁଲ ପାଠ୍ୟ ଶିକ୍ଷା ଦିଆଯିବା ସଂଗେ ସଂଗେ ବ୍ୟାୟାମ, କୁସ୍ତି କସରତ ଆଦି ମଧ୍ୟ ଶିକ୍ଷା ଦିଆଯାଏ । ଆଚରଣ ମଧ୍ୟ ଗୁରୁକୁଳ ଆଦର୍ଶରେ ଗଠନ କରାଯାଏ । ସ୍କୁଲର ବିସ୍ତୃତ ପରିସର ମହାନଦୀକୂଳ

ପଡ଼ିଆ ପର୍ଯ୍ୟନ୍ତ ଲାଗିଯାଇଛି । ପରିସର ଭିତରେ ବିଭିନ୍ନ ପ୍ରକାର ଫସଲ ଉତ୍ପାଦନ କରାଯାଏ । ଜନବସତିର ଦୂରରେ ମହାନଦୀ ତଟରେ କୋଳାହଳଶୂନ୍ୟ, ବୃକ୍ଷଲତାବହୁଳ ପରିବେଶରେ ବିଦ୍ୟାଳୟଟି ଅତ୍ୟନ୍ତ ମନୋରମ ବୋଧହୁଏ ।

ତାଲିମ ଶିବିରର କାର୍ଯ୍ୟକ୍ରମ ବହୁମୁଖୀ ଥିଲା । ପ୍ରତିଦିନ ଅପରାହ୍ଣରେ ସ୍ୱୟଂସେବକମାନଙ୍କର ଏକ ସଭା ଅନୁଷ୍ଠିତ ହେଉଥିଲା । ସଭାରେ ବକ୍ତୃତା ଦେବା ପାଇଁ ଏବଂ ଆର୍.ଏସ୍.ଏସ୍.ର ନୀତି, ନିୟମ, ଆଦର୍ଶ ଆଦି ଶିକ୍ଷା ଦେବାପାଇଁ ଭାରତର ବିଭିନ୍ନ ପ୍ରାନ୍ତରୁ ଉଚ୍ଚ ପଦାଧିକାରୀମାନେ ଆସୁଥିଲେ । ସେମାନେ ଇତିହାସ, ଅର୍ଥନୀତି, ବିଜ୍ଞାନ, ରାଜନୀତି, ସମାଜତତ୍ତ୍ୱ ଆଦି ବିଭିନ୍ନ ବିଷୟରେ ପ୍ରବୀଣ ଥିଲେ । ମୁଁ ମଧ୍ୟ ପ୍ରତିଦିନ ସେହି ସଭାରେ ଯୋଗ ଦେଉଥିଲି ଏବଂ ମନଯୋଗ ପୂର୍ବକ ଶୁଣୁଥିଲି । ସେହି ଜ୍ଞାନୀ ପ୍ରବୁଦ୍ଧ ବ୍ୟକ୍ତିମାନଙ୍କର ବକ୍ତୃତାର ସାରମର୍ମ ଥିଲା –

ଭାରତ ଏକ ପ୍ରାଚୀନ ଦେଶ । ଅନେକ ଦେଶରେ ମନୁଷ୍ୟ ସଭ୍ୟତାର ଚିହ୍ନବର୍ଣ୍ଣ ନ ଥିଲାବେଳେ ଏପରିକି ମନୁଷ୍ୟର ଚିହ୍ନବର୍ଣ୍ଣ ନ ଥିଲା ବେଳେ ଭାରତରେ ଉନ୍ନତ ସଭ୍ୟତା ଗଢ଼ି ଉଠିଥିଲା । କୃଷି, ଶିଳ୍ପ, ସାହିତ୍ୟ, ସଂଗୀତ, କଳା, ଚିକିତ୍ସା ଆଦି ବହୁ କ୍ଷେତ୍ରରେ ଭାରତ ବିକାଶ ଲାଭ କରିଥିଲା ଏବଂ ଏ ପର୍ଯ୍ୟନ୍ତ ତାହାର ପୂର୍ବତନ ସ୍ୱରୂପ ମଧ୍ୟ ଅଛି । କିନ୍ତୁ ଏହାର ଶାନ୍ତିପ୍ରିୟ ମାନବିକତାଆଧାରିତ ସରଳ ନିରାଡ଼ମ୍ବର ସଭ୍ୟତା ଓ ସଂସ୍କୃତିକୁ କାଳକ୍ରମେ ବିଭିନ୍ନ ଦେଶରୁ ଅତ୍ୟାଚାରୀ ଶାସକମାନେ ଆସି ନଷ୍ଟଭ୍ରଷ୍ଟ କରିବାକୁ ଲାଗିଲେ । ଶେଷକୁ ଇଂରେଜମାନେ ଆସି ଏହାକୁ ଶାସନ କଲେ ଏବଂ ଗଲାବେଳକୁ ଏହି ସୁନ୍ଦର ମହାନ ଦେଶକୁ ଧର୍ମ ଭିତ୍ତିରେ ଦ୍ୱିଖଣ୍ଡିତ କରି ଦେଇଗଲେ । ଦ୍ୱିଖଣ୍ଡିତ ଦେଶ ପରେ ପୁଣି ତ୍ରିଖଣ୍ଡିତ ହୋଇଗଲା । ପାକିସ୍ତାନ ହେଲା ଧର୍ମଭିତ୍ତିକ ଦେଶ, କିନ୍ତୁ ଭାରତ ହେଲା ଧର୍ମନିରପେକ୍ଷ । ଆର୍.ଏସ୍.ଏସ୍‌ଙ୍କ ମତରେ ଧର୍ମ ନିରପେକ୍ଷ ଦେଶ କିଛି ମନ୍ଦ ନୁହେଁ, କିନ୍ତୁ ଧର୍ମ ନିରପେକ୍ଷତା ନାମରେ ସଂଖ୍ୟାଲଘୁ ଧର୍ମଗୋଷ୍ଠୀମାନଙ୍କ ପ୍ରତି କୋହଳ ନୀତି ଗ୍ରହଣ ଉଚିତ ନୁହେଁ । ଲୋକସଭାରେ ଯେଉଁ ଆଇନ ପ୍ରଣୀତ ହେବ, ତାହା ଆକୁମାରୀ ହିମାଚଳ ଭାରତ ପ୍ରତି ପ୍ରଯୁଜ୍ୟ ହେବା ଦରକାର ଇତ୍ୟାଦି ।

ଆର୍.ଏସ୍.ଏସ୍. ଯେ ହିନ୍ଦୁ ସଂସ୍କୃତିକୁ ରକ୍ଷା କରିବାର ଏକ ଦୃଢ଼ ସଂଗଠନ ଏଥିରେ ସନ୍ଦେହ ନାହିଁ । ଏହା କାହାରି ବିରୁଦ୍ଧରେ ନୁହେଁ, ନିଜ ଦେଶ, ନିଜ ସଂସ୍କୃତି ତଥା ନିଜ ରାଷ୍ଟ୍ରକୁ ରକ୍ଷା କରିବା ଏହାର ଲକ୍ଷ୍ୟ । ମୁଁ ଗତିରାଉତ ପାଟଣା ଶିବିରରେ ସର୍ବାଧିକାରୀ ରୂପେ ଯୋଗ ଦେଇ ଏହା ଉପଲବ୍ଧି କରିଥିଲି । ପୃଥିବୀରୁ ଅନ୍ୟାନ୍ୟ ଧର୍ମ, ସଂସ୍କୃତି, ଜାତି ପ୍ରଭୃତି ଭେଦ ନ ଉଠିବା ପର୍ଯ୍ୟନ୍ତ ଭାରତରେ ଆର୍.ଏସ୍.ଏସ୍.ର ଅସ୍ତିତ୍ୱ ଦରକାର

ବୋଲି ମଧ୍ୟ ଉପଲବ୍ଧି କରିଥିଲି । ସ୍ୱୟଂସେବକମାନଙ୍କର ନିଷ୍ଠା, ଆଚାର, ବିଚାର, ଶୃଙ୍ଖଳା, ଦେଶପ୍ରୀତି, କର୍ତ୍ତବ୍ୟ ପରାୟଣତା ଆଦି ଲକ୍ଷ୍ୟ କରି ମୁଗ୍ଧ ହୋଇଥିଲି । ସ୍ୱୟଂସେବକମାନେ ମହାନଦୀକୂଳ ପଡ଼ିଆରେ କୁସ୍ତି କସରତ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସାରି ସଂସ୍କୃତ ଭାଷାରେ ରଚିତ ଏକ ମଧୁର ମାତୃଭୂମି ବନ୍ଦନା ଗାଉଥିଲେ ଏବଂ ସଂଘ ପତାକାକୁ ଅଭିବାଦନ ଜଣାଉ ଥିଲେ । ପଶ୍ଚିମ ଦିଗରେ ଲୋହିତବର୍ଣ୍ଣ ସୂର୍ଯ୍ୟଙ୍କର ଅସ୍ତକାଳୀନ ଦୃଶ୍ୟ ସଂଗେ ସ୍ୱୟଂସେବକମାନଙ୍କର ମାତୃଭୂମି ବନ୍ଦନା ମନରେ ପବିତ୍ର ଭାବ ସୃଷ୍ଟି କରୁଥିଲା ।

ଶ୍ରୀରାମଚନ୍ଦ୍ର ଲଙ୍କାରେ ରାବଣଙ୍କୁ ନିହତ କରି ଲଙ୍କାକୁ ଆୟତ୍ତ କଲା ପରେ ଲକ୍ଷ୍ମଣ ତାଙ୍କୁ କହିଥିଲେ - "ଭାଇ, ଏହି ସ୍ୱର୍ଣ୍ଣମୟୀ ଲଙ୍କା ବଡ଼ ସୁନ୍ଦର ଓ ବହୁବିଭବଶାଳୀ ଦେଶ । ଆମେ ଏଠାରୁ ଯିବା ନାହିଁ, ଏଠାରେ ରହି ରାଜତ୍ୱ କରିବା ।"

ରାମଚନ୍ଦ୍ର ଉତ୍ତର ଦେଇଥିଲେ - "ଅପି ସ୍ୱର୍ଣ୍ଣମୟୀ ଲଙ୍କା ନ ମେ ଲକ୍ଷ୍ମଣ ରୋଚତେ - ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।" (ଲକ୍ଷ୍ମଣ, ଲଙ୍କା ସ୍ୱର୍ଣ୍ଣମୟୀ ହେଲେ ମଧ୍ୟ ଏଠାରେ ରହିବାକୁ ମୋର ମନ ବଳୁ ନାହିଁ । କାରଣ ନିଜ ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ମଧ୍ୟ ଗରୀୟସୀ ଅଟନ୍ତି ।) ଏଣୁ ଆର୍.ଏସ୍.ଏସ୍ ଯେ ନିଜ ଜନ୍ମଭୂମିର ମର୍ଯ୍ୟାଦା ରକ୍ଷା କରିବାରେ ଲାଗିଛନ୍ତି, ଏହା କୌଣସି ଦୋଷାବହ କାର୍ଯ୍ୟ ହୋଇ ନ ପାରେ ।

ଆର୍.ଏସ୍.ଏସ୍.ଙ୍କ ପରିଚାଳିତ କେତେକ ସରସ୍ୱତୀ ଶିଶୁମନ୍ଦିରକୁ ବାର୍ଷିକ ପୁରସ୍କାର ଉତ୍ସବ ଉପଲକ୍ଷେ ମୁଁ ମୁଖ୍ୟ ଅତିଥି ଭାବେ ଆମନ୍ତ୍ରିତ ହୋଇ ଯାଇଥିଲି । ରେଭେନ୍‌ସା କଲେଜ ଛକ, ନୂଆବଜାର, ତେଲେଙ୍ଗାବଜାର, ତାଳଚେର ପ୍ରଭୃତି ସ୍ଥାନରେ ଅବସ୍ଥିତ ସରସ୍ୱତୀ ଶିଶୁମନ୍ଦିର ଗୁଡ଼ିକୁ ଯାଇଥିଲି । ସେଗୁଡ଼ିକ ଯଥାର୍ଥରେ ଗୋଟିଏ ଗୋଟିଏ ଭଲ ଶିକ୍ଷାନୁଷ୍ଠାନ । ବର୍ତ୍ତମାନ ଓଡ଼ିଶାରେ ଓଡ଼ିଆ ମାଧ୍ୟମ ବିଦ୍ୟାଳୟ ଗୁଡ଼ିକ ଶୋଚନୀୟ ହୋଇ ପଡୁଥିବା ବେଳେ ଏବଂ ପାଶ୍ଚାତ୍ୟ ସଂସ୍କୃତି ଓ ଇଂରାଜୀ ଭାଷାର ପ୍ରବଳ ପ୍ରଭାବ ଯୋଗୁ ଲୋକେ ଇଂରାଜୀ ମାଧ୍ୟମ ସ୍କୁଲମାନଙ୍କରେ ପିଲାଙ୍କୁ ପଢ଼ାଇବାକୁ ଧାଉଁଥିବାବେଳେ ଆର୍.ଏସ୍.ଏସ୍. ଭାରତୀୟ ଭାଷା ମାଧ୍ୟମରେ ତଥା ଭାରତୀୟ ସଂସ୍କୃତିର ଆଦର୍ଶରେ ସରସ୍ୱତୀ ଶିଶୁମନ୍ଦିର ମାନ ଖୋଲି ସୁମହାନ୍ କାର୍ଯ୍ୟ କରୁଛନ୍ତି । ଉକ୍ତ ଶିକ୍ଷାନୁଷ୍ଠାନ ଗୁଡ଼ିକରେ ପିଲାମାନଙ୍କୁ ଉତ୍ତମ ରୂପେ ଶିକ୍ଷା ଦିଆଯିବା ସଙ୍ଗେ ସଙ୍ଗେ ସେମାନଙ୍କର ଚରିତ୍ରଗଠନ ମଧ୍ୟ କରାଯାଉଛି । ତଥାପି ମୋର ଆଶଙ୍କା ହେଉଛି, ଓଡ଼ିଶାରେ ଓଡ଼ିଆ ଭାଷାର ବ୍ୟବହାରକୁ ଯେପରି ଭାବେ କ୍ଷୟ କରାଯାଉଛି, ଇଂରାଜୀ ଭାଷାର ବ୍ୟବହାରକୁ ବୃଦ୍ଧି କରାଯାଉଛି, ଦେଶକୁ ବହୁ ବିଦେଶୀ କମ୍ପାନୀଙ୍କୁ ଆମନ୍ତ୍ରଣ କରାଯାଉଛି, ଦେଶରେ ଜଗତୀକରଣର ବହୁଳତା ବ୍ୟାପୁଛି ଏବଂ ଲୋକଙ୍କର ଦେଶପ୍ରୀତି ଲୋପ ପାଉଛି, ଏଥିରେ ସରସ୍ୱତୀ ଶିଶୁ ମନ୍ଦିର ଗୁଡ଼ିକ ମଧ୍ୟ ଗୁଣ ହୋଇଯିବ କି ନାହିଁ, ଈଶ୍ୱର ଜାଣନ୍ତି ।

# ମୋ ଗାଁ

ମୋ ଗାଁ ନାମ ଆୟତନ । ବ୍ଲକ୍‌-ରାଜକନିକା, ଜିଲ୍ଲା -କେନ୍ଦ୍ରାପଡା । ଆଗେ ଏହା ଅବିଭକ୍ତ କଟକ ଜିଲାର ଅନ୍ତର୍ଗତ ଥିଲା । ମୁଁ ପିଲାଦିନେ ମୋ ଗାଁକୁ ଏତେ ଭଲ ପାଉଥିଲି ଯେ ଗାଁକୁ ଛାଡି ଗୋଟିଏ ରାତି ମଧ୍ୟ କୁଆଡେ ରହିପାରୁନଥିଲି । ଗଲେ ସଂଜବେଳକୁ ଗାଁକୁ ଫେରି ଆସୁଥିଲି ।

ଆମ ଗାଁରେ ରାଜଶାସନ ଅମଳର ହାଟ ମୁଁ ଦେଖିଛି । ଆୟତନରେ ପ୍ରତି ସୋମବାର ଓ ଶୁକ୍ରବାର ଦିନ ହାଟ ବସୁଥିଲା । କନିକାରେ ଆୟତନ ହାଟ ଥିଲା ପ୍ରସିଦ୍ଧ । ବର୍ତ୍ତମାନର କଣ୍ଡପଡା ହାଟ ସେ କାଳରେ ନଥିଲା । ଆୟତନଠାରୁ ପୂର୍ବ ଦିଗକୁ ବିସ୍ତୃତ ଅଂଚଳର ନାମ ତଳଘଟୀ ବା ତଳହଟୀଥିଲା । ତଳଘଟୀର ଲୋକମାନେ ଆୟତନ ହାଟକୁ ଆସି ଆବଶ୍ୟକ ପଦାର୍ଥ କିଣୁଥିଲେ ଏବଂ ନିଜ ନିଜର ଉତ୍‌ପାଦିତ ବା ପ୍ରସ୍ତୁତ ଦ୍ରବ୍ୟ ବିକୁଥିଲେ । ହାଟପାଳି ଦିନ ଆମ ଗାଁରେ ସକାଳୁ ସଂଜ ଯାଏ ଲୋକ ଗହଳି ହେଉଥିଲା । ହାଟ ପଡିଆରେ ଦୁଇଟା ବଡ ବରଗଛ ଏବଂ ଗୋଟାଏ ଜରିଗଛ ଥିଲା ।

ଆମ ଗାଁ ଥିଲା ବୃକ୍ଷ ବହୁଳ । ବଡ ବଡ ବରଗଛ, ଅଶ୍ୱତ୍ଥ ଗଛ, ଝକୁଣ୍ଡା, ଜରି, ଜାମୁ, ତେନ୍ତୁଳି, ଆମ୍ବ, କେନ୍ଦୁ ପ୍ରଭୃତି ଗଛରେ ଗାଁ ପରିପୂର୍ଣ୍ଣ ଥିଲା । ଅନେକ ଲୋକଂକ ବାଡିରେ ନଡିଆ, ତାଳ, ଓଉ, କଦଳୀ, ବାଉଁଶ, ବଉଳ ଆଦି ଗଛ ଥିଲା । ପଶ୍ଚିମ ପଟ ଆଡିଆରେ ଆମ୍ବତୋଟା ଥିଲା । ଆମ ଗାଁକୁ ଲାଗିଥିବା ବାଦରଙ୍ଗା ଗାଁ ମୁଣ୍ଡରେ ମଧ୍ୟ ବହଳ ଆମ୍ବତୋଟା ଥିଲା । ସେସବୁ ତୋଟାର ଆଉ ଚିହ୍ନ ବର୍ଣ୍ଣ ନାହିଁ ।

ଆମ ଗାଁ ମୁଣ୍ଡରୁ କୋରନ୍ଦ ଗାଁ ପର୍ଯ୍ୟନ୍ତ ବନ୍ଧରେ ଏତେ ଗଛ ଓ କିଆବଣ ଥିଲା ଯେ ଆମକୁ ବଣ ଭିତରେ ଗଲା ଭଳି ବୋଧ ହେଉଥିଲା । କୋରନ୍ଦ ଗଣ୍ଡ ପାଖରେ ଗୋଟାଏ ବଡ ବରଗଛ ଥିଲା । ତା ଗଣ୍ଡିରେ ଲୁହା ଛଡି କଂଟାଟାଏ ପିଟା ହୋଇଥିଲା । ସେହି ଗଛମୂଳେ ଆମକୁ ଭାରି ଡର ଲାଗୁଥିଲା । କାରଣ ସେହି ଗଛରେ ଆଗେ ଗୋଟାଏ ଭୂତ ରହୁଥିଲା ବୋଲି ଲୋକେ କହୁଥିଲେ । ଚଂପତିରାୟ ନାମରେ ଜଣେ ଗୁଣିଆ ଭୂତକୁ ବାହାର କରିଦେଇଥିଲେ । ବଡ ଲୁହାଛଡି କଂଟାଟାଏ ମଂତ୍ରରାଇ ଗଛ ଗଣ୍ଡିରେ ପିଟିଦେଇଥିଲେ । ଭୂତ ଯଦିଓ ଛାଡିଚାଲିଯାଇଥିଲା ବୋଲି କୁହାଯାଉଥିଲା, ତଥାପି ସେହି ଗଛ ତଳେ ଯିବାକୁ ଆମକୁ ଡର ଲାଗୁଥିଲା । ଆମ ଗାଁରେ ବର୍ତ୍ତମାନ ହାଟ ବସୁନଥିଲେ ହେଁ ହାଟ ପଡିଆ, ହାଟ ପୋଖରୀ, ହାଟ ଦାଣ୍ଡି ପ୍ରଭୃତି ନାମ ରହିଛି । ହାଟ ପଡିଆକୁ ଲାଗି ରାଜାଂକ କଚେରି ହତା ଓ ହତା ଭିତରେ କଚେରି ଘର ଥିଲା । କଚେରି ଘର ଆଗରେ ଅନେକ ଆମ୍ବଗଛ ଥିଲା । କଚେରିବାଡରେ ଦାଣ୍ଡପଟକୁ ଥିଲା ଗୋଟିଏ ବଡ କଦମ୍ବ ଗଛ । ବର୍ଷାଦିନେ କଦମ୍ବଗଛ ଫୁଲରେ ପରିପୂର୍ଣ୍ଣ ହୋଇଯାଉଥିଲା ଏବଂ ଫୁଲସବୁ ଝଡି ପଡିଆରେ ବିଛେଇ ହୋଇ ପଡୁଥିଲା । ଆମେ ପିଲାମାନେ ଖରାଦିନେ ଓସାରିଆ ତାଳପତ୍ରକୁ ଗୋଲେଇ କରି ବଉଁଚ କଂଟାରେ ଯୋଡି ଚକ ଆକାର କରୁଥିଲୁ ଏବଂ ତାହାକୁ ଦକ୍ଷିଣାପବନରେ ଗଡାଇ ଖେଳୁଥିଲୁଁ । ବୈଶାଖ ପୂର୍ଣ୍ଣମୀ ରାତିରେ 'ହରିହାଟ' ଉତ୍ସବ ହେଉଥିଲା । ହରିହାଟ ଦେଖିବାକୁ ହଜାର ହଜାର ନରନାରୀ ଆସୁଥିଲେ । ତାହା ଥିଲା ଆମ ଗାଁର ସବୁଠାରୁ ବଡ ଉତ୍ସବ । ରାତିରେ ହରିହାଟ ସରିଲା ପରେ ଯାତ୍ରା ହେଉଥିଲା । ଯାତ୍ରାଦଳ ପଇସା ନେଉନଥିଲେ । ସେହି ଯାତ୍ରାର ଗୋଟିଏ ଅନୁଭୂତି ମୁଁ ମୋ 'ରମ୍ୟ ଅରମ୍ୟ' ପୁସ୍ତକର 'ଅନ୍ତରାତ୍ମାର ଅସ୍ତ' ନାମକ ଲେଖାରେ ଲେଖିଛି ।

ଆମ ଗାଁରେ ମଧ୍ୟ ଗୋଟିଏ ଯାତ୍ରାଦଳ ଥିଲା । ଠାକୁରାଣୀ ପାଖରେ ଥିଲା ଯାତ୍ରାଦଳର ଆଖଡା ଘର । ପ୍ରତିଦିନ ସଂଜ ବେଳେ ସେହି ଘରେ ଯାତ୍ରା ଅଭ୍ୟାସ କରାଯାଉଥିଲା । ଆମେ ପିଲାମାନେ ଝରକା ପାଖରେ ଠିଆ ହୋଇ ତାହା ଦେଖୁଥିଲୁଁ । ଆମ ଗାଁରେ ଅନେକ ନାଟ୍ୟପ୍ରିୟ ଲୋକ ଥିଲେ । ସେତେବେଳେ ନାଟକ ଥିଲା କେବଳ ପୌରାଣିକ କାହାଣୀ । କନିକା ରାଜାଂକର ନଅରକୁ ଲାଗି ଗୋଟିଏ ନାଟ୍ୟମଣ୍ଡପ ଥିଲା । ଆମେ ସେଠାକୁ ରାସଲୀଳା ଦେଖିବାକୁ ଯାଉଥିଲୁ । ଉଜ୍ଜିରବେଗଙ୍କ ରଚିତ 'ନନ୍ଦୋତ୍ସବ' ଯାତ୍ରା ମଧ୍ୟ ଦେଖିବାକୁ ଆରସା ଗ୍ରାମକୁ ଯାଉଥିଲୁ । ରାସଲୀଳା ଓ ନନ୍ଦୋତ୍ସବ ଖୁବ୍ ଆଦର ଲାଭ କରିଥିଲା ।

ଆମ ଗାଁ ପାଖ ଭୋଗରା ଗାଁରେ ମଧ୍ୟ ଗୋଟିଏ ଯାତ୍ରାଦଳ ଥିଲା । ଦିନେ ଭୋଗରା ଗାଁର ବଂଶୀଧର ବାରିକ (ଭଣ୍ଡାରି) ମୋର ଚୂଳ କାଟି ଦେଉଥିଲାବେଳେ ମୋତେ 'ଖୁଲଣା ସୁନ୍ଦରୀ' ବିଷୟରେ ଗୋଟିଏ ନାଟକ ଲେଖିବାକୁ କହିଲେ । ସେ ଥିଲେ ଭୋଗରା ଯାତ୍ରାଦଳର ଲୋକ । ମୁଁ ସେତେବେଳେ ତେର ଚଉଦ ବର୍ଷର ବାଳକ ଥିଲି । ଚତୁର୍ଥ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ରହିଥିଲି । ଗୀତ ଲେଖି ବୋଲାବୋଲି କରୁଥିଲି । 'ଖୁଲଣାସୁନ୍ଦରୀ' ନାମରେ ଗୋଟିଏ ଛାନ୍ଦକାବ୍ୟ ପାଂଚ ପାଳି ମଂଗଳା ଓଷାରେ ବୋଲାଯାଉଥିଲା । ଇନ୍ଦୁ ପୁନେଇଁରୁ କୁଆଁର ପୁନେଇ ପର୍ଯ୍ୟନ୍ତ । 'ଦାସ ଧୀବର' ନାମରେ କେହି ଜଣେ କବି ତାହା ଲେଖିଥିଲେ । ପରେ ପାଣ୍ଡୁରକୋଇଲି ଗ୍ରାମର ଶ୍ରୀ ନେତ୍ରାନନ୍ଦ ମିଶ୍ର ଖୁଲଣାସୁନ୍ଦରୀ କାବ୍ୟର ଅନୁସରଣରେ 'ନିଶା ମଂଗଳବାର ଓଷା' ନାମକ ଏକ କାବ୍ୟ ଲେଖିଲେ । ଉକ୍ତ କାବ୍ୟର ବିଷୟବସ୍ତୁ ଏହିପରି ଥିଲା -

ଧନେଶ୍ୱର ନାମରେ ଜଣେ ସୌଦାଗର ଥିଲେ । ତାଂକର ଦୁଇ ରାଣୀ ନୟନା ଓ ଖୁଲଣା । ନୟନାଂକ ଗର୍ଭରୁ ପୁତ୍ର ଜାତ ନ ହେବାରୁ ସୌଦାଗର ତାଂକ ସାନ ଭଉଣୀ ଖୁଲଣାକୁ ବିବାହ କରିଥିଲେ । ଖୁଲଣା ଅନ୍ତଃସତ୍ତ୍ୱା ଥିଲାବେଳେ ସୌଦାଗର ବାଣିଜ୍ୟ କରିବାକୁ ବୋଇତରେ ଅନ୍ୟ ଦେଶକୁ ଗଲେ । ଅନ୍ୟ ଦେଶର ରାଜା କୌଣସି କାରଣରୁ ତାଂକୁ ବନ୍ଦୀ କରି ରଖିଲେ । ଏଣେ ନୟନା ସାନ ଭଉଣୀ ଖୁଲଣାକୁ ବହୁତ କଷ୍ଟ ଦେଲେ । ଖୁଲଣା ବହୁତ କଷ୍ଟ ସହିବା ସଂଗେ ସଂଗେ ମଂଗଳା ଓଷା କଲେ । ମଂଗଳାଂକ କୃପାରୁ ତାଂକର ପୁଅଟିଏ ହେଲା । ନାମ ଶ୍ରୀଧର । ବାଳକ ଶ୍ରୀଧର ମଂଗଳାଂକ କୃପାରୁ ବୋଇତରେ ସମୁଦ୍ର ଅତିକ୍ରମ କରି ପିତା ଯେଉଁ ଦେଶରେ ବଂଦୀ ହୋଇ ରହିଥିଲେ, ସେଠି ପହଂଚିଲେ ଏବଂ ସେଠାକାର ରାଜାଂକୁ ପ୍ରୀତ କରି ପିତାଂକୁ କାରାମୁକ୍ତ କଲେ । ତା ପରେ ପିତାପୁତ୍ର ବୋଇତରେ ପ୍ରଚୁର ଧନରତ୍ନ ଘେନି ସ୍ୱଦେଶକୁ ଆସିଲେ । ଏହି କାହାଣୀଟି ଖୁବ୍ ଲୋକାଦୃତ ଥିଲା ।

ବଂଶୀଧର ବାରିକ ମୋତେ ଏହି ବିଷୟରେ ନାଟକଟିଏ ଲେଖିଦେବାକୁ କହନ୍ତେ ମୁଁ ଲେଖିଲି । ସେ ସମୟରେ ନାଟକ ଥିଲା ଗୀତାଭିନୟ । ଗୀତ ଓ କଥା ମିଶାମିଶି । ମୋ ରଚିତ 'ଖୁଲଣାସୁନ୍ଦରୀ' ଗୀତାଭିନୟ ନେଇ ଭୋଗରାଦଳ ଯାତ୍ରା କଲେ । ତାହା ଖୁବ୍ ଲୋକାଦୃତ ହେଲା । କେତେ ବର୍ଷପରେ ଭୋଗରା ଦଳ ଭାଂଗିଗଲା ଏବଂ ମୋ ଖାତାଟି ହଜିଗଲା । ମୋର ଆଜି ପର୍ଯ୍ୟନ୍ତ ସେହି ଗୀତାଭିନୟର କିଛି କିଛି ପଦ ମନେ ଅଛି । ନମୁନା ସ୍ୱରୂପ, ବାଳକ ଶ୍ରୀଧର ତା ମାଆକୁ କହୁଛି -

ଲୋଡି ଆଣି ଦିଅ ଖଡୀ ପଢ଼ିବି ପାଠ
ପଢ଼ିବାକୁ ମନ ମୋର ହୁଏ ଉଚ୍ଚାଟ, ମାଆ ।
ପୁଣି ଶ୍ରୀଧର ଆଉ ଏକ ଜାଗାରେ କହୁଛି -
କେତେ ଅମଂଗଳ ମାତ ଦେଖୁଛି ମୁଁ ଆଜି ଗୋ
ଦିବସେ ବସି ପେଚକ କର୍କଶେ ଦେଉଛି ଡାକ
ବାୟସ ରାବ ଚମକ ନପାରେ ମୁଁ ହେଜି ଗୋ ।

ଇତ୍ୟାଦି ।

ଆମ ଗାଁଟି କନିକାରେ ଏକ ପ୍ରଧାନ ଗାଁ ଥିବାରୁ ଯେଉଁ ଯାତ୍ରାଦଳ ଆମ ଗାଁ ବାଟ ଦେଇ ଯାଉଥିଲେ, ସେମାନେ ଆମ ଗାଁରେ ରାତିଏ ଦିରାତି ଯାତ୍ରା ଦେଖାଇବାକୁ ଇଚ୍ଛା କରୁଥିଲେ । ସଂଗେ ସଂଗେ ଆମ ଗାଁର ଉତ୍ସାହୀ ଯୁବକମାନେ ଚାଉଳ, ମୁଗ, ନଡିଆ, ପନିପରିବା, ପଇସା ଆଦି ମାଗଣ କରି ଆଣୁଥିଲେ । ଯାତ୍ରାଦଳ ରୋଷେଇ କରି ଖାଇ ପ୍ରାୟ ରାତି ଅଧ ବେଳକୁ ଯାତ୍ରା ଆରମ୍ଭ କରୁଥିଲେ ଏବଂ ପୂରା ସକାଳ ହେଲା ବେଳକୁ ଯାତ୍ରା ସରୁଥିଲା । ବହୁ ନରନାରୀ ହେଁସ, ମଶିଣା, ନଡିଆ ଝଂଚ ଆଦି ପକାଇ ବସି ତନ୍ମୟ ଭାବରେ ଯାତ୍ରା ଦେଖୁଥିଲେ ।

ଲୋକମାନଙ୍କର ଅତ୍ୟନ୍ତ ଯାତ୍ରାରୁଚି ଥିଲା । ଆମ ଗାଁରେ ଓ ଭୋଗରା ଗାଁରେ ଯାତ୍ରାଦଳ ଭାଂଗିଗଲା ପରେ ଆମ ଗାଁରେ ଗୋଟିଏ ଡ୍ରାମା ପାର୍ଟିର ଆରମ୍ଭ ଘଟିଲା । ମୋର ବୟସ ସେତେବେଳେ କୋଡିଏ ଭିତରେ । ଆମ ଗାଁର ଅନେକ ଯୁବକ ତଥା ବୟସ୍କ ବ୍ୟକ୍ତି - ସର୍ବ ଶ୍ରୀ ଘନଶ୍ୟାମ ଧଳ, ମହେନ୍ଦ୍ର ନାଥ ରାୟ, ନରୋତ୍ତମ ସାହୁ, ଯଦୁମଣି ରାୟ, ଦଉହରି ସୂତାର, ବିପ୍ରଚରଣ ସୂତାର, ନେତ୍ରାନନ୍ଦ ସାହୁ, ବନମାଳୀ ପଣ୍ଡା, କରୁଣାକର ସାହୁ, ଲକ୍ଷ୍ମୀକାନ୍ତ ମିଶ୍ର, ମାୟାଧର ନାୟକ, ଅର୍ଜୁନି ନାୟକ, ରାମଚନ୍ଦ୍ର ଗିରି, ବଂଶୀଧର ଶତପଥୀ, ଆଦିକନ୍ଦ ରାୟ ପ୍ରଭୃତି ଡ୍ରାମାପାଟିରେ ମିଶିଥିଲେ । ମୁଁ ମଧ୍ୟ ମିଶିଥିଲି । ମହାଦେଈ ଆଡିଆ ଗାଁର କୃଷ୍ଣଚନ୍ଦ୍ର ରାୟ (କବିରାଜ), ଭୋଗରା ଗାଁର ପରୀକ୍ଷିତ ବିଶ୍ୱାଳ, ବଳରାମ ବିଶ୍ୱାଳ, କାଂଗାଳି ଚରଣ ମହାନ୍ତି ଆଦି ମଧ୍ୟ ମିଶିଥିଲେ । ଆମେ ଅଭିଯାନ, ଭୀଷ୍ମ, ତୁଳସୀ ଦାସ ଓ ବେଣୀବଂଧନ - ଏହି ଚାରିଟି ନାଟକ ଅଭିନୟ କରିଥିଲୁ । ବେଣୀବଂଧନ ନାଟକରେ ରାମଚନ୍ଦ୍ର ଗିରି ଦୁଃଶାସନ ଭୂମିକାରେ ଏବଂ ଯଦୁମଣି ରାୟ ଭୀମ ଭୂମିକାରେ ଅଭିନୟ କରିଥିଲେ । ଦୁହିଁଙ୍କର ଗଦାଯୁଦ୍ଧ ଦର୍ଶକ ମାନଂକ ମନରେ ଖୁବ୍ ଉତ୍ତେଜନା ସୃଷ୍ଟି କରିଥିଲା । ଶିକୋ ଗ୍ରାମର ଉଦୟନାଥ ମହାପାତ୍ର ଓସ୍ତାଦ୍ ଥିଲେ, ଅର୍ଥାତ୍ ହାରମୋନିଅମ୍ ବଜାଇବା, ଗୀତର ସ୍ୱର କରି ଶିଖାଇବା,

ନାଚ ଶିଖାଇବା ପ୍ରଭୃତି ତାଂକର ଦାୟିତ୍ୱ ଥିଲା । ତୁଳସୀ ଦାସ ଓ ବେଣୀବନ୍ଧନ ନାଟକ ଦୁଇଟି ମୁଁ ରଚନା କରିଥିଲି ।

ପିଲାଦିନେ ଏକାକୀ ବୁଲିବା ଏବଂ ଗଛମୂଳେ ବସି ମନେ ମନେ ଗୀତ ବାଂଧିବା ଥିଲା ମୋର ସଉକ । ପ୍ରତିଦିନ ବିଲବାଡି କାମ ବା ଗୋରୁଗାଇ କାମ ସାରିଲାପରେ ମୁଁ ବିଲ ଆମ୍ବତୋଟାକୁ ଯାଉଥିଲି । ମୋର ଅତ୍ୟନ୍ତ ପ୍ରିୟ ସ୍ଥାନ ଥିଲା ସେହି ଆମ୍ବତୋଟା ଓ ସେଠାରୁ ଖୁବ୍ ଅଳ୍ପ ଦୂରରେ ବହିଯାଉଥିବା ଖରସୁଆ ନଇକୂଳ । ସେହି ଆମ୍ବତୋଟାର ଆଉ ଚିହ୍ନ ବର୍ଣ୍ଣ ନାହିଁ ।

'ଆୟତନ' କନିକାର ଏକ ଐତିହ୍ୟସଂପନ୍ନ ଗ୍ରାମ । ୧୯୨୨ରେ କନିକାରେ ଯେଉଁ ପ୍ରଜା ଆନ୍ଦୋଳନ ହୋଇଥିଲା, ସେଥିରେ ଆୟତନ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲା । ଏହି ଗ୍ରାମରେ ପ୍ରଜାସଭା ଅନୁଷ୍ଠିତ ହେଉଥିଲା । ଆନ୍ଦୋଳନକୁ ଦମନ କରିବାପାଇଁ ଯାଉଥିବା ପୁଲିସ ଫଉଜ ଉପରେ ଆକ୍ରମଣ କରିବା ପାଇଁ ଆମ ଗାଁର ଦୁର୍ଗାବତୀ ସୂତାର ଓ ତାଙ୍କ ପୁଅ ସୂର୍ଯ୍ୟମଣି ସୂତାର ଖଣ୍ଡାଧରି ବାହାରି ପଡିଥିଲେ । ପୁଲିସ ତାଂକୁ କାବୁ କରି ବାଂଧି ନେଇଥିଲେ ଏବଂ ଜେଲକୁ ପଠାଇ ଦେଇଥିଲେ । ଆମ ଗାଁର ବହୁ ଲୋକଂକୁ ନିର୍ଯ୍ୟାତନା ଦିଆଯାଇଥିଲା ଏବଂ ଜେଲକୁ ପଠାଇ ଦିଆଯାଇଥିଲା । ମୋର ପିତାମହ ଶ୍ରୀ ଭାଗୀରଥି ମହାପାତ୍ର ପୁଲିସଠାରୁ ନିସ୍ତୁକ ମାଡ ଖାଇଥିଲେ ଏବଂ କିଛି କାଳ ପରେ ସ୍ୱର୍ଗବାସୀ ହୋଇଥିଲେ । ୧୯୨୨ କନିକା ପ୍ରଜା ଆନ୍ଦୋଳନ ଥିଲା ଓଡିଶାରେ କଂଗ୍ରେସର ଅସହଯୋଗ ଆନ୍ଦୋଳନର ଆଦ୍ୟ ଘଟଣା । ଭାରତର ସ୍ୱାଧୀନତା ପାଇଁ କନିକା, ବିଶେଷଭାବେ 'ଆୟତନ' ଗାଆଁଟି କମ୍ ତ୍ୟାଗ ସ୍ୱୀକାର କରିନାହିଁ ।

ଆମ ଗାଁର କାଳୀଚରଣ ମହାନ୍ତି ପ୍ରଥମ ବିଶ୍ୱ ଯୁଦ୍ଧରେ 'ମିତ୍ରପକ୍ଷ'ର ଜଣେ ସୈନିକ ଭାବରେ ଲଢି ଇରାକର ବାଗଦାଦ ପର୍ଯ୍ୟନ୍ତ ଯାଇଥିଲେ । ସାହସିକତା ପାଇଁ କନିକା ରାଜସରକାର ତାଂକୁ 'ରଣବାହୁ' ଉପାଧି ଦେଇଥିଲେ । ମୁଁ ଦେଖିଛି, ସେ ଖୁବ୍ ବୁଢା ବୟସରେ ମଧ୍ୟ ଖରାଦିନେ ବିଲରେ ହଳ କରୁଥିଲେ ।

ସେତେବେଳେ ହଇଜା ଓ ବସନ୍ତ, ଦୁଇଟା ପ୍ରବଳ ମାରାତ୍ମକ ରୋଗ ଥିଲା । ଥରେ ରାଉତବର୍ଦ୍ଧନୀ ଗ୍ରାମରେ ହଇଜା ଲାଗିଥିଲା । ୫/୭ ଦିନ ମଧ୍ୟରେ ବହୁ ଲୋକ ମରିଯାଇଥିଲେ । ଏ ଦୁଇ ରୋଗର ସେତେବେଳେ ପ୍ରତୀକାର ନଥିଲା । ଟି.ବି. ରୋଗର ମଧ୍ୟ ପ୍ରତୀକାର ନଥିଲା । ଠାକୁରାଣୀଂକ କ୍ରୋଧରୁ ହଇଜା ଓ ବସନ୍ତ ରୋଗ ହେଉଥିଲା ବୋଲି ଲୋକେ ବିଶ୍ୱାସ କରୁଥିଲେ । କୌଣସି ଗାଁରେ ହଇଜା ବା ବସନ୍ତ ଲାଗିଲେ

ଲୋକମାନେ ଗାଁ ଠାକୁରାଣୀଙ୍କ ପାଖରେ ମାନଣା, ପଣା, କୀର୍ତ୍ତନ , ଜଂତାଳ ଆଦି କରୁଥିଲେ । ଏହା ଥିଲା ସେ ସମୟର ପ୍ରବଳ ଅଂଧବିଶ୍ୱାସ ।

ରାଜ ଶାସନ ତଥା ଇଂରେଜ ଶାସନ ପ୍ରତି ଲୋକଂକର ଖୁବ୍ ଭୟଥିଲା । ତେଣୁ ଲୋକଂକର ଅନେକ ପରିମାଣରେ ନୈତିକତାବୋଧ ଥିଲା । ସେତେବେଳେ ଯଦି ବର୍ତ୍ତମାନ ପରି ବିଜ୍ଞାନର ଅଗ୍ରଗତି ହୋଇଥାଆନ୍ତା, ତେବେ ଲୋକ ସୁଖଶାନ୍ତିରେ ରହିଥାନ୍ତେ । ବର୍ତ୍ତମାନ ବିଜ୍ଞାନର ଯଥେଷ୍ଟ ଅଗ୍ରଗତି ହୋଇଛି, କିଂତୁ ଶାସନ ଶୃଂଖଳା ନଥିବାରୁ ଏବଂ ସେହି କାରଣରୁ ଲୋକଂକର, ବିଶେଷତଃ ନେତାମାନଂକର ଭୟ ନ ଥିବାରୁ ନୈତିକତାବୋଧ ଖୁବ୍ ହ୍ରାସ ପାଇଛି । କେତେକଲୋକଂକର ଆର୍ଥିକ ଅବସ୍ଥା ଭଲ ହୋଇଥିଲେ ମଧ୍ୟ ସୁଖଶାନ୍ତି ଅନୁଭବ ହେଉନାହିଁ । ମୋ ଗାଁରେ ମଧ୍ୟ ପୂର୍ବର ଆଉ ସେହି ସୌନ୍ଦର୍ଯ୍ୟ, ସୁଖଶାନ୍ତି ଓ ସନ୍ତୋଷ ନାହିଁ, ଯଦିଓ ଗାଁକୁ ରାସ୍ତା ହୋଇଛି, ବସ୍, କାର, ଟ୍ରକ୍, ଟ୍ରାକ୍ଟର ଆଦି ଚାଲୁଛି ଏବଂ ଆଧୁନିକ ସଭ୍ୟତାର ଅନ୍ୟାନ୍ୟ କେତେକ ଉନ୍ନତି ହୋଇଛି । ଦଳଗତ ରାଜନୀତି ଗାଁକୁ ଅଶାନ୍ତିଜର୍ଜରିତ କରିଦେଇଛି ।



# ପିଲାଦିନର ସାଙ୍ଗସାଥୀ

**ଅଣାକାର :**

ପିଲାଦିନେ ସାଙ୍ଗସାଥୀମାନଙ୍କ ସହିତ ଖେଳିବୁଲି ମୁଁ ଯେଉଁ ଆନନ୍ଦ ଅନୁଭବ କରିଥିଲି, ତାହା ବର୍ତ୍ତମାନ ସ୍ୱପ୍ନ ଭଳି ଲାଗୁଛି । ମୋର ସାଙ୍ଗମାନଙ୍କ ମଧ୍ୟରେ ଅଣାକାର (ବାବାଜୀ), ବାବାଜୀ ଚରଣ ପଣ୍ଡା, ଦଣ୍ଡହରି ନାୟକ, ନବଘନ ଜେନା, କୃଷ୍ଣଚନ୍ଦ୍ର ରାଉତ, ଶଙ୍କର ମହାନ୍ତି, ନାଥ ପଣ୍ଡା, ଅକ୍ଷୟ ପଣ୍ଡା, ନଟବର ସାମଲ, ଗୟାଧର ପଲେଇ ଆଦି ଭାରି ଘନିଷ୍ଠ ଥିଲେ । ଅଣାକାର ଥିଲା ମୋର ପ୍ରଧାନ ସାଙ୍ଗ । ତାକୁ ପିଲାଦିନୁ ବାବାଜୀ କରାଯାଇଥିଲା । ମୁଁ ବଡ଼ ହେଲା ପରେ ଜାଣିବାକୁ ପାଇଥିଲି, ସେ ମାତୃଗର୍ଭରୁ ଭୂମିଷ୍ଠ ହୋଇ ପାରୁ ନ ଥିଲା । ତା ମାଆ ଗୁରୁତର ପ୍ରସବବେଦନା ଅନୁଭବ କରୁଥିଲେ । ପରିବାରର ସମସ୍ତେ ଭଗବାନଙ୍କୁ ପ୍ରାର୍ଥନା କଲେ, "ହେ ପ୍ରଭୁ, ଏ ପିଲାଟି ଯଦି ଜନ୍ମହୋଇ ବଂଚିଯାଏ, ତେବେ ପୁଅଟିଏ ହୋଇଥିଲେ ତାକୁ ବାବାଜୀ କରିଦେବୁ, ଝିଅଟିଏ ହୋଇଥିଲେ ମାତା କରିଦେବୁ ।"

ଯାହା ହେଉ, ଅଣାକାର ଭଗବାନଙ୍କ ଦୟାରୁ ଭୂମିଷ୍ଠ ହୋଇଥିଲା । ତାକୁ ଚାରିପାଞ୍ଚବର୍ଷ ପାଳିଲା ପରେ ଜଣେ ମାତାଙ୍କୁ ସମର୍ପି ଦିଆ ଯାଇଥିଲା । ମାତାଙ୍କର ଗୋଟିଏ ଛୋଟ ମଠ ଥିଲା । ଅଣାକାର ମାତାଙ୍କ ପାଖରେ ରହିଲା । ମାତା ବୟସ୍କା ହୋଇଥିଲେ ମଧ୍ୟ ତାକୁ ଆଦରରେ ପାଳିଲେ ।

ଅଣାକାର ସବୁବେଳେ ମୋ ସାଙ୍ଗରେ ସାଙ୍ଗ ହେବାକୁ ଭଲ ପାଉଥିଲା । ଆମେ ଦୁହେଁ ପାଚିଲା କେନ୍ଦୁ ଖାଇବାକୁ ନାଗାମଠ ପାଖକୁ ଯାଉଥିଲୁ । ସେ କେନ୍ଦୁଗଛରେ

ଚଢ଼ି କେନ୍ଦୁ ତୋଳୁଥିଲା, ଦୁହେଁ ଖାଉଥିଲୁ । ପଶ୍ଚିମ ପଟ ଆଡ଼ିଆରେ ବଇଁଚ କୋଳି, କ୍ଷୀର କୋଳି, ବରକୋଳି ଆଦି ତୋଳି ଖାଉଥିଲୁ । ରବି ଋତୁରେ ବିଲକୁ ଯାଇ ମୁଗ କ୍ଷେତରୁ ମୁଗ ଛୁଇଁ ତୋଳି ଖାଉଥିଲୁ । ଅଣାକାର ଥିଲା ସାହସୀ । ଥରେ ଆମେ ଦୁହେଁ ମୁଗଛୁଇଁ ଖାଇବାକୁ ବିଲକୁ ଯାଇଥାଉ, ପଲେ ମାଙ୍କଡ଼ ବିଲରେ ମୁଗଛୁଇଁ ଖାଉଥିବାର ଦେଖିଲୁ । ମୁଁ ଭୟରେ ଯିବାକୁ ନାହିଁ କଲି । କିନ୍ତୁ ଅଣାକାର ଏଣିକି ତେଣିକି ଚାହିଁ ଖଣ୍ଡିଏ ବାଉଁଶକଣି ପଡ଼ିଥିବାର ଦେଖି ତାହାକୁ ଧରିଲା ଏବଂ ମୋତେ ତା ପଛେ ପଛେ ଯିବାକୁ କହିଲା । ମୁଁ ବଡ଼ ଡରରେ ଯାଉଥାଏ, ଗୋଟାଏ କୋଦା ମାଙ୍କଡ଼ ଖିଙ୍କାରି ହୋଇ ଆମ ଆଡ଼କୁ ମାଡ଼ି ଆସିଲା । ମୁଁ ଭୟରେ ଚିତ୍କାର କଲି, କିନ୍ତୁ ଅଣାକାର ବାଉଁଶ କଣି ଧରି ତାକୁ ଏପରି ପାହାରେ ଦେଲା ଯେ ମାଙ୍କଡ଼ଟା ଭୟରେ ପଳାଇଲା । ଅଣାକାର ବାଉଁଶ କଣି ଧରି ଗୋଡ଼ାଇ ଗୋଡ଼ାଇ ପଲକଯାକ ମାଙ୍କଡ଼ଙ୍କୁ ଖଣ୍ଡେ ଦୂରରେ ଛାଡ଼ି ଆସିଲା । ତା' ପରେ ଆମେ ଦୁହେଁ ମୁଗଛୁଇଁ ତୋଳି ଖାଇଲୁ ।

ମୋ ବୋଉ ଥରେ ଚାରିଅଣା ଦେଇ ଖଣ୍ଡିଏ ଫତେଇ ମୋ ପାଇଁ କିଣିଥିଲା । ଅଣାକାର ଆମ ଘରେ ଆସି ଯେତେବେଳେ ଦେଖିଲା ମୁଁ ଫତେଇ ଖଣ୍ଡିଏ ପିନ୍ଧିଛି, ସେ ତାହାକୁ ଧରି ଦେଖିବାରେ ଲାଗିଲା । ମୋ ବୋଉ ଜାଣିଗଲା ଯେ ସେ ଫତେଇ ଖଣ୍ଡିଏ ପିନ୍ଧିବାକୁ ଇଚ୍ଛା କରୁଛି । ବୋଉ ମୋତେ କହିବାରୁ ମୁଁ ଫତେଇଟିକୁ ଦେହରୁ ଓହ୍ଲାଇ ତାକୁ ପିନ୍ଧିବାକୁ ଦେଲି, ସେ ପିନ୍ଧିଲା । ଅଣାକାର ଫତେଇ ପିନ୍ଧି ଯେତେବେଳେ ମଠକୁ ଗଲା, ତା ମାଆ (ମାତା) ମନେ କଲେ ବୋଧହୁଏ କେଉଁଠୁ ଚୋରି କରି ଆଣିଛି । ତାକୁ ପଚାରିଲେ । ଅଣାକାର ମୋ ବୋଉ ଦେଇଛି ବୋଲି କହିଲା । ମାତା ଆସି ମୋ ବୋଉକୁ ପଚାରିଲେ ଏବଂ ବୋଉ ଦେଇଛି ବୋଲି ଜାଣି ତା' ଉପରେ ରାଗିଲେ ନାହିଁ । ବୋଉ ମୋ ପାଇଁ ଆଉ ଖଣ୍ଡିଏ ଫତେଇ ଆମ ଗାଁ ହାଟରୁ କିଣିଲା । ଆମ ଗାଁରେ ସେ ସମୟରେ ସପ୍ତାହରେ ଦୁଇଥର ହାଟ ବସୁଥିଲା । ହାଟରେ ଚଳଣି ଜିନିଷ ସବୁ କିଣାବିକା ହେଉଥିଲା ।

ମାତା ଆମ ଅଞ୍ଚଳର ବାବାଜୀ ଓ ମାତାମାନଙ୍କୁ ନିମନ୍ତ୍ରଣ କରି ଏକ ମହୋତ୍ସବ କରିଥିଲେ ଏବଂ ସେମାନଙ୍କୁ ଓ ଅନ୍ୟାନ୍ୟ ବହୁ ଲୋକଙ୍କୁ ଖାଇବାକୁ ଦେଇଥିଲେ । ମହୋତ୍ସବରେ ଅଣାକାରକୁ ବାବାଜୀ ଓ ମାତାମାନେ କୌପୁନି ପିନ୍ଧାଇଲେ, ବେକରେ ତୁଳସୀ କଣ୍ଠିମାଳ ପିନ୍ଧାଇଲେ । ଅଣାକାର ବାବାଜୀ ହେଲା, କିନ୍ତୁ ଭିକ ମାଗିବାକୁ ଗଲା ନାହିଁ । ଲୋକଙ୍କର କାମକାର୍ଯ୍ୟ କରି ଚଳିଲା । ଭିକ ମାଗିବାକୁ ତାକୁ ଭଲ ଲାଗିଲା ନାହିଁ । ମୁଁ ପଣ୍ଡିତ ଚାକିରି ଖଣ୍ଡିଏ ପାଇ କଟକ ଆସିଲି । ଛୁଟିରେ ଗାଁକୁ ଗଲେ ସେ

ବରାବର ମୋ ପାଖକୁ ଆସେ । ମୋତେ ଦେଖିଲା ମାତ୍ରେ ଆଗେ ମୋ ହାତ ପାପୁଲି ଦୁଇଟିକୁ ଆଦରରେ ଚାପି ଧରେ । ଦୁହେଁ ପ୍ରତିଦିନ ସଂଜବେଳେ ବସି କଥା ହେଉ । ଛୁଟି ସରିଲେ ମୁଁ କଟକ ଆସିବା ଦିନ ମୋତେ ଗାଁମୁଣ୍ଡ ଶେଷ ପର୍ଯ୍ୟନ୍ତ ବଳେଇ ଦେବାକୁ ଆସେ । ତା' ଆଖି ଓ ମୋ ଆଖି ଛଳଛଳ ହୋଇଯାଏ । ପ୍ରାୟ ସତୁରି ବର୍ଷ ପର୍ଯ୍ୟନ୍ତ ମୁଁ ତାର ଅନାବିଳ ବନ୍ଧୁତା ପାଇଥିଲି । କଟକରେ ମୁଁ ଯେଉଁ ଦିନ ତା ବିୟୋଗ ଖବର ପାଇଲି, ମୋତେ ଅତ୍ୟନ୍ତ ଦୁଃଖ ଓ ଉଦାସ ଲାଗିଲା । ଖାଇବା ପିଇବାକୁ ଇଚ୍ଛା ହେଲା ନାହିଁ । ତାକୁ ପଶ୍ଚିମ ପଟ ଆଡ଼ିଆରେ ଯେଉଁଠି ସମାଧି ଦିଆଯାଇଛି, ମୁଁ ଯେବେ ଗାଁକୁ ଯାଏଁ, ତା' ସମାଧି ପାଖକୁ ଯାଏ ଏବଂ କିଛି ସମୟ ସେଠାରେ ବସେ । ଅଣାକାର ସହିତ ବିତାଇଥିବା ଦିନଗୁଡ଼ିକ ମୋ ସ୍ମୃତିପଟରେ ନାଚିଯାଏ । ମନଟା ହାହାକାର କରିଉଠେ ।

**ବାବାଜୀ :**

ମୋର ଆଉ ଜଣେ ଘନିଷ୍ଠ ସାଙ୍ଗ ଥିଲା ବାବାଜୀ ପଣ୍ଡା । ଥରେ ଆଷାଢ଼ ମାସରେ ନୂଆ କରି ଅଳ୍ପ ଅଳ୍ପ ବଢ଼ିପାଣି ମାଡ଼ି ଆସିଥାଏ । ବାବାଜୀ ଓ ମୁଁ ଦୁହେଁ ଲୁଚି କରି ପଶ୍ଚିମପଟ ବିଲକୁ ନଳ ପକାଇବାକୁ ଗଲୁ । କିଆବଣ ଭିତର ଭୁଲରେ ନଳ ପକାଇଲୁ । (କିଆବଣ ଭିତରେ ଥିବା ଛୋଟିଆ ଖୋଲା ଜାଗାକୁ 'ଭୁଲ' କହୁଥିଲେ ।) ଉଦୁଉଦିଆ ଖରାବେଳ । ଭୁଲରେ ପାଣି ଆଣ୍ଠୁଏ । ଭୁଲ ମଝିରେ ବାଡ଼ ପରି ଗୁଡ଼ିଏ କିଆଗଛ । ସେ ଗୋଟିଏ ପଟରେ ଚାରିପାଞ୍ଚଟା ନଳ ପାଣି ଉପରେ ଭସାଇ ଥାଏ, ମୁଁ ଆରପଟରେ ଚାରିପାଞ୍ଚଟା ନଳ ଭସାଇ ଥାଏ । ନଳରେ ବନ୍ଧା ହୋଇଥିବା ଜିଆ ବା କଟା ଗେଣ୍ଡାକୁ ବଡ଼ ବଡ଼ ଚିଙ୍ଗୁଡ଼ି ମାଛ ଖାଇଲେ ନଳ ପାଣିରେ ହଲଚଲ ହୁଏ । ଆମେ ଜାଣିବାକୁ ପାଉ, ଚିଙ୍ଗୁଡ଼ି ଥୋପ ଖାଉଛି । ପାଛିଆରେ ଚିଙ୍ଗୁଡ଼ିକୁ ଛାଣି ଆଣୁ । ହଠାତ୍ ବାବାଜୀ ପାଣିରେ ଡେଇଁ ଡେଇଁ ଭୁଲ ବାହାରକୁ ବାହାରି ଆସି ମୋତେ ଡାକ ପକାଇଲା - "ଧନୀ, ଧନୀ, ଚଂଚଳ ପଳେଇଆ, ପଳେଇଆ ।"

ମୁଁ ଛାନିଆ ହୋଇ ପାଛିଆ ଓ ନଳ ସବୁକୁ ଛାଡ଼ିଦେଇ ତା ପାଖକୁ ପଳେଇ ଗଲି । ସେ ମୋତେ ଟାଣି ଧରି ଦୌଡ଼ିଲା । ଖାଲି କହୁଥାଏ 'ପଳେଇଆ, ପଳେଇଆ' । ମୁଁ କିଛି ବୁଝି ନ ପାରି ଭୟରେ ତା ସାଙ୍ଗରେ ଦୌଡ଼ିବାରେ ଲାଗିଲି । ବିଲରେ ଜଣେ ହେଲେ ଲୋକ ଦିଶୁ ନ ଥାନ୍ତି । ଦ୍ୱିପହରେ ଖାଇବାକୁ ଘରକୁ ଯାଇ ଥାଆନ୍ତି । ଆମେ ଦୁହେଁ ଆଣ୍ଠୁଏ ପାଣିରେ ଡବ ଡବ କରି ଗୋଡ଼ ପକାଇ, ପଛକୁ ନ ଚାହିଁ, ଦୌଡ଼ିବାରେ ଲାଗିଲୁ ଏବଂ ହାଟ ପଡ଼ିଆ ପାଖରେ ପହଞ୍ଚିଲୁ ।

ବାବାଜୀ ଗୋଟାପଣେ ଥରୁଥାଏ । କହିଲା – "ଧନୀ, ଆଜି ଆମେ ବଂଚିଗଲେ ରେ । ଗୋଟାଏ ଚିରୁକୁଣୀ ବାଳ ମୁକୁଳା କରି, ନିଆଁ ଜାଳି ତା ଛୁଆକୁ ସେକୁଥିଲା । ମତେ ଦେଖି ଗର୍ଜନ କରି ଉଠିଲା । ଆଉ ଟିକିଏ ଡେରି ହୋଇଥିଲେ ଆମ ଦୁହିଁଙ୍କୁ ଖାଇ ଯାଇଥାଆନ୍ତା ।" ଗାଁର ଯେତେ ଲୋକ ଆମ କଥା ଶୁଣିଲେ, ସତ ମଣିଲେ । କାରଣ, କିଛି ମାସ ତଳେ ଆମ ଗାଁର ଧଳସାହିର ଏକ ବୋହୂ ଗର୍ଭିଣୀ ଅବସ୍ଥାରେ ମରି ଯାଇଥିଲା । ତା ପରିବାରର ଲୋକେ ତାକୁ ସେଇ କିଆ ଭୁଲ ଭିତରେ ପକାଇ ଦେଇ ଆସିଥିଲେ । ଶବକୁ ଶାଗୁଣା, ଶିଆଳ ଖାଇ ଦେଇଥିଲେ । ଗର୍ଭିଣୀ ସ୍ତ୍ରୀ ମରିଗଲେ ଚିରୁକୁଣୀ ହୋଇଯାଏ ଏବଂ ରାତିରେ ନିଆଁ ଜାଳି ତା ଛୁଆକୁ ସେକେ ବୋଲି ଆମେ ଲୋକଙ୍କଠାରୁ ଶୁଣିଲୁ । କେହି କେହି ରାତିରେ ସେହି ଭୁଲରେ ନିଆଁ ଜଳୁଥିବାର ଦେଖିଥିଲେ ବୋଲି ମଧ୍ୟ କହିଲେ । ଗର୍ଭିଣୀ ବୋହୂକୁ ସେଠି ପକାଯାଇଥିଲା, ଏ କଥା ଆମେ ଜାଣି ନ ଥିଲୁ । ବାବାଜୀ ପ୍ରକୃତରେ ଚିରୁକୁଣୀକୁ ଦେଖିଥିଲା କି ନାହିଁ, ମୁଁ କହିପାରିବି ନାହିଁ । କିନ୍ତୁ ତା କଥାକୁ ସେତେବେଳେ ମୁଁ ବିଶ୍ୱାସ କରିଥିଲି । ମୋ ବୋଉ ଓ ତା ବୋଉ ଯେତେବେଳେ ଜାଣିଲେ ଆମେ ଖରାବେଳେ ନଳ ପକାଇବାକୁ ଯାଇଥିଲୁ ଏବଂ ଚିରୁକୁଣୀ ହାବୁଡ଼ରୁ ରକ୍ଷା ପାଇ ଆସିଛୁ, ଆମକୁ ଧରି କାନ୍ଦିଲେ ଏବଂ ଆଉ ଖରାବେଳେ କୁଆଡ଼େ ନ ଯିବା ପାଇଁ ତାଗିଦା କଲେ । କାରଣ, ଖରାବେଳ ଥିଲା ଭୂତପ୍ରେତଙ୍କ ବାହାରିବା ସମୟ ।

ବାବାଜୀ ୧୫/୧୬ ବୟସ ବର୍ଷ ବେଳକୁ ମରିଗଲା । ତାକୁ କଅଣ ଗୋଟାଏ ରୋଗ ଧରିଲା ଯେ ଦୁଇତିନିଦିନ ଭିତରେ ଚାଲିଗଲା । ତାର ବିୟୋଗରେ ମୁଁ ବହୁ ଦିନ ଦୁଃଖ ଅନୁଭବ କରିଥିଲି । ଏବେ ମଧ୍ୟ ତାର ମୁହଁଟି ମୋତେ ଦିଶିଯାଉଛି ଏବଂ ସେ ପଛରୁ ଆସି ମୋର ଦୁଇ କାନ୍ଧ ଉପରେ ଦୁଇ ହାତ ପକାଇ ଦେଲା ଭଳି ବୋଧ ହେଉଛି । କାରଣ, ପିଲାଦିନେ ସେ ଏହିପରି ମୋ କାନ୍ଧ ଉପରେ ହାତ ପକାଉଥିଲା । ହାୟ ! ପିଲାଦିନର ସାଙ୍ଗସାଥୀ କେତେ ଆପଣାର ଥିଲେ !

**ନବଘନ :**

୧୯୫୦ ମସିହା କଥା । ବିନୋବା ଭାବେ ସମଗ୍ର ଦେଶରେ ପଦଯାତ୍ରା କରି ଭୂଦାନ ଆନ୍ଦୋଳନ ଚଳାଉଥାଆନ୍ତି । ସେହି କାର୍ଯ୍ୟକ୍ରମରେ ଆମ ରାଜକନିକାଠାରେ ତାଙ୍କର ଗୋଟିଏ ଦିନ ସଭା କରିବାର ଏବଂ ରାତିରେ ରହିବାର କାର୍ଯ୍ୟକ୍ରମ ହୋଇଥାଏ । ତାଙ୍କୁ ସଂବର୍ଦ୍ଧନା କରି ଆଣିବା ପାଇଁ ଏକ ଅଭ୍ୟର୍ଥନା କମିଟି ଗଢ଼ାଯାଇଥାଏ । କମିଟିରେ ମୁଖ୍ୟ ଥାଆନ୍ତି ଆମ ଗାଁର ଡାକ୍ତର ଶ୍ରୀ ରାମଚନ୍ଦ୍ର ସୂତାର । ସେ ଥିଲେ ଜଣେ ସମାଜସେବୀ, ଉଦାରମନା, ସେବାପରାୟଣ ଡାକ୍ତର ।

କମିଟିରେ ସ୍ଥିର କରାଗଲା ଯେ ଲୋକେ ବିନୋବା ଭାବେଙ୍କର ଜୟଜୟକାର ଗାଇ ବଡ଼ି ସକାଳୁ ଚାନ୍ଦବାଲି ଘାଟରୁ ତାଙ୍କୁ ପାଛୋଟି ଆଣିବେ । ଗୋଟିଏ ସ୍ୱାଗତ ଗୀତ ଲେଖିବାକୁ ମୋତେ ଦାୟିତ୍ୱ ଦିଆଗଲା । ମୁଁ ଗୀତଟିଏ ରଚନା କରିଥିଲି । ତାହାର ମୂଳ ପଦଟି ଥିଲା -

ଜୟ ଆମର ରାମର ଦେଶ
ଜୟ ଆମର ଶ୍ୟାମର ଦେଶ
ଜୟ ଗାନ୍ଧିଜୀ ଜୟ ଜୟ
ଜୟ ବିନୋବା ଜୟ ।
ଆରତ ପାଇଁ ଭାରତ ପୁଅ
ଦେଇ ଆସିଛି ପ୍ରାଣ
ଏ ଦେଶେ କାହିଁ ରହି ତ ନାହିଁ
ଖଣ୍ଡା ତଲୱାର ଟାଣ ।
ସତ୍ୟ ଅହିଂସା ସେନେହ ପ୍ରୀତି
ଏ ଦେଶ ପରେ କରେ ରାଜୁତି
ଜୟ ଗାନ୍ଧିଜୀ ଜୟ ଜୟ
ଜୟ ବିନୋବା ଜୟ ।

ମୁଁ ମଧ୍ୟ ଗୀତଟିର ସ୍ୱର ଦେଲି । ୧୪/୧୫ ଜଣ ମୃଦଙ୍ଗବାଦକ ମୃଦଙ୍ଗ ବଜାଇ ଗୀତଟି ଗାଇଲେ । ସମବେତ ମୃଦଙ୍ଗଧ୍ୱନି ସହିତ ଗୀତଟି ସମସ୍ତଙ୍କୁ ମୁଗ୍ଧ କଲା ।

ମୋ ସାଙ୍ଗ ନବଘନ ମୋଠାରୁ ଶୁଣିଲା - ବିନୋବା ଭାବେ ଭୂମିହୀନ ଚାଷୀଙ୍କ ପାଇଁ ଆନ୍ଦୋଳନ କରୁଛନ୍ତି । ଯେଉଁମାନଙ୍କର ବେଶୀ ଜମି ଅଛି, ସେମାନଙ୍କୁ ସେ ଅନୁରୋଧ କରୁଛନ୍ତି କିଛି କିଛି ଜମି ଭୂଦାନ ଯଜ୍ଞକୁ ଦେବାପାଇଁ । ଭୂଦାନ ଯଜ୍ଞ ସଂସ୍ଥା ପକ୍ଷରୁ ସେହି ଜମିକୁ ଭୂମିହୀନମାନଙ୍କୁ ଦିଆଯିବ ।

ଏ କଥା ଶୁଣି ନବଘନ ଉତ୍ସାହ ଅନୁଭବ କଲା । କାରଣ ତା ବାପା ସାନନ୍ଦ ଜେନା ଥିଲେ ଭୂମିହୀନ ଚାଷୀ । ସାନନ୍ଦ ଜେନା ଅନ୍ୟର ଜମି ଭାଗଚାଷ କରି, ଜମି ମାଲିକକୁ ଅଧେ ଫସଲ ଦେଉଥିଲେ ଏବଂ ଆଉ ଅଧାକରେ ବଡ଼ କଷ୍ଟରେ ପରିବାର ଚଳାଉଥିଲେ । ତେଣୁ ନବଘନ ମୋତେ କହିଲା - "ନନା, ମୁଁ ତୁମ ସାଙ୍ଗରେ ବିନୋବା ଭାବେଙ୍କ ସଭାକୁ ଯିବି ।"

ମୁଁ ଆନନ୍ଦରେ କହିଲି - "ସୂର୍ଯ୍ୟୋଦୟ ପୂର୍ବରୁ ଯାଇ ଚାନ୍ଦବାଲି ଘାଟରେ ପହଞ୍ଚିବା ।"

ସୂର୍ଯ୍ୟୋଦୟ ବେଳକୁ ଘାଟ ପାଖରେ ପ୍ରାୟ ଦୁଇ ଶହ ଲୋକ ଉପସ୍ଥିତ ହୋଇସାରିଥିଲେ । ବିନୋବାଜୀ ଚାନ୍ଦବାଲି ପଟରୁ ଘାଟ ଡଙ୍ଗାରେ ନଈ ପାରି ହୋଇ କନିକା ପଟକୁ ଆସିବା ମାତ୍ରେ ବହୁ ମୃଦଙ୍ଗଧ୍ୱନି ସହ ଜୟ ଜୟ ଧ୍ୱନି ମଧୁର, ଗମ୍ଭୀର ଉନ୍ମାଦନା ସୃଷ୍ଟି କଲା । ଆଗେ ଆଗେ ଚାଲିଲେ ବିନୋବା, ପଛେ ପଛେ ଜନତା, ରାଜକନିକା ଅଭିମୁଖେ । ଜନତାଙ୍କ ଭିତରେ ନବଘନ ଓ ମୁଁ ସାଙ୍ଗ ହୋଇ ଚାଲିଲୁ । ବହୁ ଉତ୍ସାହ, ଉଦ୍ଦୀପନା ଅନୁଭବ କରୁଥାଉ । ଶୀତୁଆ ସକାଳ । ଅବଶ୍ୟ ବେଶୀ ଶୀତ ହେଉ ନ ଥାଏ । ରାଜକନିକା ଆର୍.ଏନ୍. ହାଇସ୍କୁଲ ପଡ଼ିଆରେ ଦିବା ଦୁଇଘଣ୍ଟା ବେଳକୁ ସଭା ଅନୁଷ୍ଠିତ ହେଲା । ହଜାର ହଜାର ଲୋକ ସଭାକୁ ଆସିଥିଲେ । ବିନୋବା ହିନ୍ଦୀରେ କହିଲେ, ତାଙ୍କ କଥାକୁ ମନମୋହନ ଚୌଧୁରୀ ଓଡ଼ିଆରେ କହିଲେ । ବିନୋବାଜୀଙ୍କ ଭାଷଣର ସାରମର୍ମ ଥିଲା - ଗାଁ ଗୋଟିଏ ପରିବାର । ସେଥିରେ ସମସ୍ତେ ସୁଖରେ ରହିବା ଦରକାର । ପରିବାରରେ କାହାକୁ କଷ୍ଟ ପଡ଼ିଲେ ପରିବାରର ସବୁ ଲୋକ ଆକୁଳତା ଅନୁଭବ କରନ୍ତି । ସେହିପରି ଗାଁରେ କାହାକୁ କଷ୍ଟ ପଡ଼ିଲେ ଗାଁର ସବୁ ଲୋକ ଆକୁଳତା ଅନୁଭବ କରି ତାକୁ ସାହାଯ୍ୟ କରିବା ଦରକାର । ଯେଉଁମାନେ ବେଶୀ ଜମିର ଅଧିକାରୀ ହୋଇ ରହିଛନ୍ତି, ସେମାନେ ଜମିହୀନମାନଙ୍କୁ କିଛି କିଛି ଜମି ଦାନ କରନ୍ତୁ । ଜମିହୀନମାନେ ତାହାକୁ ଚାଷ କରି ଖୁସିରେ ଚଳିପାରିବେ । ସେମାନେ ଜମି ପାଇଲେ ବହୁତ ଶସ୍ୟ ଉତ୍ପାଦନ କରିପାରିବେ । ଆଉ କ୍ଷୁଧାର ତାଡ଼ନା ରହିବ ନାହିଁ । ତେଣୁ ଧନୀମାନେ ଗରିବମାନଙ୍କ ପ୍ରତି ହୃଦୟବାନ୍ ହୁଅନ୍ତୁ । ଶାନ୍ତିପୂର୍ଣ୍ଣ ସମାଜ ଗଠନ ହେଉ ।

ସଭା ଶେଷ ହେଲା ପରେ ନବଘନ ଓ ମୁଁ ଗାଁକୁ ଫେରିଲୁ । ବାଟରେ ନବଘନ ମୋତେ ବିନୋବାଙ୍କ ଭାଷଣ ସଂପର୍କରେ ଅନେକ କଥା ପଚାରିଲା । ମୁଁ ମୋ ବୁଝିଥିବା ଅନୁସାରେ ତାକୁ ବୁଝାଇଲି । ତାକୁ ଭାରି ଆନନ୍ଦ ଲାଗିଲା ଯେ ତା ବାପା ନିଶ୍ଚୟ ମାଣେ କଣେ ଜମି ପାଇବେ । ମାଣେ କଣେ ଜମି ମିଳିଲେ ତାଙ୍କ ପରିବାରର ଦୁଃଖ ଲାଘବ ହେବ, ଏହି ଭାବନାରେ ସେ ବିହ୍ୱଳିତ ହୋଇଗଲା ।

ତା' ପରଦିନ ସକାଳୁ ବିନୋବାଜୀ ତାଙ୍କ କାର୍ଯ୍ୟକ୍ରମ ଅନୁସାରେ ପଦଯାତ୍ରାରେ ଚାଲିଗଲେ । କ୍ରମେ ସମୟର ଚକ ଗଡ଼ି ଚାଲିଲା । ମୁଁ ଛୋଟ ଶିକ୍ଷକ ଚାକିରି ଖଣ୍ଡେ ପାଇ ଗାଁରୁ କଟକ ଚାଲି ଆସିଲି । ନବଘନ ଗାଁରେ ରହିଲା । ତା ବାପା ବୋଉ ତାକୁ

ସଂସାରଧର୍ମରେ ପୂରାଇ ଦେଇ, ନିଜ ନିଜ ଆୟୁଷ ଅନୁସାରେ ପରପୁରକୁ ଚାଲିଗଲେ । ମୁଁ ବରାବର ଛୁଟିରେ ଗାଁକୁ ଯାଏ । ନବଘନର ଘରକୁ ଯାଇ ଗପସପ ହୁଏ । ପ୍ରତିଥର ସେ କଥା ଭିତରେ ଭୂଦାନ ଯଜ୍ଞ ବିଷୟରେ ପଚାରେ – "ନନା, କାହିଁ ? ମୋତେ ତ ଏ ପର୍ଯ୍ୟନ୍ତ ମାଣେ କଣେ ଜମି ମିଳିଲା ନାହିଁ । ମୁଁ ଚାତକ ଭଳି ଚାହିଁ ରହିଛି । ମାଣେ ମାତ୍ର ଜମି ହେଲେ ମୁଁ ଆନନ୍ଦରେ ଚଳି ଯାଆନ୍ତି ।" •

ମୁଁ କହେ – "ଦେଖା ଯାଉ, ଆନ୍ଦୋଳନ ତ ଚାଲିଛି । ବିନୋବାଜୀ ନ ପାରିଲେ ସରକାର ନିଶ୍ଚୟ ପାରିବେ । ଶୁଣା ଯାଉଛି, ସରକାର ଆଇନ୍ କରି ବେଶୀ ଜମିବାଲାଙ୍କ ଠାରୁ କିଛି କିଛି ଜମି ନେଇ ଯିବେ ଏବଂ ତାହାକୁ ଜମିହୀନମାନଙ୍କ ମଧ୍ୟରେ ବଣ୍ଟନ କରିବେ । ଜମିବାଲାମାନେ କେହି ନିର୍ଦ୍ଦିଷ୍ଟ ପରିମାଣରୁ ଅଧିକ ଜମି ରଖି ପାରିବେ ନାହିଁ ।"

ନବଘନର ଆଶା ପୁଣି ଟିକିଏ ସତେଜ ହୋଇଉଠେ । କିନ୍ତୁ କାଳକ୍ରମେ ତାର ସେହି ଆଶା ସଂପୂର୍ଣ୍ଣ ମଉଳି ଗଲା । କାରଣ, ନା ବିନୋବାଙ୍କର ଚେଷ୍ଟା ସଫଳ ହେଲା, ନା ସରକାର ଭୂମିସଂସ୍କାର ଆଇନ୍ କଲେ ।

ହାୟ ! ମୋର ସେହି ଭୂମିହୀନ ସାଙ୍ଗ ନବଘନ ଛଅବର୍ଷ ହେଲା ସଂସାରରୁ ବିଦାୟ ନେଲାଣି ।

**ଦଉହରି :**

ହେ ପ୍ରିୟ ପାଠକବନ୍ଧୁ, ଆଜି ଆମେ ଆପଣଙ୍କୁ ଆମ ତରୁଣ ଜୀବନର ସ୍ମୃତିରୁ ଆଉ ଗୋଟିଏ କଥା ଶୁଣାଇବାକୁ ଚାହୁଁଛୁ । ପ୍ରାୟ ୬୫ ବର୍ଷ ତଳର କଥା ।

ଶୁକ୍ଲପକ୍ଷ ପଞ୍ଚମୀ ସଞ୍ଜବେଳ । ଖଣ୍ଡଜହ୍ନ ପଶ୍ଚିମ ଆକାଶରେ ଝାପ୍‌ସା ଝାପ୍‌ସା ଆଲୁଅ ଦେଉଥାଏ । ଦଉିଆ ଚାରିଆଡ଼କୁ ଚାହିଁଲା । କେହି ନାହାନ୍ତି । ବରଗଛ ଉପରକୁ ଚଢ଼ିଯାଇ ପତ୍ର ଉଢ଼ାଳରେ ବସିଲା । ଆମ ଗାଁକୁ ଲାଗିଥିବା ଭୋଗରା ଗାଁର ଦଇତାରି ପ୍ରଧାନଙ୍କ ପୁଅ ଦଉହରି । ତାକ ନାଁ ଦଉିଆ । ବୟସ ୨୨/୨୩ । ଟିକିଏ ଚେଙ୍ଗା ପ୍ରକୃତିର, କିନ୍ତୁ ଭାରି ସାହସୀ । ଭୂତପ୍ରେତ ମାନେନି । ରାତିଅଧରେ ବି ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାରେ । ଆଜି ତା' ମନରେ ଖୁବ୍ କୌତୂହଳ ଯେ ବାଉରାଣୀ ଆତ୍ମା 'ବାଉତି'କୁ ଦେଖିବ । ବାଉରାଣୀ ଆତ୍ମାଟା ଖୁବ ଭୟଙ୍କର ବୋଲି ଗୁଣିଆ କହୁଛି । ତଥାପି ସେ ନ ଡରି ଗୁଣିଆ କିପରି ତାକୁ ତଡ଼ିବ, ଦେଖିବାପାଇଁ ବରଗଛରେ ଚଢ଼ି ପତ୍ର ଉଢ଼ାଳରେ ବସିଲା ।

ଭୋଗରା ଗାଁର ପାଣୁଆ ବେହେରାର ସ୍ତ୍ରୀକୁ ବାଉତି ଲାଗିଥିଲା । ସ୍ତ୍ରୀର ନାଁ ଚାନ୍ଦ । ଏଇ ୫/୬ ମାସ ତଳେ ପାଣୁଆ ସାଙ୍ଗରେ ଚାନ୍ଦର ବାହାଘର ହୋଇଥିଲା ।

ଭୋଗରାରୁ ଦୁଇଟି ଗାଁ ଛାଡ଼ି ଚାନ୍ଦର ବାପଘର ଗାଁ । ବାପଘର ଭାରି ଗରିବ । ଭଉଣୀ ଭାଇ ଯୋଡ଼ିଏ ହୋଇଥିଲେ, ବାପ ମରିଗଲା । ଭଉଣୀ ବଡ଼, ଭାଇ ସାନ । ମାଆ ବଡ଼ କଷ୍ଟରେ ଦୁହିଁଙ୍କୁ ବଢ଼ାଇଲା । ଚାନ୍ଦଟି ଶଶିଆଳିଆ ଝିଅ, ମାନେ... ଦୁର୍ବଳୀ ପତଳୀ ନୁହେଁ, ଟିକିଏ ହୃଷ୍ଟପୁଷ୍ଟ ଦେହ । ମୁହଁଟି ଡଉଲଡାଉଲ । କ୍ରମେ ତା'ର ବୟସ ୧୯ ଧଇଲା । ଦେହ, ମୁହଁ ଆହୁରି ପୂରିଉଠିଲା । ମାଆ ଭାବିଲା - "ଝିଅ ଘିଅ । ପରଗୋତ୍ରୀ କରିଦେଲେ ଯାଏ ।"

କେହି ଜଣେ ଆମ ଗାଁର ପାଣୁଆ ବେହେରା ସାଙ୍ଗରେ ଚାନ୍ଦର ବାହାଘର ପ୍ରସ୍ତାବ ପକାଇଲା । ମାଆ ରାଜି ହୋଇଗଲା । ମାଆ ଭାବୁଥିଲା କି ଯେତେ ଶୀଘ୍ର ଝିଅର ବାହାଘର ସାରିଦେବ, ସେତେ ଶୀଘ୍ର ନିଶ୍ଚିନ୍ତ ହେବ । ତେଣୁ ପାଣୁଆ ସାଙ୍ଗରେ ପ୍ରସ୍ତାବ ଠିକ୍ କରିଦେଇ ବାହାଘର ସାରିଦେଲା ।

ଚାନ୍ଦ ଆସିଲା ପାଣୁଆଘରକୁ ।

ପାଣୁଆର ବୟସ ୨୫/୨୬, କିନ୍ତୁ ଦୁର୍ବଳ ଚେହେରା । ରୋଗାଣିଆ ଦେହ । ଘରେ ତା'ର ମାଆ ବୁଢ଼ୀ । ପାଣୁଆର ନିଜର ଏକରେ ମାତ୍ର ଜମି । ସେତକ ସେ ଚାଷ କରେ । ସେଥିରେ ବର୍ଷକ ଗୁଜରାଣ ମେଣ୍ଟେନି । ଚାଷକାମ ନ ଥିଲାବେଳେ କରତରେ କାଠ ଚିରେ । ଆମ ଗାଁରେ ତା'ରି ବୟସର ଲୋକ ମଣ୍ଟୁ ସାହୁ । ମଣ୍ଟୁ ସାହୁ ଆଉ ପାଣୁଆ ବେହେରା ସାଙ୍ଗ ହୋଇ କାଠ ଚିରନ୍ତି । ଯେଉଁମାନେ କାଠଗଣ୍ଡିକୁ ପଟାପଟା କରିବାକୁ ଚାହାନ୍ତି, ସେମାନେ ପାଣୁଆ ଆଉ ମଣ୍ଟୁଙ୍କୁ ଡାକନ୍ତି । ଦୁହେଁ କାଠଚିରାଳି ଭାବେ ଜଣାଶୁଣା । ଦୁହେଁ କାଠଗଣ୍ଡିକୁ ପୋତି ଠିଆବାଗେ ରଖନ୍ତି । ତଳୁ ଉପର, ଉପର ତଳ କରତ ଟାଣନ୍ତି । ମଣ୍ଟୁ ତଳେ ରହି ଟାଣେ, ପାଣୁଆ ଗଣ୍ଡି ଉପରେ ଠିଆ ହୋଇ ଟାଣେ । ଏହିପରି ଟାଣି ଟାଣି କରତ ଚଳାଇ ଗଣ୍ଡିକୁ ପଟାପଟା କରନ୍ତି ।

କରତ ଟାଣି କାଠ ଚିରି ଚିରି ପାଣୁଆ ଥକା ଅନୁଭବ କରେ । ରାତିରେ, ଚାନ୍ଦ ଯାହା ଗଣ୍ଡେ ରୋଷେଇ କରିଥାଏ, ଖାଇଦେଇ ଶୋଇଯାଏ । ମଲାଗଲା ପରି ପଡ଼ିଯାଏ । ଚାନ୍ଦ ଖାଇସାରି, ଶାଶୂର ଗୋଡ଼ ମୋଡ଼ିଦେଇ ପାଣୁଆ ପାଖକୁ ଗଲାବେଳକୁ ପାଣୁଆର ଅବସ୍ଥା ମଲାଗଲା ଭଳି ହୋଇଯାଇଥାଏ ।

ଦିନେ ସକାଳୁ ଚାନ୍ଦର ପ୍ରଳାପ ବାହାରିଲା । ଏଣ୍ଡେତେଣ୍ଡେ କଅଣ ଗୁଡ଼ାଏ ଗପିବାରେ ଲାଗିଲା । ବାଇଆଣୀ ପରି କଥା କହିଲା । ବେଳେବେଳେ ଚିହିଁକି ଉଠିଲା । ଶାଶୂ ଭାବିଲା, ବୋହୂର କଅଣ ଟିକିଏ ହୋଇଚି, ଆପେ ଆପେ ଭଲ ହୋଇଯିବ । ପାଣୁଆ ବି ସେଇଆ ଭାବିଲା; କିନ୍ତୁ ଚାନ୍ଦର ସେସବୁ ଲକ୍ଷଣ କମିଲା ନାହିଁ, ବେଶୀ ବେଶୀ

ହେଲା । ସାଇପଡ଼ିଶା ଘରର ସ୍ତ୍ରୀଲୋକମାନେ ଦେଖିବାକୁ ଆସିଲେ । ସମସ୍ତେ କହିଲେ ଚାନ୍ଦକୁ ବାଉତି ଲାଗିଛି । ଗୁଣିଆ ଡାକି ବାଉତି ଛଡ଼େଇବାକୁ ପାଣୁଆକୁ ଓ ତା' ମାଆକୁ ପରାମର୍ଶ ଦେଲେ ।

ଆମ ଅଞ୍ଚଳରେ ଦୁଇଜଣ ଗୁଣିଆଙ୍କର ନାଁ ଡାକ ଥିଲା । ଜଣେ ହାଟପଡ଼ାର ମାଧ ମାଝି, ଆଉ ଜଣେ ଗଜପୁରର କାହ୍ନୁ ମାହନ୍ତ । ମାଧ ମାଝି ବୁଢ଼ା । ବୟସ ୬୫ ପ୍ରାୟ । କାହ୍ନୁ ମାହନ୍ତ ଯୁବା । ବୟସ ୩୦ ପ୍ରାୟ । ଗୁଣିବିଦ୍ୟା ମାଧବୁଢ଼ା ଠାରୁ କାହ୍ନୁ ଶିଖିଥିଲା; କିନ୍ତୁ କେତେକ ଜାଗାରେ ମାଧବୁଢ଼ା ପାରେ ନାହିଁ, କାହ୍ନୁ ପାରେ ବୋଲି ଲୋକମାନେ କହନ୍ତି । ହାଟପଡ଼ା ବେଶୀ ବାଟ ନୁହେଁ । ତେଣୁ ପାଣୁଆ ଆଗେ ମାଧବୁଢ଼ା ପାଖକୁ ଗଲା । ବୁଢ଼ା ଆସି ଦେଖିଲା । କହିଲା - "ହଁ, ବାଉତି ଲାଗିଛି, ଛଡ଼େଇ ଦେବି ।"

ବାଉତି ଛଡ଼େଇବାକୁ ଯାହା ଯାହା ଜିନିଷ ଦରକାର, ବୁଢ଼ା ବରାଦ ଦେଇଗଲା । ପାଣୁଆ ସବୁ ସଂଗ୍ରହ କରି ଆଣିଲା । ବୁଢ଼ା ତା' ପରଦିନ ଆସି ପାଣୁଆର ଘରେ ମଣ୍ଡଳ କାଟିଲା । ମଣ୍ଡଳ ଭିତରେ ନାନାଦି ଜିନିଷ ରଖି, ଚାନ୍ଦକୁ ବସାଇ, ମନ୍ତ୍ରତନ୍ତ୍ର କଲା; ପୂରା ତିନି ଘଣ୍ଟା ମନ୍ତ୍ରତନ୍ତ୍ର କଲା, କିନ୍ତୁ କିଛି ହେଲାନି । ବାଉତି ଗଲାନି । ଚାନ୍ଦର ପ୍ରଳାପ ଲାଗି ରହିଲା । ମାଧବୁଢ଼ା ଫେରିଗଲା । ଲୋକେ କହିଲେ, "କାହ୍ନୁ ମାହନ୍ତକୁ ଡାକ, ସେ ପାରିବ ।"

ପାଣୁଆ କାହ୍ନୁ ମାହନ୍ତ ପାଖକୁ ଯାଇ ତାକୁ ଅନୁରୋଧ କରି ଡାକି ଆଣିଲା । କାହ୍ନୁ ଆସି ଦେଖିଲା । ଦେଖିଲା ମାତ୍ରେ କହି ପକାଇଲା - "ଗୋଟାଏ ଭୟଙ୍କର ବାଉରାଣୀ ଆତ୍ମା ଯାକୁ କାବୁ କରିନେଇଚି । ଛଡ଼ାଇବାକୁ ପାଞ୍ଚଛଅ ଦିନ ଲାଗିବ । ଦିନେ ଘରେ ମନ୍ତ୍ରତନ୍ତ୍ର ହେବ, ଆଉ ଚାରିପାଞ୍ଚ ଦିନ ବାହାରେ ହେବ । ବାହାରେ ଯେଉଁଠି ହେବ, ସେଠି ଆଖପାଖରେ କେହି ରହିବେ ନାହିଁ । କାରଣ ଭୟଙ୍କର ବାଉରାଣୀ ଆତ୍ମା ବାହାରି ଗଲାବେଳେ ଯା' ଉପରେ ତା' ଆଖି ପଡ଼ିଯିବ, ତାକୁ ପୁଣି ଧରି ପକାଇବ । ରାତି ଦୁଇଘଡ଼ିରୁ ଚାରିଘଡ଼ି ପର୍ଯ୍ୟନ୍ତ ମନ୍ତ୍ରତନ୍ତ୍ର ଚାଲିବ । ଭାରି ଭୟଙ୍କର ବାଉରାଣୀ ଆତ୍ମାଟାଏ ।"

ବିଚରା ପାଣୁଆ କାହ୍ନୁ କଥାରେ ରାଜି ହେଲା । ରାଜି ନ ହେବାକୁ ବାଟ ନ ଥିଲା । ରାଜି ନ ହେଲେ ଭୟଙ୍କର ବାଉରାଣୀ ଆତ୍ମା ଚାନ୍ଦର ପ୍ରାଣ ନେଇଯିବ ।

ତା' ପରଦିନ କାହ୍ନୁ ଗୁଣିଆ ଆସି ପାଣୁଆର ଘରେ ମଣ୍ଡଳ କାଟିଲା, ତା ଭିତରେ ନାନାଦି ଜିନିଷ ରଖିଲା, ଚାନ୍ଦକୁ ବସାଇ ଦୁଇଘଣ୍ଟା ମନ୍ତ୍ରତନ୍ତ୍ର କଲା । ମନ୍ତ୍ରତନ୍ତ୍ର ଭିତରେ

ସେ ଚାନ୍ଦମୁହଁକୁ ଚାହୁଁଥାଏ, ଚାନ୍ଦ ମଧ ତା' ମୁହଁକୁ ଚାହୁଁଥାଏ । ସେଦିନର ମନ୍ତ୍ରତନ୍ତ୍ର ସରିଲା ।

ତା' ପରଦିନ ରାତି ଘଡ଼ିଏ ବେଳକୁ କାହ୍ନୁ ଗୁଣିଆ ପାଣୁଆ ଘରେ ଆସି ପହଞ୍ଚିଲା । ପାଣୁଆର ଘରବାରି ଯେଉଁଠି ସରିଛି, ସେଉଠୁ ଲାଗିଯାଇଛି କିଆବଣ । ବଣ ଭିତରେ ଗୋଟିଏ ଖୋଲା ଜାଗା ଥିଲା । ଅଳ୍ପ କିଛି ଦୂରରେ ଗହଳିଆ ବରଗଛଟିଏ । କାହ୍ନୁ ସେହି ଜାଗାକୁ ସଫାସୁତୁରା କରି ମଣ୍ଡଳ କାଟିଲା । ମଣ୍ଡଳ ଭିତରେ ମନ୍ତ୍ରତନ୍ତ୍ର ଜିନିଷ ସବୁ ନେଇ ରଖିଲା । ଅଧଘଣ୍ଟା ଯାଏ ବସି କଅଣ ସବୁ କଲା । ତା'ପରେ ପାଣୁଆର ଘରକୁ ଯାଇ ଗୁଣିଆଠାଣିରେ ଚାନ୍ଦକୁ ନେଇଗଲା । ଚାନ୍ଦକୁ ମଣ୍ଡଳ ଭିତରେ ବସାଇ, ତା ସାମନାରେ ତା ଆଡ଼କୁ ମୁହଁ କରି ବସିଲା । ପାଣୁଆ କିମ୍ବା ତା' ମାଆ ଭୟରେ ସେ ଆଡ଼କୁ ଗଲେ ନାହିଁ ।

ଶୁକ୍ଳପକ୍ଷ ପଞ୍ଚମୀ ଜହ୍ନର ଝାପ୍‌ସା ଆଲୁଅ । କାହ୍ନୁ ଗୁଣିଆ ଗୁଣୁଗୁଣୁ ମନ୍ତ୍ର ଗାଇ, ହସହସ ମୁହଁରେ, ଚାନ୍ଦର ଖୋଲା ଦେହରେ ମନ୍ତ୍ରପାଣି ବୋଳିଲା ।...

ପରଦିନ ଦଉିଆ ସାଙ୍ଗରେ ମୋର ବିଲରେ ଦେଖା ହେଲା । ମୁଁ କ୍ଷେତକାମ କରିବାକୁ ଯାଇଥିଲି, ସେ କ୍ଷେତକାମ କରିବାକୁ ଆସିଥିଲା । ସେ ଥିଲା ମୋର ଜଣେ ପ୍ରିୟ ସାଙ୍ଗ । ମୋତେ ତା' ପାଖରେ ବସାଇ ଦେଖିଥିବା କଥାସବୁ ଦୁଃଖିତ ଭାବରେ ଚୁପ୍ ଚୁପ୍ କହିଲା । ଶେଷରେ କହିଲା - "ଧନୁ, କାହା ଆଗେ କହିବୁ ନାହିଁଟି ।"

ପ୍ରକୃତରେ ମୋର ତରୁଣ ବୟସର ସାଙ୍ଗ ଦଉିଆ ଟିକେ ଚେଙ୍ଗା ପ୍ରକୃତିର ଥିଲା ସତ, କିନ୍ତୁ ନୀଚ ପ୍ରକୃତିର ନ ଥିଲା । ଗରିବ ଝିଅ ଚାନ୍ଦଟି ପ୍ରତି ତା' ମନର କାରୁଣ୍ୟ ଭାବକୁ ମୁଁ ଅନୁଭବ କରିପାରିଥିଲି । କାରଣ, କହୁଥିଲାବେଳେ ସେ କାନ୍ଦ କାନ୍ଦ ହୋଇଉଠୁଥିଲା ।

**କୃଷ୍ଣ :**

ଆମ ଗାଁ କୃପାସିନ୍ଧୁ ରାଉତଙ୍କ ପୁଅ କୃଷ୍ଣ । ମୋର ପିଲାଦିନର ତଥା କିଶୋର ବୟସର ସାଙ୍ଗ ଥିଲା । ଆମ ଘର ଗାଁ ମଝିରେ, ତାଙ୍କ ଘର ଗାଁ ମୁଣ୍ଡରେ । ତାଙ୍କ ଘର ସହିତ ଆମ ଘରର ଏବଂ ଆମ ଘର ସହିତ ତାଙ୍କ ଘରର ଖୁବ୍ ସଦ୍‌ଭାବ ଥିଲା । ମୋ ବୋଉ ଓ ତା' ବୋଉ ସଂଗାତ ବସିଥିଲେ । ପିଲାଦିନେ ସେ ଆମ ଘରକୁ ଆସୁଥିଲା । ମୋ ବୋଉ ତାକୁ ପିଠାପଣା ଦେଉଥିଲେ । ମୁଁ ତାଙ୍କ ଘରକୁ ଯାଉଥିଲି । ତା' ବୋଉ ମୋତେ ପିଠାପଣା ଦେଉଥିଲେ ।

ଆମେ ଦୁହେଁ ଛଅ ବର୍ଷ ବୟସରେ ଆମ ଗାଁ ଉଚ ପ୍ରାଥମିକ ସ୍କୁଲରେ ପାଠପଢ଼ା ଆରମ୍ଭ କରିଥିଲୁଁ । ଦୁହେଁ ସ୍କୁଲକୁ ସାଙ୍ଗ ହୋଇ ଯାଉଁ । ସ୍କୁଲରେ ପାଖକୁପାଖ ବସୁଁ । ଛୁଟି ହେଲେ ସାଙ୍ଗ ହୋଇ ଆସୁଁ । ସାଙ୍ଗ ହୋଇ ଗାଁ ପଶ୍ଚିମପଟ ଆଡ଼ିଆକୁ ଯାଉଁ । ବଇଁଚ କୋଳି, ବରକୋଳି, କେନ୍ଦୁ ଆଦି ଫଳ ତୋଳି ଖାଉଁ ।

ବାରବର୍ଷ ବେଳକୁ ଆମେ ଉ.ପ୍ରା. ସ୍କୁଲ ପାଶ୍ କଲୁଁ । ବାହାରକୁ ଯାଇ ଏମ୍.ଇ. ସ୍କୁଲରେ ପଢ଼ିବାରୁ ଆମ ପକ୍ଷରେ ସମ୍ଭବ ହେଲାନାହିଁ । କାରଣ, ତାଙ୍କର ତଥା ଆମର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ଦୁହେଁ ଉ.ପ୍ରା. ପଢ଼ିସାରି ବିଲବାଡ଼ି କାମ କରିବା ଆରମ୍ଭ କଲୁଁ ।

ଆମକୁ କ୍ରମେ ୨୩ ବର୍ଷ ବୟସ ହୋଇଗଲା । ତଥାପି ଦୁହେଁ କାମ ନ ଥିଲାବେଳେ ସାଙ୍ଗ ହୋଇ ବୁଲୁଥିଲୁଁ, ସାଙ୍ଗ ହୋଇ ଯାତ୍ରା ଦେଖିବାକୁ ଯାଉଥିଲୁଁ, ସାଙ୍ଗ ହୋଇ ଖରସୁଆ ନଈକୂଳରେ ବୁଲୁଥିଲୁ, ସାଙ୍ଗ ହୋଇ ନଈକୂଳରେ ବସୁଥିଲୁଁ । ଆମ ଦୁହିଁଙ୍କୁ ଏକାସାଙ୍ଗରେ ଦେଖିଲେ ଜେଜେବାପା, ଜେଜେମାଆ ବୟସର ଲୋକମାନେ ଖୁବ୍ ଖୁସି ହେଉଥିଲେ । କୃଷ୍ଣର ଚେହେରା ଥିଲା ଡେଙ୍ଗାଳିଆ, ସୁନ୍ଦର, ସ୍ୱାସ୍ଥ୍ୟବାନ୍ । ମୋ ଚେହେରା ମଧ୍ୟ ସେହିପରି ଥିଲା ।

ଦିନେ କୃଷ୍ଣ ଆମ ଘରକୁ ଆସି ମୁହଁ ଶୁଖାଇ କହିଲା - "ଧନୁ, ମୋ ବାପା ମୋତେ ବାହାରକୁ ଯାଇ ଚାକିରି କରିବାକୁ କହୁଛନ୍ତି । ମୋ ମାମୁ ଓଡ଼ିଶା ବାହାରେ କେଉଁଠି ଗଙ୍ଗୁରାମପୁରରେ ଛୋଟ ଚାକିରିଟିଏ କରୁଛନ୍ତି । ତାଙ୍କ ସାଙ୍ଗରେ ଗଲେ ମୁଁ ଚାକିରି ଖଣ୍ଡିଏ ପାଇପାରିବି । ଏଠି ତ ଦୁଇ ଏକର ମାତ୍ର ଜମି । ଚାଷ କରିବାକୁ ବାପାଙ୍କୁ ନିଅଣ୍ଟ । ମୁଁ ତାଙ୍କ ସାଙ୍ଗରେ ଯାଇ ଚାକିରି କରି ଦି'ପଇସା ରୋଜଗାର କରିବାକୁ ବାପାଙ୍କର ଇଚ୍ଛା । ମାମୁ କହୁଛନ୍ତି ତାଙ୍କ ପାଖରେ ରହିବି । ସେ କେଉଁଠି ଚାକିରି ଖଣ୍ଡିଏ ବରାଦ କରିଦେବେ । ମାମୁ ଗାଁକୁ ଆସିଛନ୍ତି । ଆସନ୍ତା ସୋମବାର ଦିନ ଯିବେ । ମୁଁ ତାଙ୍କ ସାଙ୍ଗରେ ଯିବି ।"

ମୁଁ ବହୁତ ଦୁଃଖ ଅନୁଭବ କଲି । କିଛିକ୍ଷଣ ପରେ କହିଲି - "ହଉ, ଆଉ ବାଟ କଅଣ ? ଆମକୁ ଏଣିକି ଦାନାକନା ଯୋଗାଡ଼ କରିବାକୁ ପଡ଼ିବ । ତୁ ଯାଆ, ଦୁଇ ତିନି ମାସ ରହି ଦେଖ । ଯଦି ଭଲ ଲାଗିବ, ରହିବୁ । ମୋତେ ଲେଖିଲେ ମୁଁ ଯିବି । ମୁଁ ମଧ୍ୟ ଚାକିରି କରିବି । ଯଦି ଭଲ ନ ଲାଗିବ, ତେବେ ଚାଲିଆସିବୁ । ଗାଁରେ କୌଣସି ପ୍ରକାରେ ବିଲବାଡ଼ି କାମ କରି ଚଳିବା ।"

ସୋମବାର ଦିନ ମୁଁ କୃଷ୍ଣ ସାଙ୍ଗରେ ଚାନ୍ଦବାଲି ପର୍ଯ୍ୟନ୍ତ ଗଲି । କୃଷ୍ଣ ଓ ତା'

ମାମୁ ଚାନ୍ଦବାଲିରୁ ଭଦ୍ରକ ବସ୍‌ରେ ବସିଲେ । ମୁଁ କୃଷ୍ଣକୁ ବିଦାୟ ଦେଇ ଅତ୍ୟନ୍ତ ଦୁଃଖ ଅନୁଭବ କରି କରି ଗାଁକୁ ଆସିଲି ।

ପ୍ରାୟ ସାତ ମାସ ପରେ କୃଷ୍ଣ ଗାଁକୁ ଆସିଲା । ଅବଶ୍ୟ ତା' ପୂର୍ବରୁ ଦୁଇ ଖଣ୍ଡି ଚିଠି ମୋ ପାଖକୁ ଦେଇଥିଲା । ଘରେ ପହଞ୍ଚିଲାମାତ୍ରେ ଗଣ୍ଡିଏ ଖାଇଦେଇ ଛୁଟିଆସିଲା ଆମ ଘରକୁ । ସେତେବେଳେ ମୁଁ ଘରେ ନ ଥାଏ, ବିଲରେ କାମ କରୁଥାଏ । କୃଷ୍ଣ ମୋ ପାଖରେ ଯାଇ ପହଞ୍ଚିଗଲା । ତାକୁ ଦେଖିଲାମାତ୍ରେ ମୁଁ ଆନନ୍ଦରେ ଦଉଡ଼ିଯାଇ ତାକୁ କୁଣ୍ଢାଇ ପକାଇଲି । ଆମ ଦୁହିଁଙ୍କର ଆନନ୍ଦର ସୀମା ରହିଲା ନାହିଁ । ଦୁହେଁ ଦୁହିଁଙ୍କୁ କୁଶଳ ପ୍ରଶ୍ନ ପଚାରିବାରେ ଲାଗିଗଲୁ ।

କିଛି ସମୟ ପରେ କୃଷ୍ଣ କହିଲା - "ଆ, ନଈକୂଳକୁ ଯିବା, ବସି କଥା ହେବା । ମୁଁ ତୋତେ ଗୋଟିଏ ଅନୁଭୂତି କଥା କହିବି ।"

ଆମ ଗାଁ ପାଖରେ ଖରସୁଆ ନଈ । ନଈକୂଳରେ ଆମ୍ବତୋଟା । ଗୋଟିଏ ଆମ୍ବଗଛ ତଳେ ବସିଲୁଁ । ଆମ୍ବ ଗଛମାନଙ୍କରେ ବଉଳ ଲଦି ହୋଇଥାଏ । ନଈ ଉପର ଦେଇ ଧୀର ପବନ ବହି ଆସୁଥାଏ ଏବଂ ବଉଳର ବାସ୍ନାକୁ ଚାରିଆଡ଼େ ଖେଳାଇ ଦେଉଥାଏ । କୃଷ୍ଣ ତା' କଥା ଆରମ୍ଭ କଲା । ଆଗେ କହିଲା - "ଧନୁ, ତୁ ମୋର ଭାରି ସାଙ୍ଗ । ଯାହା କହିବି, ତୁ କାହା ଆଗରେ କହିବୁ ନାହିଁ ।"

ମୁଁ କହିଲି - "ଏପରି କାହିଁକି ଭାବୁଛୁ ? ଆମେ ଦୁହେଁ ଯେତେବେଳେ ଯାହା କଥା ହୋଇଥାଉଁ, ମୋ କଥା ତୁ କିମ୍ବା ତୋ କଥା ମୁଁ କେବେ କେଉଁଠି ପ୍ରକାଶ କରିଥାଉଁ କି ?"

ସେ ହସି ହସି କହିଲା- "ନା । ହଉ ତେବେ ଶୁଣ୍ ।"

"ମୁଁ ମାମୁଙ୍କ ସଙ୍ଗରେ ଗଙ୍ଗୁରାମପୁର ତ ଗଲି । ତାଙ୍କ ବସାରେ ଦଶ ବାରଦିନ ରହିଲି । ଦିନେ ମାମୁ କାମରୁ ଆସି ମୋତେ କହିଲେ - "କୃଷ୍ଣ, ଏଇଠି ପାଖରେ ଜଣେ ବାବୁଙ୍କ ଘର । ନାଁ ଚନ୍ଦନ ବାବୁ । ଭଲ ଲୋକ, ବୁନିଆଦୀ ଘରର ଲୋକ । ତାଙ୍କ ସଙ୍ଗେ ମୋର ଚାରି ପାଞ୍ଚ ବର୍ଷ ହେଲା ପରିଚୟ ଅଛି । ଘରେ ବାବୁ, ବାବୁଆଣୀ, ଆଉ ପୁଅଟିଏ । ପୁଅଟି ଚାକିରି କରେ । ବିଭା ହୋଇନି । ଦିନ ଦଶଟା ବେଳୁ ଚାକିରିକୁ ଯାଏ, ସଞ୍ଜ ଛଅଟାକୁ ଆସେ । ଚନ୍ଦନବାବୁ ଭାରି ବଗିଚାପ୍ରିୟ ଲୋକ । ବୟସ ହୋଇଗଲାଣି, ନିଜେ ଆଉ ପାରୁନାହାନ୍ତି । ବଗିଚାକାମ କରିବାକୁ ଗୋଟିଏ ପିଲା ରଖିଥିଲେ । ପିଲାଟି ଅନ୍ୟ କାମ ପାଇ ଚାଲିଗଲା । ଚନ୍ଦନବାବୁ ମୋତେ ଦି'ଚାରିଥର କହିଲେଣି ଗୋଟିଏ ଭଲ ଓଡ଼ିଆ ପିଲା ଆଣିବାପାଇଁ । ଭାବୁଚି, ତୁ ତ ବାଡ଼ିବଗିଚା

କାମ ଜାଣିଚୁ, ତାଙ୍କ ପାଖରେ ରହ । ତାଙ୍କ ବଗିଚାରେ ଗୋଟିଏ ଅଲଗା ଘର ଅଛି । ସେଇଠି ରହିବୁ । ତୋ ଇଛା ହେଲେ ସେଠି ରୋଷେଇ କରି ଖାଇବୁ, ନ ହେଲେ ଏଠିକି ମୋ ପାଖକୁ ଆସି ଖାଇଦେଇ ଯାଉଥିବୁ ।"

ମୁଁ ତ ବେଶୀଦିନ ମାମୁଙ୍କ ଉପରେ ବୋଝ ହୋଇ ରହିବାକୁ ଚାହୁଁ ନ ଥିଲି । ତାଙ୍କ କଥା ଶୁଣି ରାଜି ହୋଇଗଲି । ପଚାରିଲି - "ମାମୁ, ମାସକୁ କେତେ ଦେବେ ?"

ମାମୁ କହିଲେ - "ତୁ ଆଗେ ରହ । ମୋ ଜାଣିବାରେ ସେ ଉତ୍ତମ ଲୋକ । ଧନସଂପତ୍ତିର ଅଭାବ ନାହିଁ । ତେବେ କେଉଁଠି କଳକାରଖାନାରେ ଚାକିରି ଖଣ୍ଡିଏ ମିଳିବା ପର୍ଯ୍ୟନ୍ତ ତୁ ତାଙ୍କ ପାଖରେ ରହିଥା ।"

ତା' ପରଦିନ ମାମୁ ମୋତେ ଚନ୍ଦନ ବାବୁଙ୍କ ଘରକୁ ନେଇଗଲେ । ମୁଁ ତାଙ୍କ ବଗିଚାରେ କାମ କରିବା ଆରମ୍ଭ କଲି ।

ଧନୁ, ତୁ ତ ଜାଣୁ ମୁଁ ଠକାଇବା ପିଲା ନୁହେଁ । ଫୁଲଗଛ ମୂଳରେ ପାଣି ଦେଲି, ଫୁଲକୁଣ୍ଡ ସବୁ ସଜାଇ ରଖିଲି, ଘାସ ଉପାଡ଼ି ସଫା କଲି, ନୂଆ ନୂଆ ଫୁଲଫଳ ଗଛ ଲଗାଇଲି, ଘାସଗାଲିଚା ଜାଗାଟିକୁ କାଟି ସଜାଇଲି, ବଗିଚାକୁ ସବୁବେଳେ ସଫାସୁତୁରା କରି ରଖିଲି । ଏମିତି କାମ ସବୁ ଆନନ୍ଦରେ କଲି । ମୋ କାମ ଓ ବ୍ୟବହାର ଦେଖି ବୁଢ଼ାବୁଢ଼ୀ ବହୁତ ଖୁସି ହେଲେ । ମୁଁ ବୁଢ଼ୀକୁ ମାଆ ଓ ବୁଢ଼ାକୁ ବାବୁଜୀ ଡାକୁଥିଲି । ବୁଢ଼ୀ ବେଳେବେଳେ ମୋତେ ଘରର ବୋଲହାକ କାମ କରିବାକୁ ଡାକିଲା । ପନିପରିବା ବା ଅନ୍ୟ ଜିନିଷ କିଣି ଆଣିବାକୁ ବଜାରକୁ ପଠାଇଲା । ମୁଁ ଧୀରେ ଧୀରେ ତାଙ୍କ ଭାଷା ଶିଖିଗଲି । ତାଙ୍କର କୌଣସି କଥା ମୁଁ ଅମାନ୍ୟ କରୁ ନ ଥିଲି । ନମ୍ର ଭାବରେ କଥାବାର୍ତ୍ତା କରୁଥିଲି । ଏହିପରି ପ୍ରାୟ ଚାରିମାସ ବିତିଗଲା ।

ପ୍ରତିଦିନ ମୁଁ ବାହାର କୋଠରିଟିରେ ରୋଷେଇ କରି ଖାଉଥିଲି । ଦିନେ ବୁଢ଼ୀ ଆସି ଆଦରରେ ତାଙ୍କ ଭାଷାରେ କହିଲା - "କୃଷ୍ଣ, ତୁ କାହିଁକି ଏକାକୀ ରୋଷେଇ କରି ଖାଉଚୁ, ଆମ ଘରେ ଖାଆ ।" ବୁଢ଼ୀର ଏପରି କହିବାର ଲକ୍ଷ୍ୟ ଥିଲା, ମୁଁ ତାଙ୍କ ଘରେ ରୋଷେଇ କରିଦେବି ଏବଂ ଖାଇବି । ମୁଁ ବୁଢ଼ୀର କଥାରେ ରାଜି ହୋଇଗଲି । ରୋଷେଇ କରିବା, ବଗିଚା କାମ କରିବା, ବଜାରହାଟ କରିବା, ସବୁ କାମ ଆନନ୍ଦରେ କଲି । ଚନ୍ଦନ ବାବୁ ଖୁସି ହୋଇ ମୋତେ ମାସକୁ କୋଡ଼ିଏ ଟଙ୍କା କରି ଦେଲେ ।

ମୋ ରହିବାର ପ୍ରାୟ ଛଅ ମାସ ହୋଇଗଲା । ଚନ୍ଦନ ବାବୁଙ୍କର ଯେଉଁ ଝିଅର ଗତବର୍ଷ ବିଭାଘର ହୋଇଥିଲା, ସେ ଆସିଲା ବାପଘରେ କିଛିଦିନ ରହି ବୁଲିଯିବା ପାଇଁ । ତା' ନାଁ ରୀତା । ବୟସ ୨୩/୨୪ ହେବ । ବୁଢ଼ୀ ମୋତେ ଚିହ୍ନାଇ ଦେଇ

ତାଙ୍କ ଭାଷାରେ କହିଲା - "ରୀତା, ଯା ନାଁ କୃଷ୍ଣ । ଛଅ ମାସ ହେଲା ଆମ ଘରେ ରହିଲାଣି । ଭାରି ପିଲାଟିଏ ।" ରୀତା ମୋ ଆଡ଼କୁ ଚାହିଁ ଖୁସି ହେଲା ପରି ଜଣାପଡ଼ିଲା ।

ମୁଁ ରୀତାକୁ ରୀତାଦିଦି ବୋଲି ଡାକେ । ବେଳେବେଳେ ସେ ମୋତେ ବଜାରକୁ ପଠାଏ । ମୁଁ ବଗିଚାରେ ଫୁଲଗଛରେ ପାଣି ଦେଉଥିଲାବେଳେ ସେ ବୁଲି ବୁଲି ଫୁଲ ଦେଖେ । ଯେତେବେଳେ ମୋତେ ଯାହା କହେ, ମୁଁ ସାଙ୍ଗେ ସାଙ୍ଗେ କରିଦିଏ । ଦିନେ ସେ ମୋତେ ଖଣ୍ଡିଏ ସାବୁନ କିଣି ଆଣିବାକୁ କହିଲା । ମୁଁ କିଣିଆଣି ତା' ହାତକୁ ବଢ଼ାଇ ଦେଲି । ବଢ଼ାଇ ଦେଲା ବେଳକୁ ସେ ମୋ ମୁହଁକୁ ଚାହିଁ ଟିକିଏ ହସିଦେଲା । ମୁଁ ମଧ୍ୟ ଟିକିଏ ହସିଦେଲି ।

କୃଷ୍ଣ ଆନନ୍ଦରେ ତା' ଅନୁଭୂତି କହି ଚାଲିଥାଏ, ମୁଁ ଶୁଣୁଥାଏ । କହୁଁ କହୁଁ ଟିକିଏ ଅଟକିଗଲା । ମୁଁ କହିଲି - "କୃଷ୍ଣ, ଅଟକିଗଲୁ କାହିଁକି ? ତା'ପରେ କଅଣ ହେଲା, କହ ।"

କୃଷ୍ଣ ପୁଣି କହିଚାଲିଲା । ଦିନେ ବୁଢ଼ାବୁଢ଼ୀ ମୋତେ କହିଲେ - "କୃଷ୍ଣ, ଆଜି ଆମର ଭକ୍ତ ସମ୍ମିଳନୀକୁ ଯିବାର ଅଛି । ଟିକିଏ ଶୀଘ୍ର ରୋଷେଇକାମ ସାରିଦେବୁ । ଆମେ ଖାଇଦେଇ ଯିବୁ । ଆସୁ ଆସୁ ଛଅଟା ହୋଇଯିବ ।"

ମୁଁ ଶୀଘ୍ର ରୋଷେଇ ସାରିଦେଲି । ପୁଅ ଖାଇଦେଇ ଚାକିରିକୁ ଗଲେ । ବୁଢ଼ାବୁଢ଼ୀ ଖାଇଦେଇ ଭକ୍ତ ସମ୍ମିଳନୀକୁ ବାହାରିଗଲେ । ମୁଁ ରୀତାକୁ କହିଲି - "ରୀତାଦିଦି, ତୁମେ ଗାଧୁଆପାଧୁଆ ସାରଦିଅ । ମୁଁ ଟିକିଏ ବଗିଚାରୁ ଆସୁଛି ।"

ରୀତା ହସିଦେଇ କହିଲା - "ଶୀଘ୍ର ଆସିବ ।"

ମୁଁ ଦଶ ବାର ମିନିଟ୍ ଭିତରେ ବଗିଚାରୁ ଘରକୁ ଆସିଲି । ରୀତାର କୋଠରି ଆଡ଼କୁ ଚାହିଁଲି । ଦେଖିଲି କବାଟ କିଛି ଖୋଲା ଅଛି । ମୁଁ 'ରୀତାଦିଦି, ରୀତାଦିଦି' ଡାକି ଡାକି କବାଟ ପାଖକୁ ଚାଲିଗଲି । ରୀତା କବାଟକୁ ଭିତର ଆଡ଼କୁ ଟାଣିନେଇ ଖୋଲା କରିଦେଲା । ହସ ହସ ମୁହଁରେ ମୋ ପାଖକୁ ଲାଗିଆସିଲା । ମୁଁ କଅଣ କରିବି, ଭାବିପାରିଲି ନାହିଁ ।

କୃଷ୍ଣ ସହସା ଉଲ୍ଲସିତ ହୋଇଉଠିଲା, ତା'ର ମୁହଁ ନିର୍ମଳ ଆନନ୍ଦରେ ଉଜ୍ଜ୍ୱଳ ଦେଖାଗଲା, ବାଟବଣା ହୋଇ ବ୍ୟସ୍ତ ହୋଇ ବାଟ ଖୋଜୁଥିବା ଲୋକକୁ ସତେ ଯେପରି ଆଖି ଆଗରେ ବାଟ ଦିଶିଗଲା । ମୁଁ ଗମ୍ଭୀର ଭାବରେ ତା' କଥା ଶୁଣୁଥିଲି । ସେ ମୋ କାନ୍ଧକୁ ହଲାଇ ଦେଇ କହିଲା, "ଧନୁ, ସେହି ଦୁର୍ବଳ ମୁହୂର୍ତ୍ତରେ ମୋତେ କିଏ ରକ୍ଷା କଲା ଜାଣୁ ? ମୋ ଭଉଣୀ । ମୋ ଭଉଣୀ ମାଧୁରୀର ରୂପ ମୋ ଆଖି ଆଗରେ

ନାଚିଗଲା । ମାଧୁରୀର ସେହିପରି ପୂରିଲା ପୂରିଲା ଦେହ, ହସ ହସ ମୁହଁ । ଗଲାବର୍ଷ ତା'ର ବାହାଘର ହେଲା, ତୁ ତ ଦେଖିଛୁ । ରୀତା ମୋତେ ଠିକ୍ ମାଧୁରୀ ପରି ଦେଖାଗଲା । ମୁଁ ରୀତାକୁ ଆନନ୍ଦରେ କହି ପକାଇଲି - "ରୀତାଦିଦି, ମୋର ସୁନା ଭଉଣୀଟିଏ ! ମୁଁ ତ ଗୋଟିଏ ଗରିବ ଭାଇ, ତୁମକୁ କ'ଣ ଦେଇପାରିବି ? ତଥାପି ମୋ ପାଖରେ ଯେତିକି ଟଙ୍କା ଅଛି, ସେଥିରେ ତୁମପାଇଁ କାଲି ଗୋଟିଏ ରୁପା ପାଉଞ୍ଜି ଆଣିଦେବି । ମୋ ମାଧୁରୀ ଭଉଣୀକୁ ରୁପା ପାଉଞ୍ଜି ଦେବାପାଇଁ ଏ ଟଙ୍କା ରଖିଥିଲି, ତାକୁ ପରେ ଦେବି ।"

ରୀତାଦିଦି ଆଖି ଛଳଛଳ କରି କହି ପକାଇଲା - "ମୋ ସୁନା ଭାଇଟାରେ ।"

ମୁଁ କୃଷ୍ଣର କଥାରେ ନିଜକୁ ହଜାଇ ଦେଇଥିଲି । ମୋ ସାଙ୍ଗର ଅନାବିଳ ଚରିତ୍ରରେ ମୋ ମନ କୁଣ୍ଢେମୋଟ ହୋଇଉଠିଲା ।

କହିଲି - "କୃଷ୍ଣ, ତୁ ଓଡ଼ିଆପୁଅ କୃଷ୍ଣ ।"

ଚାଷବାସ କରି, ମୂଲ ଲାଗି, ଅନେକ ଦୁଃଖକଷ୍ଟ ସତ୍ତ୍ୱେ ଅଭାବରେ ସ୍ୱଭାବ ନଷ୍ଟ ନ କରି ସଚ୍ଚୋଟ ମଣିଷ ହୋଇପାରିଥିଲେ ସେମାନେ । ସମସ୍ତେ ଏବେ ପରପାରିରେ । ସତ୍ ଜୀବନଯାପନ କରି ଆସିଥିବା ଜଣେ ଜଣେ ଆଦର୍ଶ ମନୁଷ୍ୟ ସେମାନେ ମୋ ଦୃଷ୍ଟିରେ । ଶେଷରେ ଏତିକି କହିବି - ସେମାନଙ୍କ ସହିତ ମୋର ବାଲ୍ୟଜୀବନର ସ୍ମୃତି ଏତେ ମଧୁର ଯେ ପରପୁରରେ ସେମାନଙ୍କୁ ଭେଟିବାର କାମନା ମୋ ଅନ୍ତରରେ ଏବେ ମଧ୍ୟ ଅଲିଭା ହୋଇ ଜଳୁଛି ।



# ଢାଲ ସୁପାରି

ଢାଲ ସୁପାରି ଅର୍ଥ ତଂତ୍ର ଯୁଦ୍ଧ । ମୁଁ ଗାଁରେ ଥରେ ଢାଲ ସୁପାରି ଦେଖିଥିଲି । ମୋ ବାଲ୍ୟ ବୟସର କଥା । ଆମ ଗାଁର ଉତ୍ତର ଦିଗକୁ ଏକ ଗାଁ । ନାମ ହଟିଆପଡ଼ା । ଆମ ଗାଁରୁ ପ୍ରାୟ ଏକ ମାଇଲ୍ ଦୂର । ପୂର୍ବ ଦିଗକୁ ଗଜରାଜପୁର ନାମକ ଗାଁ । ପ୍ରାୟ ତିନି ମାଇଲ୍ ଦୂର । ହଟିଆପଡ଼ାରେ ଜଣେ ତାନ୍ତ୍ରିକ ଥିଲେ । ଜାତିରେ କୈବର୍ତ୍ତ । ତାଙ୍କ ବୟସ ସେତେବେଳେ ୬୫ ସରିକି ଥିଲା । ଗଜରାଜପୁରରେ ଜଣେ ତାଂତ୍ରିକ ଥିଲେ । ଜାତିରେ ମତ୍ସ୍ୟଜୀବୀ (ଗୋଖା) । ବୟସ ୩୫ ସରିକି ଥିଲା । ଦୁହିଁଙ୍କ ନାମ ଭୁଲି ଗଲିଣି । ଗଜରାଜପୁରର ତାଂତ୍ରିକ ହଟିଆପଡ଼ାର ତାଂତ୍ରିକଙ୍କଠାରୁ ତଂତ୍ରବିଦ୍ୟା ଶିକ୍ଷା କରିଥିଲେ । ଶିକ୍ଷା କରି ସାରିଲା ପରେ ସେ କିଛି କାଳ ଗୁରୁଙ୍କ ନିକଟରେ ବିନୟୀ ରହିଥିଲେ; କିନ୍ତୁ କାହିଁକି କେଜାଣି ଗୁରୁଶିଷ୍ୟଙ୍କ ମଧ୍ୟରେ ମନୋମାଳିନ୍ୟ ଦେଖା ଦେଲା । ଦୁହେଁ ପରସ୍ପରର ଶତ୍ରୁ ହୋଇଗଲେ ଏବଂ ପରସ୍ପରକୁ ନ୍ୟୂନ ପ୍ରତିପାଦନ କରିବାକୁ ଲାଗିଲେ ।

ଆମ ଗାଁ 'ଆୟତନ' ସେତେବେଳେ ଥିଲା କନିକାର ଏକ ମୁଖ୍ୟ ଗାଁ । ଗାଁରେ ଭଗବାନ୍ ମହାପାତ୍ର (ପ୍ରକୃତ ସାଂଜ୍ଞା ଥିଲା 'ସୂତାର', କିନ୍ତୁ ରାଜଦତ୍ତ ଉପାଧି ପାଇଥିଲେ 'ମହାପାତ୍ର'), ସୁଦର୍ଶନ ଧଳ, ଭକ୍ତ ଚରଣ ଦାସ, ନିତ୍ୟାନନ୍ଦ ମହାନ୍ତି, କାଳୀଚରଣ ରଣବାହୁ, ଚିନ୍ତାମଣି ସାହୁ, କରୁଣି ବେହେରା, ଉଦୟନାଥ ବିଶ୍ବାଳ ପ୍ରମୁଖ । ସେମାନେ ଦୁଇ ତାଂତ୍ରିକଙ୍କ ମଧ୍ୟରେ କିଏ ବଡ଼, କିଏ ସାନ ଅର୍ଥାତ୍ କିଏ ଅଧିକ ତଂତ୍ରବିଦ୍ୟା ଜାଣିଛି, କିଏ କମ୍ ଜାଣିଛି, ଏହା ଜାଣିବା ପାଇଁ ଢାଲ ସୁପାରି ଯୁଦ୍ଧର ଆୟୋଜନ କଲେ । ଦୁଇ ତାଂତ୍ରିକ ସେମାନଙ୍କର ଆମଂତ୍ରଣକୁ ରକ୍ଷା କଲେ । ଏକ ଦିନ ଧାର୍ଯ୍ୟ ହେଲା । ଦୁହେଁ ନିଜ ନିଜର

ତଂତ୍ର ସାମଗ୍ରୀ ଘେନି ଆମ ଗାଁକୁ ଆସିଲେ । ଡାଲ ସୁପାରି ହେବ ବୋଲି ଲୋକମୁଖରେ ପ୍ରଚାର ହୋଇଗଲା । ହଜାର ହଜାର ଆବାଳବୃଦ୍ଧବନିତା ତାହା ଦେଖିବା ପାଇଁ ଆୟତନରେ ରୁଣ୍ଡ ହେଲେ । ମହାଦେଈଆଡ଼ିଆରୁ ପାଣମାନେ ଢୋଲ, ନାଗରା, କାହାଳୀ ଆଦି ଧରି ଆସିଲେ । ଯେତେବେଳେ ଯେ ଜିଣିବ, ତା ସପକ୍ଷରେ ବାଜା ବଜାଇବେ ।

'ଆୟତନ'ର ହାଟ ପଡ଼ିଆ ହେଲା ଡାଲ ସୁପାରିର କ୍ଷେତ୍ର । ପଡ଼ିଆର ଉତ୍ତର ଦିଗକୁ ଦାଣ୍ଡ ମଝିରେ ବୃଦ୍ଧ ତାଂତ୍ରିକ ମୁରୁଜରେ ଏକ ମଣ୍ଡଳ ରଚି ତା' ଭିତରେ ତାଙ୍କ ତଂତ୍ର ସାମଗ୍ରୀ ରଖିଲେ ଏବଂ ଯୁବ ତାଂତ୍ରିକ ଦକ୍ଷିଣ ଦିଗକୁ ଦାଣ୍ଡ ମଝିରେ ମଣ୍ଡଳ ରଚି ତାଙ୍କ ତଂତ୍ର ସାମଗ୍ରୀ ରଖିଲେ । ତା'ପରେ ଦୁହେଁ ପୂଜା ଆରମ୍ଭ କଲେ । ତତ୍ ସଂଗେସଂଗେ ବାଦ୍ୟନାଦରେ ଗଗନପବନ ପ୍ରକଂପିତ ହୋଇଉଠିଲା । ପୂଜା ପ୍ରାୟ ଘଣ୍ଟାଏ ସମୟ ଲାଗିଲା । ତା'ପରେ ବାଦ୍ୟନାଦକୁ ବନ୍ଦ କରାଯାଇ ତଂତ୍ରବାଣ ପେଷାପେଷି ଆରମ୍ଭ ହେଲା । ବାଜା ବାଲାଙ୍କୁ କୁହାଗଲା ଗୋଟିଏ ଗୋଟିଏ ବାଣ ସରିଲା ପରେ ଏବଂ କିଏ ଜିଣିଲା କିଏ ହାରିଲା ଲୋକେ ଜାଣିଲା ପରେ ବାଜା ବଜାଇବେ ।

ବାଣ ପେଷା ଆରମ୍ଭ କଲେ ପ୍ରଥମେ ବୃଦ୍ଧ ତାଂତ୍ରିକ । ସେ ଆଂଜୁଳାଏ ବାଲି ମଣ୍ଡଳ ବାହାରୁ ତୋଳି ନେଇ ସେଥିରେ ଖଣ୍ଡିଏ ଛୋଟ ଡାଳ ପୋତିଦେଲେ ଏବଂ ତାହାକୁ ଉପାଡ଼ିବା ପାଇଁ ଯୁବ ତାଂତ୍ରିକଙ୍କୁ ଆହ୍ୱାନ କଲେ । ଯୁବ ତାଂତ୍ରିକ ଯାଇ ଯେତେ ଚେଷ୍ଟା କଲେ, ଉପାଡ଼ି ପାରିଲେ ନାହିଁ, ଶେଷରେ ସେଇଠି ପଡ଼ିଯାଇ ପାରିବି ନାହିଁ ବୋଲି କହିଲେ । ଲୋକେ ଜାଣିଲେ ଯେ ବୃଦ୍ଧ ଜିଣିଲେ, ଯୁବା ହାରିଲେ । କିନ୍ତୁ ଦର୍ଶକମାନଙ୍କ ମଧ୍ୟରୁ କେତେକ ଏହାକୁ ଅବିଶ୍ୱାସ କଲେ ଏବଂ ଆମେ ଉପାଡ଼ି ଦେବୁ ବୋଲି କହିଲେ ।

ବୃଦ୍ଧ ସେମାନଙ୍କୁ ଡାକିଲେ, "ଆସ, ଉପାଡ଼ ।"

ଆଶ୍ଚର୍ଯ୍ୟର ବିଷୟ, ଜଣକ ପରେ ଜଣେ, ଏପରି ୪/୫ଜଣ ଗଲେ, କେହି ସେହି ଆଂଜୁଳାଏ ମାତ୍ର ବାଲିରୁ ଡାଳଟିକୁ ଉପାଡ଼ି ପାରିଲେ ନାହିଁ । ସମସ୍ତେ ଆଶ୍ଚର୍ଯ୍ୟରେ ଆବାକାବା ହେଲେ ।

ତା'ପରେ ଯୁବା ତାଂତ୍ରିକଙ୍କର ବାଣ ପେଷା ପାଳି ପଡ଼ିଲା । ସେ ଗୋଟାଏ ଜ୍ୱର ବାଣ ପେଷିଲେ । କହିଲେ 'ଏହାକୁ ସମ୍ଭାଳ ।'

ବୃଦ୍ଧ କିନ୍ତୁ ତାହାକୁ ସମ୍ଭାଳି ପାରିଲେ ନାହିଁ । ଜ୍ୱରରେ ଭୀଷଣ କଂପ ଆସିଲେ ମଣିଷ ଯେପରି ଥରଥର ହୁଏ ଏବଂ ପ୍ରଳାପ କରେ, ବୃଦ୍ଧ ସେହିପରି ହେଲେ ।

କିଛି ସମୟ ପରେ ଯୁବ ତାଂତ୍ରିକ ବାଣ ଫେରାଇ ଆଣିଲେ ।

ଏହିପରି ଭାବରେ ଦୁହିଁଙ୍କ ମଧ୍ୟରେ ବାଣ ପେଷାପେଷି ଚାଲିଲା ଏବଂ ଦୁହେଁ ପରସ୍ପରକୁ କଟୁ କଥା ମଧ୍ୟ କହିଲେ । ଦର୍ଶକମାନେ ସ୍ତବ୍ଧ ହୋଇ ଦେଖୁଥାଆନ୍ତି ।

ମଝିରେ ମଝିରେ ଢୋଲ, ନାଗରା ଆଦି ବାଜି ଉଠୁଥାଏ । ବୃଦ୍ଧ ଅନେକ ବାଣକୁ ପ୍ରତିହତ କରି ପାରୁଥାଆନ୍ତି, କିନ୍ତୁ ଯୁବା ପାରୁ ନଥାନ୍ତି, ଅଳ୍ପ କେତେକ ବାଣରେ ଛିଣୁ ଥାଆନ୍ତି । କ୍ରମେ ଦୁହିଁଙ୍କର କ୍ରୋଧ ବଢୁଥାଏ । କିଏ କେଉଁ ବାଣ ପେଷିବ, ଆଗରୁ କହି ଦେଉଥାଏ । ସେହି ଅନୁସାରେ ପ୍ରତିପକ୍ଷ ପ୍ରସ୍ତୁତ ହୋଇ ରହୁଥାଏ । ଯୁବା ଆହ୍ୱାନ କଲେ - "ଏଥର ବକା ବାଣ ଛାଡ଼ିଲି, ସଂଭାଳ ।" (ବକା ବାଣ ଅର୍ଥ - ଦେହରେ ଏହି ବାଣ ପଶିଲେ ମଣିଷ ଖାଲି ପାଗଳ ପ୍ରାୟେ ବକେ ।)

ବୃଦ୍ଧ ତାହାକୁ ପ୍ରତିହତ କରିବାକୁ ପ୍ରସ୍ତୁତ ହେଉ ଥାଆନ୍ତି, ଯୁବା ସେହି ବାଣକୁ ନ ପେଷି ନାଚ ବାଣ ପେଷି ଦେଲେ । ବୃଦ୍ଧ ଖାଲି ନାଚିବାକୁ ଲାଗିଲେ । ବାଣ ପ୍ରକୋପ ସରିଲା ପରେ ବୃଦ୍ଧ ଅତ୍ୟନ୍ତ ରାଗି ଗଲେ । କହିଲେ - "ତୁ ମୋଠାରୁ ଶିଖି ମୋତେ ମାୟା କଲୁ । ହଉ ଏଥର ସଂଭାଳ ।"

ଆଉ କେଉଁ ବାଣ ପେଷିବେ, ଆଗରୁ ନ କହି ପେଷିଲେ । ଗୋଟାଏ ମାଙ୍କିଡ଼ିଆ ବାଣ ମାରିଦେଲେ ଯେ ତାହାକୁ ସମ୍ଭାଳି ନ ପାରି, ମାଙ୍କଡ଼ ଭଳି କୁଦା ମାରି ମାରି ଯାଇ, ଦାଣ୍ଡ କଡ଼ରେ ଥିବା କୋଟି ବ୍ରହ୍ମାଣ୍ଡନାଥ ଜିଉଙ୍କ ମନ୍ଦିର (ଚାଳଘର ମନ୍ଦିର) ପାଖ ଆମ୍ବ ଗଛରେ ଚଢ଼ି ଆମ୍ବପତ୍ର ଖେଚାଇବାରେ ଏବଂ ମାଙ୍କଡ଼ ପରି 'ହୁମ୍' ଶବ୍ଦ କରିବାରେ ଲାଗିଲେ । ସେହି ମାଙ୍କିଡ଼ିଆ ବାଣର ପ୍ରକୋପ ନ ଯାଉଣୁ ବୃଦ୍ଧ ଗୋଟାଏ କୁମ୍ଭୀରିଆ ବାଣ ମାରି ଦେଲେ । ଯୁବା ଗଛରୁ ଓହ୍ଲାଇ ଦୌଡ଼ି ଦୌଡ଼ି ଯାଇ କୋଟି ବ୍ରହ୍ମାଣ୍ଡନାଥ ଜିଉଙ୍କ ପୋଖରୀରେ ପଡ଼ିଲେ । ଖରାଦିନ । ପୋଖରୀରେ ଆଣ୍ଠୁଏ ପର୍ଯ୍ୟନ୍ତ ପାଣି ଥିଲା ଏବଂ ପ୍ରବଳ ପଙ୍କ ଥିଲା । ଯୁବା ତାଂତ୍ରିକ ସେହି ପାଣି ଓ ପଙ୍କ ଭିତରେ କୁମ୍ଭୀର ଭଳି ଏ ପଟରୁ ସେପଟ ଭୁଷି ହୋଇ ପହଁରିବାରେ ଲାଗିଲେ । ଲୋକମାନେ ପୋଖରୀ ପାଖକୁ ଧାଇଁଲେ ଏବଂ ସେହି ଅବସ୍ଥା ଦେଖି ଭୟଭୀତ ହୋଇ ପଡ଼ିଲେ । ବୃଦ୍ଧ ତାଂତ୍ରିକ 'ମରିଗଲା, ମରିଗଲା' ବୋଲି କହି ବାଣ ଓ୍ୱାପସ ଆଣିଲେ ।

ଦୁଇ ତାଂତ୍ରିକ ଖୁବ୍ କ୍ରୁଦ୍ଧ ହୋଇ ଉଠୁଥିବାର ଏବଂ ଭୟଙ୍କର ଘଟଣାମାନ ଘଟୁଥିବାର ଦେଖି ଆୟୋଜନକାରୀମାନେ ତଂତ୍ରଯୁଦ୍ଧକୁ ବନ୍ଦ କରିଦେଲେ ।

ସେହି ଡାଲ ସୁପାରି ଦୃଶ୍ୟମାନ ଯେତେବେଳେ ମୋ ଆଖି ଆଗରେ ନାଚିଯାଏ, ମୋର ଧାରଣା ଦୃଢ଼ୀଭୂତ ହୁଏ ଯେ ଭାରତରେ ପୂର୍ବ କାଳରେ ଏକ ଅଦ୍‌ଭୁତ ପ୍ରକାର ତଂତ୍ର ସଭ୍ୟତା ଥିଲା, ଯେଉଁଥିରେ ଅସାଧ୍ୟ ସାଧନ କରି ହେଉଥିଲା । ପ୍ରକୃତରେ ଅନାଦି ଅନନ୍ତ କାଳସ୍ରୋତରେ କେତେ କଅଣ ଘଟିଗଲାଣି ଏବଂ ଆହୁରି କଅଣ ଘଟିବ, କିଏ କଳନା କରିପାରିବ ?



# କୁମ୍ଭୀରମରା

ମୋ ଗାଁ କେନ୍ଦ୍ରାପଡ଼ା ଜିଲ୍ଲାର କନିକା ଅନ୍ତର୍ଗତ 'ଆୟତନ' ଗ୍ରାମ । ଏହି ଗ୍ରାମକୁ ଲାଗି ଥାଉ ଏକ ଗ୍ରାମ 'ମହାଦେଈଆଡ଼ିଆ' । ମହାଦେଈଆଡ଼ିଆକୁ ଲାଗି ଖରସ୍ରୋତା ନଦୀ । ଏହାକୁ ଖରସୁଆ ନଈ ବୋଲି କହନ୍ତି । ଖରସୁଆ ନଈ ଚିରସ୍ରୋତା ଓ ବହୁତ ଗଭୀର । ମୁଁ ଯେତେବେଳେ ଚଉଦ ପନ୍ଦର ବର୍ଷ ବୟସର ହୋଇଥିଲି, ଏକ କୁମ୍ଭୀର ମରା ଦୃଶ୍ୟ ଦେଖିଥିଲି, ଯାହାକି ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରିନାହିଁ ।

ଥରେ ଖରସୁଆ ନଈ ଭିତରକୁ ଗୋଟାଏ ବଡ଼ କୁମ୍ଭୀର ସମୁଦ୍ର ମୁହାଣ ଆଡୁ ପଶି ଆସିଥିଲା । ନଈକୂଳରେ ଚରୁଥିବା ଗାଈ ଗୋରୁଙ୍କୁ ଟାଣି ନେଇ ଖାଇଲା । ନଈରେ ଜାଲ ପକାଉଥିବା ଲୋକଙ୍କ ମଧ୍ୟରୁ କେତେକଙ୍କୁ ଲାଞ୍ଜରେ ପିଟି ନଈରେ ପକାଇ ବୁଡ଼ାଇ ଖାଇଲା । ଲୋକମାନେ କୁମ୍ଭୀର ଉତ୍ପାତରେ ଛାନିଆଁ ହେଲେ, ଏପରିକି ନଦୀକୂଳରେ ଠିଆ ହେବାକୁ ସାହସ କଲେ ନାହିଁ ।

ମହାଦେଈଆଡ଼ିଆର ହରିଜନ ବସ୍ତିର ଲୋକମାନେ ନଦୀ ଉପରେ ନିର୍ଭର କରି ଚଳୁଥିଲେ । ଗାଧୋଇବା ପାଇଁ, ପିଇବା ପାଇଁ ନଦୀର ପାଣି ବ୍ୟବହାର କରୁଥିଲେ । କୁମ୍ଭୀର ଉତ୍ପାତ ଯୋଗୁ ସେମାନେ ବଡ଼ ଅସୁବିଧାରେ ପଡ଼ିଲେ । ଅବଶ୍ୟ ନଦୀକୂଳଠାରୁ ନଦୀ ଭିତରକୁ ମୋଟା ମୋଟା କାଠ ପୋତି ଖୁଆଡ଼ କରି ତା' ଭିତରେ ଗାଧୋଉ ଥିଲେ ଓ ପାଣି ଆଣୁଥିଲେ । ମାତ୍ର ଜୁଆର ସମୟରେ ଖୁଆଡ଼ ଉପର ପର୍ଯ୍ୟନ୍ତ ପାଣି ହୋଇ ଯାଉଥିବାରୁ ଲୋକେ ଖୁଆଡ଼ ଭିତରକୁ ଯିବାକୁ ସାହସ କଲେ ନାହିଁ । କାରଣ କୁମ୍ଭୀର ଖୁଆଡ଼ ଭିତରକୁ ଜୁଆର ସମୟରେ ପଶି ଆସିବାର ଆଶଙ୍କା ରହୁଥିଲା । ତେଣୁ

ହରିଜନ ସାହିର ଲୋକେ କେବଳ ଭଟ୍ଟା ସମୟରେ ଖୁଆଡ଼ ଭିତରେ ଗାଧୋଉଥିଲେ ଏବଂ ସେଠାରୁ ପାଣି ଆଣୁଥିଲେ । ଅନ୍ୟ ସମୟରେ ନଦୀକୂଳରେ ମଧ ଠିଆ ହେବାପାଇଁ ଭୟ କଲେ ।

ଆମ ସମୟରେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଜନ୍ତୁଶିକାର କରିବାରେ, ବିଶେଷ ଭାବେ କୁମ୍ଭୀର, ବାଘ ଆଦି ଜନ୍ତୁଙ୍କୁ ମାରିବାରେ ଦକ୍ଷ ଥିଲେ । ଏବେ ତ ବନ୍ୟଜନ୍ତୁଙ୍କୁ ଶିକାର କରିବା ସଂପୂର୍ଣ୍ଣ ନିଷେଧ କରାଯାଇଛି ଏବଂ ଏପରି କଲେ କଠୋର ଦଣ୍ଡ ବ୍ୟବସ୍ଥା କରାଯାଇଛି । ସେତେବେଳେ କିନ୍ତୁ ସେପରି ନ ଥିଲା । ବିପଦ ସୃଷ୍ଟି କରୁଥିବା ହିଂସ୍ର ପ୍ରାଣୀଙ୍କୁ ରାଜା ବନ୍ଧୁକ ଦ୍ୱାରା ଶିକାର କରୁଥିଲେ । ଆମ ଅଞ୍ଚଳରେ କୁମ୍ଭୀର, ବାଘ ବା ବାରହା ଆଦି ଜନ୍ତୁ ଉତ୍ପାତ କଲେ ରାଜାଙ୍କୁ ଖବର ଦିଆ ଯାଉଥିଲା । ତେଣୁ ଲୋକେ ଯାଇ କୁମ୍ଭୀର ଉତ୍ପାତ ବିଷୟରେ ରାଜାଙ୍କୁ ଜଣାଇଲେ । ରାଜା ତା'ପରଦିନ ସକାଳ ବେଳା ମଟର ଲଞ୍ଚରେ ଆସିବା ପାଇଁ ସମୟ ଠିକ୍ କଲେ ।

ରାଜା ଲଞ୍ଚରେ ଆସି କୁମ୍ଭୀର ମାରିବେ, ଏହା ଜାଣି ନଦୀ ଦୁଇକୂଳର ଗାଁ ଗୁଡ଼ିକରୁ ଶହ ଶହ ଲୋକ ଆସି ନଦୀକୂଳରେ ଜୁଣ୍ଟ ହୋଇଗଲେ । ପୂର୍ବଦିନ ରାଜାଙ୍କ ନିର୍ଦ୍ଦେଶ ଅନୁସାରେ ଏକ କୁମ୍ଭୀରମରା କଣ୍ଟାକୁ କାଚି (ମୋଟା ଦଉଡ଼ା ଯାହାକି ଡଙ୍ଗା ଟଣାରେ ବା ଲଙ୍ଗର ପକାଇବାରେ ବ୍ୟବହାର କରାଯାଏ) ଦଉଡ଼ାରେ ବାନ୍ଧି ଦିଆଗଲା । ଗୋଟିଏ କୁକୁରକୁ ମାରି ତା'ର ଚମଡ଼ା ଉତାରି ସେହି କଣ୍ଟାରେ ଥୋପ ରୂପେ ଗୁନ୍ଥି କଦଳୀ ଭେଳାରୁ ନଦୀ ଭିତରକୁ ଝୁଲାଇ ଦିଆ ଯାଇଥିଲା । ମାଛଧରା କଣ୍ଟାରେ (ବନ୍‌ସି କଣ୍ଟାରେ) ଯେପରି ଗୋଟିଏ ଶୋଲ ଲାଗିଥାଏ, ସେହିପରି କଦଳୀ ଭେଳାକୁ କୁମ୍ଭୀର କଣ୍ଟାର ଶୋଲ ଭାବରେ ବ୍ୟବହାର କରାଯାଇଥିଲା । କାଚି ଦଉଡ଼ାର ଯେଉଁ ମୁଣ୍ଡରେ କୁମ୍ଭୀର କଣ୍ଟା ବନ୍ଧା ଯାଇ କୁକୁର ଝୁଲା ଯାଇଥିଲା, ସେହି ମୁଣ୍ଡରେ ଭେଳାକୁ ବନ୍ଧା ଯାଇଥିଲା, ଯଦ୍ୱାରା କୁମ୍ଭୀର ଥୋପ ଗିଳି ଯେଉଁଆଡ଼େ ଯିବ, ସେହି ଆଡ଼କୁ କଦଳୀ ଭେଳା ଟାଣି ହୋଇ ଯିବ । ଦଉଡ଼ାର ଅନ୍ୟ ମୁଣ୍ଡଟି କୂଳରେ ଥିବା ଏକ ମୋଟା ଗଛରେ ବାନ୍ଧି ଦିଆ ଯାଇଥିଲା । କେତେକ ଲୋକ ରାତିସାରା କୂଳରେ ରହି କଦଳୀ ଭେଳାକୁ ଲକ୍ଷ୍ୟ ରଖିଲେ, କେତେବେଳେ କୁମ୍ଭୀର ଥୋପ ଗିଳିବ ।

ରାତିର ଶେଷ ଆଡ଼କୁ କଦଳୀ ଭେଳା ଏଣେ ତେଣେ ଟାଣି ହେବାରେ ଲାଗିଲା । ଲୋକେ ଜାଣିପାରିଲେ କୁମ୍ଭୀର ଥୋପ ଗିଳିଛି । କଣ୍ଟା ତା ପେଟ ଭିତରେ ଲାଖି ଯାଇଥିବାରୁ ସେ ଯେଉଁଆଡ଼େ ଯାଉଛି, ଭେଳା ସେହି ଆଡ଼କୁ ଟାଣି ହେଇ ଯାଉଛି । କୁମ୍ଭୀର ଥୋପ ଗିଳିଥିବା ଖବର ରାଜାଙ୍କ ପାଖରେ ପହଞ୍ଚାଇ ଦିଆଗଲା ।

ରାଜାଙ୍କର ୫/୬ଟି ମଟର ଲଞ୍ଚ୍ ଥିଲା । ଖରସୁଆ ନଈରୁ ଏକ ଓସାରିଆ କେନାଲ ରାଜବାଟୀ ପର୍ଯ୍ୟନ୍ତ ଖୋଳା ଯାଇଥିଲା, ଯାହା କି ଏକ ଛୋଟ ନଈ ଭଳି ଦିଶୁଛି, ସେହି ନଈରେ ଲଞ୍ଚ୍ ସବୁ ରହୁଥିଲା । ରାଜା ଯେତେବେଳେ ଚାହୁଁଥିଲେ, ଲଞ୍ଚ୍‌ରେ ଯିବା ଆସିବା କରୁଥିଲେ ।

ଲୋକମାନଙ୍କ ସହିତ ମୁଁ ନଈକୂଳରେ ଠିଆ ହୋଇଥାଏ, ରାଜାଙ୍କ ମଟର ଲଞ୍ଚର ଶବ୍ଦ ଶୁଣାଗଲା । ମୋତେ ଖୁବ୍ କୌତୂହଳ ଲାଗୁଥାଏ । କୁମ୍ଭୀର କଦଳୀ ଭେଳାକୁ ଟାଣି ଟାଣି ନିସ୍ତେଜ ହୋଇ କେତେବେଳେ ପାଣି ଉପରେ ଭାସୁଥିବାର ଦେଖା ଯାଉଥାଏ, ପୁଣି ବୁଡ଼ି ଯାଉଥାଏ । ରାଜା ନଦୀ ଭିତରେ କିଛି ଦୂରରେ ଲଞ୍ଚ୍ ରଖିଲେ । ତାଙ୍କ ନିର୍ଦ୍ଦେଶାନୁସାରେ ଲୋକମାନେ ଗଛରେ ବନ୍ଧା ହୋଇଥିବା ଦଉଡ଼ାକୁ ଧରି ଟାଣିଲେ । କଦଳୀଭେଳା କୂଳ ଆଡ଼କୁ ଟାଣି ହୋଇ ଆସିଲା, କିନ୍ତୁ କୂଳଠାରୁ ଅଳ୍ପ ଦୂରରେ ରହିଲା, ଆଉ ଆସିଲା ନାହିଁ । ତେଣୁ କୁମ୍ଭୀର ମାଟି କାବୁଡ଼ି ପଡ଼ି ରହିଥିବାର ଜଣାପଡ଼ିଲା । ଦଉଡ଼ାକୁ ବେଶୀ ଜୋର୍‌ରେ ଟାଣିଲେ କାଳେ କଣ୍ଟା ତା' ପେଟ୍‌ରୁ ଖସି ଆସିବ, ସେଥିପାଇଁ ଆଉ ଟାଣିଲେ ନାହିଁ ।

ରାଜା କିଛି କ୍ଷଣ ଚିନ୍ତା କଲେ । ତା'ପରେ ଲୋକଙ୍କୁ ୧୫ / ୨୦ଟା ବଡ଼ ମାଟିହାଣ୍ଡି ଆଣିବାକୁ କହିଲେ । ଲୋକମାନେ ସଙ୍ଗେ ସଙ୍ଗେ ଯାଇ ଗାଁର ଘରମାନଙ୍କରୁ ୧୫/୨୦ଟି ହାଣ୍ଡି ସଂଗ୍ରହ କରି ଆଣିଲେ । ରାଜାଙ୍କ ନିର୍ଦ୍ଦେଶ ଅନୁଯାୟୀ ସେହି ହାଣ୍ଡି ସବୁର ମଝିରେ ବଡ଼ ବଡ଼ କଣା କରାଗଲା ଏବଂ ଗଛରୁ କାଟି ଦଉଡ଼ାକୁ ଫିଟାଇ ହାଣ୍ଡିଗୁଡ଼ିକୁ ସେଥିରେ ଗଳାଇ ନଦୀ ଭିତରକୁ ଠେଲି ଦିଆଗଲା । ହାଣ୍ଡିଗୁଡ଼ିକ ଯାଇ କୁମ୍ଭୀର ମୁଣ୍ଡରେ ବାଜନ୍ତେ କୁମ୍ଭୀର ହଠାତ୍ ଭୁସ୍ କରି ଉପରକୁ ଉଠିଲା । ରାଜା ଆଗରୁ କେହି ସାମ୍‌ନାରେ ନ ରହିବା ପାଇଁ ନିର୍ଦ୍ଦେଶ ଦେଇଥିଲେ, କାଳେ ଗୁଳି ଲକ୍ଷ୍ୟଭ୍ରଷ୍ଟ ହୋଇ କାହା ଦେହରେ ବାଜିବ, ଏହି ଆଶଙ୍କାରେ ।

ରାଜା ବନ୍ଧୁକରେ ଗୁଳି ଭର୍ତ୍ତି କରି ପ୍ରସ୍ତୁତ ହୋଇ ଲଞ୍ଚ୍ ଉପରେ ରହି ଥାଆନ୍ତି, କୁମ୍ଭୀର ଭୁସ୍ କରି ଉଠିବା ମାତ୍ରେ ରାଜା ତା ମୁଣ୍ଡ ଉପରକୁ ଲକ୍ଷ୍ୟ କରି ଗୁଳି ଚଳାଇଲେ । ଏକା ସଙ୍ଗେ ଢୋଢୋ ହୋଇ ୫/୬ଟା ଗୁଳି କୁମ୍ଭୀର ଦେହରେ ଗଳିଗଲା । କୁମ୍ଭୀର ପାଣିରେ ବାଡ଼େଇପିଟି ହୋଇ ଛଟପଟ ହେବାରେ ଲାଗିଲା । ତା' ରକ୍ତରେ ପାଣି ଲାଲ ହୋଇଗଲା । ରାଜା ପାଣି ଭିତରକୁ ମଧ୍ୟ ତା' ଦେହ ଉପରକୁ ଲକ୍ଷ୍ୟ କରି ଗୁଳି ଚଳାଇଲେ । କୁମ୍ଭୀର ମରି ପାଣି ଉପରକୁ ଭାସି ଉଠିଲା । ଲୋକମାନେ କାଟି ଦଉଡ଼ାକୁ ଟାଣି ଭେଳା ସହ କୁମ୍ଭୀରକୁ କୂଳ ପାଖକୁ ଆଣିଲେ । କୂଳରେ ଲାଗିଲା ପରେ ରାଜା

କୁମ୍ଭୀର ଦେହର ବିଭିନ୍ନ ସ୍ଥାନକୁ ଆହୁରି ଗୁଳି ମାରିଲେ । କୁମ୍ଭୀରଟା ମରି ସଂପୂର୍ଣ୍ଣ ଭାବେ ନିଶ୍ଚଳ ହୋଇଗଲା । ବିରାଟ କୁମ୍ଭୀର, ପ୍ରାୟ ୫୦ ଫୁଟ ଲମ୍ବ ଥିଲା । ରାଜା ଲଞ୍ଚରେ ଚାଲିଗଲେ । ତାଙ୍କ ନିର୍ଦ୍ଦେଶରେ ଲୋକମାନେ କୁମ୍ଭୀରକୁ ଦଉଡ଼ାରେ ବାନ୍ଧି ଘୋଷାଡ଼ି ଘୋଷାଡ଼ି ରାଜବାଟୀ ପର୍ଯ୍ୟନ୍ତ ନେଲେ । ସେଠାରେ କୁମ୍ଭୀର ଦେହରୁ ଛାଲ କାଢ଼ି ରଖାଗଲା ବୋଲି ଆମେ ଶୁଣିଲୁ ।

ସେହି କୁମ୍ଭୀରମରା ଦୃଶ୍ୟ ମୋ ମନରେ ଯେତିକି କୌତୂହଳ ସୃଷ୍ଟି କରିଥିଲା, ସେତିକି ଭୟ ମଧ୍ୟ ସଂଚାର କରିଥିଲା । ମୁଁ ଯେବେ ଏକୂଳ ସେକୂଳ ପାଣିଭରା ନଈ ଦେଖେ, ସଂଗେ ସଂଗେ ମୋ ମନକୁ କୁମ୍ଭୀର ଧାରଣାଟା ଆସିଯାଏ । ଏହି ଧାରଣା ଯୋଗୁ ହିଁ ମୁଁ ପରେ ଥରେ କୁମ୍ଭୀର ମୁହଁରୁ ରକ୍ଷା ପାଇ ଯାଇଥିଲି ।

୧୯୬୨ ମସିହାରେ ମୁଁ କଟକ ସେକେଣ୍ଡାରି ଟ୍ରେନିଂ ସ୍କୁଲରେ ଶିକ୍ଷକ ଥାଏ । ସେହି ବର୍ଷ ଲୋକସଭା ନିର୍ବାଚନ ଓ ବିଧାନସଭା ନିର୍ବାଚନ ଏକ ସଙ୍ଗେ ହେଲା । ଉକ୍ତ ନିର୍ବାଚନରେ ମୁଁ ପ୍ରିଜାଇଡିଂ ଅଫିସର ରୂପେ ଜଗତସିଂହପୁର ଜିଲ୍ଲାର ଏକ ଭୋଟ ଗ୍ରହଣ କେନ୍ଦ୍ର ଗ୍ରାମକୁ ଯାଇଥିଲି । (ଜଗତସିଂହପୁର ଜିଲ୍ଲା ସେ ସମୟରେ ଅବିଭକ୍ତ କଟକ ଜିଲ୍ଲା ଅନ୍ତର୍ଗତ ଥିଲା) ସେହି ଗ୍ରାମର ଗ୍ରାମଦେବୀଙ୍କ ମନ୍ଦିର ନଦୀକୂଳରେ ଅବସ୍ଥିତ ଥିଲା । ସେଠାରେ ପହଞ୍ଚି ମୁଁ ନିତ୍ୟକର୍ମ କରିବା ଉଦ୍ଦେଶ୍ୟରେ ପ୍ରାୟ ଏକ କିଲୋମିଟର ବୁଲିଗଲା ଭଳି ଯାଇ ନଦୀବନ୍ଧ ପାଖରେ ପହଞ୍ଚିଲି ଏବଂ ନିତ୍ୟକର୍ମ ସାରି ନଈପାଣିରେ ଶୌଚ ହେବା ପାଇଁ ଗଲି । ଶୌଚ ହେବା ସମୟରେ ଲକ୍ଷ୍ୟ କଲି ନଈପାଣି ଫୁଲି ଉଠିଲା ପରି ଦେଖାଯାଉଛି । ସଂଗେ ସଂଗେ ମୋ ମନରେ କୁମ୍ଭୀର ଧାରଣାଟା ଆସିଗଲା ଏବଂ ମୁଁ ମୁହୂର୍ତ୍ତକ ମଧ୍ୟରେ ଧାଇଁଆସି ବନ୍ଧ ଉପରକୁ ଉଠି ଆସିଲି । ପଛକୁ ଚାହିଁ ଦେଖେ ତ ଗୋଟାଏ କୁମ୍ଭୀର ପାଣିରୁ ୭/୮ ହାତ ପର୍ଯ୍ୟନ୍ତ ମାଟି ଉପରକୁ ଚଢ଼ି ଆସିଛି ! ମୋର ଆଉ ଦଣ୍ଡେ ମୁହୂର୍ତ୍ତେ ବିଳମ୍ବ ହୋଇଥିଲେ କୁମ୍ଭୀରଟା ମୋତେ ଧରି ନେଇଥାଆନ୍ତା । ମୋତେ ନିଶାଣ କରି ନଈ ଭିତରୁ ଆସୁଥିଲା । ମୁଁ ସଂପୂର୍ଣ୍ଣ ବନ୍ଧ ଉପରକୁ ଉଠି ନ ଆସି ଯଦି ବନ୍ଧ ତଳେ ଠିଆ ହୋଇଥାଆନ୍ତି, ତେବେ ମଧ୍ୟ ସେ ମୋତେ ଧରି ନେଇ ଥାଆନ୍ତା ।

ମୋ ଦେହରୁ ଝାଳ ବହିଗଲା । କୁମ୍ଭୀରଟା ପାଣି ଭିତରକୁ ଚାଲିଗଲା । ଭାବିଲି, ପିଲାଦିନର ସେହି ଭୟଙ୍କର କୁମ୍ଭୀର ଶିକାର ଦୃଶ୍ୟ ସହସା ଯଦି ମୋ ମନରେ ଜାଗ୍ରତ ହୋଇ ନ ଥାଆନ୍ତା, ତେବେ ମୁଁ ନିଶ୍ଚିତ କୁମ୍ଭୀର ମୁଖରେ ପଡ଼ି ଥାଆନ୍ତି ।



# କହ, ମୁଁ ପାପ କରିଛି

ମୋ ପିଲାଦିନ କଥା । କୋରନ୍ଦ ଗ୍ରାମର ଜଣେ କୁଂଭାର ବୁଢ଼ା ଆମ ଗାଁକୁ ହାଣ୍ଡିମାଠିଆ ବିକିବାକୁ ଆସିଥିଲା । ବୋଉ ତା'ଠାରୁ ଗୋଟିଏ ମାଠିଆ କିଣିଲା । ପଡିଶା ଘରର ସ୍ତ୍ରୀଲୋକମାନେ ମଧ୍ୟ ତା'ଠାରୁ ହାଣ୍ଡିମାଠିଆ କିଣିଲେ । କଥାବାର୍ତ୍ତା ପ୍ରସଂଗରେ ବୋଉ ଜାଣିଲା ଯେ କୁମ୍ଭାର ବୁଢ଼ା ଗୋଟିଏ ସାତବିଅଣ (ସାତ ଥର ବାଛୁରି ଜନ୍ମ କରିଥିବା) ଗାଈ ବିକିବ । ଆଉ ୩/୪ ବିଅଣ ହୋଇପାରେ ବୋଲି ବୁଢ଼ା କହିଲା । ଆମର ସେତେବେଳେ ନିତାନ୍ତ ଦରିଦ୍ର ଶୋଚନୀୟ ଅବସ୍ଥା । ବଡ ଭାଇ (ମୋଠାରୁ ମାତ୍ର ଦୁଇ ବର୍ଷ ବଡ) କଲିକତାରେ କଳଘରେ ଖଟୁଥାଆନ୍ତି । ମୋତେ ୯/୧୦ ବର୍ଷ ହୋଇଥାଏ । ଦୁଇ ଓଳି ମୁଠେ ଖାଇବାକୁ ପାଇବା ଆମକୁ କଷ୍ଟକର ହେଉଥାଏ । ଘରେ ବୋଉ, ମୁଁ ଓ ମୋ ସାନ ଭଉଣୀ ପାର୍ବତୀ । ବାପା ୩୨ ବର୍ଷ ମାତ୍ର ବୟସରେ ପରପୁରକୁ ଚାଲିଯାଇଥିଲେ । ସେ ରାଜଯକ୍ଷ୍ମା ରୋଗରେ ବହୁ ଦିନ ପୀଡିତ ଥିଲେ । ବୋଉର ଗହଣା ଗାଂଠି ଯାହାଥିଲା, ବାପାଂକ ଚିକିତ୍ସାରେ ତଥା ଆମକୁ ଖାଇବାକୁ ଦେବାରେ ବିକ୍ରି କରି ସାରିଥିଲା । ବୋଉ ଆମକୁ ବଂଚାଇବାର ରାହା ଖୋଜୁଥିଲା । ତେଣୁ ସେ ଯେତେବେଳେ ଜାଣିଲା କୁମ୍ଭାରବୁଢ଼ା ଗାଈଟିଏ ବିକିବ, ତା ମୁଣ୍ଡକୁ ଗୋଟିଏ ଭାବନା ଜୁଟିଲା ଯେ ଗାଈଟିକୁ କିଣିଆଣି, ଘାସ ତୋରାଣି ଖାଇବାକୁ ଦେଇ ହୃଷ୍ଟପୁଷ୍ଟ କରିବ ଏବଂ ଗାଈ ଗର୍ଭିଣୀ ହୋଇ ବାଛୁରି ଜନ୍ମ କଲେ କ୍ଷୀର ବିକି ଦିପଇସା ପାଇବ । ଏହି ଧାରଣାରେ ସେ ଗାଈ କିଣିବାକୁ କୁମ୍ଭାର ବୁଢ଼ା ସହିତ କଥା ହେଲା । ବୁଢ଼ା ଗାଈର

ଦାମ୍ ହେଲା ଟଂକାଟିଏ । ସେ ହାଣ୍ଡି ମାଠିଆ ବିକି ସାରି ଫେରିଲାବେଳକୁ ବୋଉ ତାକୁ ଟଂକାଟିଏ ଦେଇ ଗାଈ ଆଣିବାକୁ ମୋତେ ତା ସାଂଗରେ ପଠାଇଲା ।

ମୁଁ ପିଲାଦିନୁ ଗାଈ ବାଛୁରି କାମ କରୁଥିଲି । ତେଣୁ ବୁଢା ସାଂଗରେ କୋରନ୍ଦ ଗଲି । ବୁଢା ଗାଈ ଆଣି ଆମ ଗାଁ ମୁଣ୍ଡ ପୁରୀ ଘର ବାଡି ପାଖରେ ଛାଡିଦେଇଗଲା । ଗାଈଟି ଥିଲା ରୋଗିଣା । ପୁରୀ ଘର ବାଡି ପାଖରୁ ଆମ ଘର ପର୍ଯ୍ୟନ୍ତ ଆଣିବାକୁ ମୋତେ ବିଶେଷ କଷ୍ଟ ହେଲା ନାହିଁ ।

ଗାଈର ଯତ୍ନ ନେବାରେ ବୋଉ ଓ ମୁଁ ଦୁହେଁ ଲାଗିପଡିଲୁଁ । ପ୍ରତିଦିନ ଘାସ କାଟିଆଣି ଖାଇବାକୁ ଦେଲୁ । ଘରେ କୁଣ୍ଡାତୋରାଣି ଯାହା ହେଲା, ଗାଈ ଖାଇଲା । କିଂତୁ ଯେତେ ଯତ୍ନ କଲେ ମଧ୍ୟ ଗାଈର ଅବସ୍ଥା ବଦଳିଲା ନାହିଁ । ତାକୁ କଅଣ ଗୋଟାଏ ଶୁଖାରୋଗ ଧରିଥିଲା ।

ଦିନେ ଉପରବେଳା ମୁଁ ଗାଈଟିକୁ ଆମ ଘର ପାଖ ଗୁଣିପୋଖରି ହୁଡା ଉପରେ ଚରାଇଲି । ଭଲ ଖରା ହୋଇଥାଏ । ଗାଈ ଅଳ୍ପ ଅଳ୍ପ ଚରିଲା । ସଂଜବେଳେକୁ ମୁଁ ଗାଈକୁ ଅଡାଇ ଆଣି ଆମ ଛୋଟିଆ ଗୁହାଳ ଘରଟିରେ ବେକରେ ପଘା ଲଗାଇ ବାଂଧିଦେଲି । ବୋଉ ସଂଜବେଳିଆ ତୋରାଣି ପାଣି ଦେଲା । କିଂତୁ ଗାଈ ତାହା ପିଇଲା ନାହିଁ । ବୋଉ ଓ ମୁଁ କିଛି ବିଚାରି ନ ପାରି ଶୋଇବାକୁ ଗଲୁଁ ।

ସକାଳୁ ଉଠି ବୋଉ ଗୁହାଳକୁ ଯାଇ ଗାଈ ମରିଯାଇଥିବାର ଦେଖି ହାଉଳି ଖାଇ କାନ୍ଦିଉଠିଲା । ଗାଈବେକରୁ ପଘା ଫିଟାଇଦେଲା । ବୋଉର କାନ୍ଦ ଦେଖି ମୁଁ କାନ୍ଦିଲି । ଆମ କାନ୍ଦ ବୋବାଳି ଶୁଣି ସାହିପଡିଶାମାନେ ଦଉଡି ଆସିଲେ । ସମସ୍ତେ ଆହା ଆହା କଲେ । କେତେକ ଲୋକ ରାତିରେ କିଏ ବାଂଧିଥିଲା ବୋଲି ପଚାରିଲେ । ମୁଁ ବାଂଧିଥିଲି ବୋଲି କହିବାରୁ ସମସ୍ତେ କହିଲେ ମୋତେ 'ଦୁଷାରୀ' ଦୋଷ ଲାଗିଛି । ତେଣୁ ମୋତେ 'ପ୍ରାଷ୍ଚିତ' କରିବାକୁ ପଡିବ ।

ସେହି ମୁହୂର୍ତ୍ତରୁ ମୁଁ ଅଶୌଚ ହୋଇଗଲି । କେହି ମୋତେ ଛୁଇଁଲେ ନାହିଁ । ଆମ ଘର ମଧ୍ୟ ଅଶୌଚ ହୋଇଗଲା । ବୋଉକୁ ମଧ୍ୟ କେହି ଛୁଇଁଲେ ନାହିଁ । ବୋଉ ଖାଲି କାନ୍ଦିଲା । କିପରି 'ପ୍ରାଷ୍ଚିତ' କରିବ । ହାତରେ ପଇସାଟିଏ ନଥିଲା । କୌଣସି ପ୍ରକାରେ ବାର ଦିନରେ 'ପ୍ରାଷ୍ଚିତ' (ପ୍ରାୟଶ୍ଚିତ୍ତ) କରିବାକୁ ଠିକ୍ କଲା । ମୁଁ ବେକରେ ପାଳ ଦଉଡି ପକାଇ ଦୁଆର ଦୁଆର ବୁଲିଲି । କିଛି କହିଲି ନାହିଁ । କେବଳ ଦୁଆରେ ଦୁଆରେ ନୀରବରେ ଠିଆ ହେଲି । ସେଥିରୁ ଲୋକେ ଜାଣୁଥିଲେ ମୁଁ ଦୁଷାରୀ । ତେଣୁ

ମୋତେ କିଛି ପଇସା ଦେଉଥିଲେ, କେହି ଫେରାଉନଥିଲେ । ଏହିପରି ଯାହା ମିଳୁଥିଲା, ମୁଁ ବୋଉକୁ ଆଣି ଦେଉଥିଲି ।

ସାତଦିନ ପରେ ମୁଁ ପ୍ରାୟଶ୍ଚିତ୍ତର ବ୍ୟବସ୍ଥାପତ୍ର ଆଣିବାପାଇଁ ଗିରିୟା ଗ୍ରାମକୁ ଗଲି । ଗିରିୟା ଗ୍ରାମର ଜଣେ ବ୍ରାହ୍ମଣ ପଣ୍ଡିତ କନିକା ରାଜାଂକର 'ଧର୍ମାଧିକାରୀ' ଥିଲେ । ମୁଁ ତାଂକୁ ଭେଟିଲି । ସେ ମୋତେ ରାଜ କନିକା କଚେରିରେ ଘରିଅଣା ଦେଇ ପାଉତି ଆଣିବାକୁ କହିଲେ । ମୁଁ ମୋ ଗାଁର ଜଣେ ଲୋକ ସାଂଗରେ ରାଜକନିକା ଯାଇ କଚେରିରୁ ପାଉତି ଆଣିଲି । ତାହା ନେଇ ପୁଣି ଗିରିୟା ଗ୍ରାମକୁ ଗଲି ଏବଂ ଧର୍ମାଧିକାରୀଂକୁ ଭେଟିଲି । ସେ ମୋତେ ତା' ପରଦିନ ତାଙ୍କ ଗ୍ରାମର ଠାକୁରଘର ପାଖକୁ ଆସିବାକୁ କହିଲେ । ମୁଁ ନିର୍ଦ୍ଦିଷ୍ଟ ସମୟରେ ଯାଇ ସେଠାରେ ଉପସ୍ଥିତ ହେଲି । ଧର୍ମାଧିକାରୀ ଓ ଆଉ ୩/୪ ଜଣ ବ୍ରାହ୍ମଣ ଠାକୁର ଘର ପିଣ୍ଡାରେ ବସିଥିଲେ । ମୁଁ ଯାଇ ସେମାନଂକୁ ସାଷ୍ଟାଙ୍ଗ ପ୍ରଣିପାତ କଲି । ସେମାନେ ଉଠ ବୋଲି କହିବାରୁ ଉଠିଲି । ଜଣେ ମୋତେ ଦାଣ୍ଡରୁ କିଛି ଗୋବର ଗୋଟେଇ ଆଣିବାକୁ କହିଲେ । ମୁଁ ଗୋଟାଇ ଆଣିଲି । ସେମାନଂକ ନିର୍ଦ୍ଦେଶରେ ଠାକୁରଘର ଆଗରେ ଗୋବରର ଗୋଟିଏ ମଳା କରି ତା ଭିତରେ ଠିଆ ହେଲି । ଧର୍ମାଧିକାରୀ ମୋତେ ଆଜ୍ଞା ଦେଲେ "କହ, କଅଣ କରିଛୁ ।"

ମୁଁ ହାତ ଯୋଡି କାଂଦ କାଂଦ ହୋଇ କହିଲି "ମୁଁ ଗୋଟିଏ ଗାଈ ବାଂଧିଥିଲି । ଗାଈ ବେକରେ ମୁଁ ପଘା ଲଗାଇ ବାଂଧିଥିଲି । ଗାଈ ରାତିରେ ମରିଗଲା ।"

ତା'ପରେ ସେ ଆଜ୍ଞା ଦେଲେ "କହ, ମୁଁ ପାପ କରିଛି ।" ମୁଁ ସେହିପରି ହାତ ଯୋଡି କହିଲି "ମୁଁ ପାପ କରିଛି ।" ସେ ପୁଣି ଆଜ୍ଞା ଦେଲେ "କହ ମୁଁ ପ୍ରାୟଶ୍ଚିତ୍ତ କରିବି ।" ମୁଁ କହିଲି "ପ୍ରାଶ୍ଚିତ୍ତ କରିବି ।" ସେ ଜୋର ଦେଇ ସ୍ପଷ୍ଟ ଉଚ୍ଚାରଣ କରି କହିଲେ "କହ, ମୁଁ ପ୍ରାୟଶ୍ଚିତ୍ତ କରିବି ।" 'ପ୍ରାୟଶ୍ଚିତ୍ତ' ଶବ୍ଦ ଉପରେ ସେ ଗୁରୁତ୍ୱ ଦେଇ ଉଚ୍ଚାରଣ କଲେ । ମୁଁ ଠିକ୍ ଭାବରେ ଉଚ୍ଚାରଣ କରି କହିଲି "ମୁଁ ପ୍ରାୟଶ୍ଚିତ୍ତ କରିବି ।"

ତା'ପରେ ଧର୍ମାଧିକାରୀ ମୋତେ ଖଣ୍ଡିଏ ବ୍ୟବସ୍ଥାପତ୍ର ଲେଖିଦେଲେ । ବ୍ୟବସ୍ଥାପତ୍ରରେ କିପରି ଭାବରେ କେଉଁ ଦିନ ପ୍ରାୟଶ୍ଚିତ୍ତ କରିବାକୁ ପଡିବ, ସେ ସଂବଂଧରେ ବିଧିବିଧାନ ଲେଖିଦେଲେ । ଧର୍ମାଧିକାରୀ ଓ ବ୍ରାହ୍ମଣମାନେ କିଛି ପାଉଣା ନିଅନ୍ତି ବୋଲି ବୋଉ ସେହି ଉଦ୍ଦେଶ୍ୟରେ ମୋତେ ଆଠ ଅଣା ପଇସା ଦେଇଥିଲା । କିଂତୁ ସେମାନେ ମୋତେ ଗରିବ ପିଲା ଦେଖି କିଛି ପାଉଣା ନେଲେ ନାହିଁ ।

ମୁଁ ଆସିଲାବେଳକୁ ପୁଣି ସେମାନଂକୁ ସାଷ୍ଟାଂଗ ପ୍ରଣିପାତ କରି ଆସିଲି । ଗୋବରମଳାକୁ ଗୋଟେଇ ନେଇ ଦାଣ୍ଡରେ ପକାଇଦେଲି । ପ୍ରାୟଶ୍ଚିତ ପାଇଁ ବୋଉ ଆୟୋଜନ କଲା । ପଡୋଶୀମାନେ ଧାନ ନେଇ ଖଇ ଭାଜି ଉଖୁଡା କରିଦେଲେ । ରାଢ଼ିଘର ଧାନ ନେଇ ଚୂଡା କରିଦେଲେ । କୌଣସି ଜିନିଷ ବୋଉ ଓ ମୁଁ ଛୁଇଁଲୁ ନାହିଁ । ମନ୍ତପଡାରୁ ମାଉସୀ ଓ ଖଣ୍ଡେଇତାରୁ ବଡ ମାମୁଁ ଆସି କାର୍ଯ୍ୟ ବୁଝିଲେ । ପ୍ରାୟଶ୍ଚିତ୍ତ ଦିନ ପୁରୋହିତ ଓ ଅନ୍ୟ କେତେଜଣ ବ୍ରାହ୍ମଣ ମଂତ୍ରପଢି ହୋମାଦି ନାନା ବିଧିବିଧାନ କଲେ । ମୁଁ ଲଣ୍ଡା ହେଲି । ଗୋବର ମିଶା ପଂଚଗବ୍ୟ ପିଇଲି । ଆୟତନ, ଶିକୋ, ବାଦରଙ୍ଗା, କାନପୁର, ଖଣ୍ଡେଇତା, ମେଘପୁର ଆଦି ଗାଁର ବ୍ରାହ୍ମଣମାନେ ନିମଂତ୍ରିତ ହୋଇ ଆସି ଜଳଖିଆ ଭୋଜନ କଲେ (ଚୂଡା, ଉଖୁଡା, ଗୁଡ, ଘୋଳ ଦହି, କଦଳୀ ପ୍ରଭୃତି) । ଭୋଜନ ପରେ ବ୍ରାହ୍ମଣମାନେ ସ୍ୱସ୍ତିମଂତ୍ର ଗାଇଲେ । ମୁଁ ଦାଣ୍ଡରେ ଲମ୍ବ ହୋଇ ଶୋଇଲି । ବ୍ରାହ୍ମଣମାନେ ମୋ ଉପରେ ସ୍ୱସ୍ତି ମଂତ୍ର ଅକ୍ଷତ ପକାଇ ଆଶୀର୍ବାଦ କଲେ । ମୁଁ ପାପମୁକ୍ତ ହେଲି । ଲୋକମାନେ ସେହି ମୁହୂର୍ତ୍ତରୁ ମୋତେ ଛୁଇଁଲେ । ଆମ ଘର ଅଶୌଚରୁ ମୁକ୍ତ ହେଲା ।

•••

## ବ୍ରାହ୍ମଣ ଛୁଆ, ବାଇଗଣ ପୁଆ

ଆମ ପିଲାଦିନେ ଗୋଟିଏ କଥା ଥିଲା - ବ୍ରହ୍ମଣ ଛୁଆ, ବାଇଗଣ ପୁଆ । ଏହାର ଅର୍ଥ -ବାଇଗଣ ପୁଆକୁ ଲଗାଇଲା ପରେ ଯେତେ ପ୍ରଚଣ୍ଡ ଖରା ହେଲେ ମଧ୍ୟ ସେ ମରେନାହିଁ, ସେହିପରି ବ୍ରହ୍ମଣ ଛୁଆକୁ ଯେତେ ଦୁଃଖକଷ୍ଟ ପଡ଼ିଲେ ମଧ୍ୟ ସେ ମରେନାହିଁ । ବଞ୍ଚିବାର ଅନ୍ୟ କୌଣସି ଉପାୟ ନ ପାଇଲେ ବ୍ରାହ୍ମଣଛୁଆ ଠାକୁର ପୂଜା କରି ବା ଭିକ୍ଷା କରି ବଞ୍ଚିଯାଇପାରେ । ତେଣୁ ପିଲାଦିନେ ମୋତେ ଠାକୁରପୂଜା କରି ବଞ୍ଚିବାକୁ ପଡ଼ିଥିଲା । ଏହି ଜୀବିକାରେ ଆମକୁ ବଞ୍ଚାଇରଖିବାର ଉଦ୍ଦେଶ୍ୟ ରଖି ବୋଉ ଆମ ଦୁଇଭାଇଙ୍କ କାଂଧରେ ବୈଦିକରୀତିରେ କୌଣସି ପ୍ରକାରେ ପଇତା ପକେଇଦେଇଥିଲା, ଅର୍ଥାତ୍ ଆମର ବ୍ରତୋପନୟନ କରିଦେଇଥିଲା ।

କାନ୍ଧରେ ପଇତା ପଡିବାରୁ ମୁଁ ଠାକୁର ପୂଜା କରିବାକୁ ଯୋଗ୍ୟ ହେଲି । ଦେବଦେବୀଙ୍କ ସ୍ନାନ ମନ୍ତ୍ର, ଫୁଲତୁଳସୀ ଚନ୍ଦନ ପ୍ରଭୃତି ଘେନାଇବା ମନ୍ତ୍ର, ଭୋଗ ଲଗାଇବା ମନ୍ତ୍ର ପ୍ରଭୃତି କେତୋଟି ମନ୍ତ୍ର ଘୋଷି କଣ୍ଠସ୍ଥ କରିଦେଲି । ମୋତେ ପ୍ରଥମେ ଠାକୁର ପୂଜାକାମ ମିଳିଲା ଗଙ୍ଗାଧର ପ୍ରସାଦ ଡିଆରେ । ଏହି ଗ୍ରାମର ସଂକ୍ଷିପ୍ତ ନାମ ଡ଼ିଆ । ଚାରିପାଖେ ନଈ, ମଝିରେ ଛୋଟ ଗ୍ରାମଟିଏ । ଡ଼ିଆରେ ଭାଗବତ ଘରଟିଏ ଥିଲା, ଏବେ ମଧ୍ୟ ଅଛି । ଠାକୁର ଥିଲେ ଭାଗବତ ପୋଥି । ଓଡ଼ିଆ ତାଳପତ୍ରରେ ଲିଖିତ ଭାଗବତ ପୋଥିଗୁଡ଼ିଏ ପାଟକନାରେ ଗୁଡ଼ା ହୋଇ ଆସ୍ଥାନ ଉପରେ ରଖା ହୋଇଥାଏ । ମୁଁ ତାହାକୁ ପ୍ରତିଦିନ ପୂଜା କରିବାକୁ ଯାଉଥିଲି । ଲୋକେ ଭାଗବତ ଶୁଣୁଥିଲେ ଭଜନକୀର୍ତ୍ତନ ମଧ୍ୟ କରୁଥିଲେ । ନଦୀକୁ ଲାଗି ଭାଗବତ ଘର । ଦକ୍ଷିଣା

ପବନ ନଦୀ ଉପର ଦେଇ ବହିଆସେ । ଶୀତଳ ଆରାମଦାୟକ ପବନ । ପ୍ରବଳ ଖରାଦିନେ ମଧ୍ୟ ଗରମ ଜଣାପଡେ ନାହିଁ । ମୁଁ ଘରୁ ସକାଳୁ ଯାଇ ସୂର୍ଯ୍ୟାସ୍ତ ପୂର୍ବରୁ ଘରକୁ ଫେରିଆସୁଥିଲି । ଦ୍ୱି ପହରେ ଠାକୁର ଘରକୁ ଲାଗିଥିବା ରୋଷଘରେ ଭାତ ତରକାରୀ ରାନ୍ଧି ଠାକୁରଙ୍କ ପାଖରେ ଭୋଗ ଲଗାଇ ଖାଉଥିଲି । ଆମ ଗାଁ ପାଖକୁ ଲାଗି ମହାଦେଇଆଡ଼ିଆ ଗାଁ । ସେହି ଗାଁ ମୁଣ୍ଡରେ ହରିଜନ ସାହି । ହରିଜନ ସାହିରୁ ଡ଼ିଆ ଗାଁକୁ ଖରସୁଆ ନଈରେ ଘାଟ ପଡ଼େ । ଡ଼ିଆ ଗାଁ ଲୋକଙ୍କ ପକ୍ଷରୁ ଘାଟ ଡ଼ଂଗାର ବ୍ୟବସ୍ଥା କରାଯାଇଥାଏ । ନଈର ଏପଟରେ ମହାଦେଇଆଡ଼ିଆ ହରିଜନ ସାହି ଏବଂ ନଈର ସେପଟରେ ଡ଼ିଆ ଗାଁ । ମଝିରେ ନଈ । ସୂର୍ଯ୍ୟୋଦୟରୁ ପ୍ରାୟ ରାତିଅଧ ପର୍ଯ୍ୟନ୍ତ ନଈରେ ଘାଟଡ଼ଂଗା ରହୁଥିଲା । ମୁଁ ପୂଜାକାମ ସାରି ଘାଟଡ଼ଂଗାରେ ସୂର୍ଯ୍ୟାସ୍ତ ପୂର୍ବରୁ ନଈ ପାର ହୋଇ ଘରକୁ ଫେରି ଆସୁଥିଲି ।

ଆତଙ୍ଗ ନାଶନ ବେହେରା ନାମରେ ଜଣେ ବୃଦ୍ଧ ବ୍ୟକ୍ତି ଡ଼ିଆ ଗାଁର ମୁଖିଆ ଥିଲେ ଏବଂ ସମସ୍ତଙ୍କର ମାନ୍ୟ ଥିଲେ । ଅନେକ ଭାଗବତ ପଦ ତାଙ୍କ ତୁଣ୍ଡରେ ଥିଲା । ଭାଗବତଙ୍କ ପୂଜା ବାବଦରେ ପୂଜକ ବ୍ରାହ୍ମଣକୁ ଗାଁ ଲୋକେ ମାସିକ କିଛି ଚାଉଳ ଦେଉଥିଲେ । ଠାକୁର ପ୍ରସାଦ ରୋଷେଇ ନିମନ୍ତେ ପ୍ରତିଦିନ ଚାଉଳ, ପନିପରିବା ଆଦି ଦେଉଥିଲେ । ଧାନକଟା ଋତୁରେ ଡ଼ିଆ ବିଲକୁ ମୁଁ ଧାନ ଅଟି ମାଗିବାକୁ ଏବଂ ବିରି ଉପୁଡ଼ା ବେଳକୁ ବିରି ଅଟି ମାଗିବାକୁ ଯାଉଥିଲି । ଧାନ 'ଅଟି'ର ଅର୍ଥ ଦୁଇମୁଠାର ବିଡ଼ାଏ ଫଳନ୍ତି ଧାନଗଛ । ବିରି ଅଟିର ଅର୍ଥ ହେଉଛି ପୁଳାଏ ଉପୁଡ଼ା ବିରିଲଟା । ସେଥିରୁ ଆମ ଘର ପାଇଁ କିଛି ଧାନ, ନଡ଼ା, ବିରି ଓ ବୁତି ହୋଇଯାଉଥିଲା । (ଫଳନ୍ତି ବିରିଗଛକୁ ଶୁଖାଇ, ବାଡ଼େଇ ବା ବେଙ୍ଗଳା ପକାଇ ବିରି ବାହାର କରିନେଲା ପରେ ଯେଉଁ ଚୂନାଚୂନା ପତ୍ର ଡ଼ାଙ୍ଗ ପ୍ରଭୃତି ଅଂଶ ରହେ ତାହାକୁ ବୁତି କୁହାଯାଏ । ତାହାକୁ ଗୋରୁଗାଈ ଭଲ ଖାଆନ୍ତି ।) ଋଷୀମାନେ ପୂଜକ ଓ ପୁରୋହିତଙ୍କୁ ଅଟି ଦେଉଥିଲେ । ଧୋବା ଓ ବାରିକଙ୍କୁ ମଧ୍ୟ ଦେଉଥିଲେ ।

ଦିନେ ସଂଜବେଳେ ଘାଟଡ଼ଂଗାରୁ ଓହ୍ଲାଉ ଓହ୍ଲାଉ ନଈରେ ପଡ଼ିଗଲି । ଅବଶ୍ୟ କୂଳ ପାଖ ଥିଲା । ତଥାପି ମୁଁ ୧୦-୧୧ ବର୍ଷର ପିଲାଥିବାରୁ ବେକ ପର୍ଯ୍ୟନ୍ତ ବୁଡ଼ିଗଲି । ଲୋକମାନେ ମୋତେ ଡ଼ଂଗାକୁ ଟେକି ପକାଇଲେ । ଓଦା ସରସର ହୋଇ ଘରକୁ ଆସିଲି । ବୋଉ ଆଉ ଡ଼ିଆକୁ ଠାକୁର ପୂଜା କରିବାକୁ ପଠାଇଲା ନାହିଁ । ଡ଼ିଆ ଗାଁର କେତେକ ଲୋକ ନିତାନ୍ତ ଅନୁରୋଧ କରିବାରୁ ଅନ୍ୟ ପୂଜକ ବ୍ୟବସ୍ଥା କରିବା ପର୍ଯ୍ୟନ୍ତ ମୁଁ ଆଉ କିଛି ଦିନ ଯାଇ ଠାକୁର ପୂଜା ତୁଲାଇ ଆସିଥିଲି ।

ଡ଼ିଆ ଠାକୁର ପୂଜା ଛାଡ଼ିବାପରେ ମୁଁ ମହାଦେଇଆଡ଼ିଆ ରାଜଗୁରୁ ଘର ଠାକୁର ପୂଜା କଲି । ଏକଦା ତାହା କନିକା ରାଜାଙ୍କର ଗୁରୁଙ୍କ ଘର ଥିଲା । ତେଣୁ ରାଜାଙ୍କଠାରୁ ବହୁତ ଭୂସଂପତ୍ତି ପାଇଥିଲେ । ଦୋଳ ମେଲଣକୁ ରାଜଗୁରୁ ଘରର ଠାକୁର ରାଧାକୃଷ୍ଣ ମୂର୍ତ୍ତି ବଡ଼ ଜାକଜମକରେ ଏକ ସୁନ୍ଦର ବିମାନରେ ବସି ଯାଉଥିଲେ । ଛତ୍ର, ଆଡ଼େଣି, ଚାମର, ପତାକା, ବହୁପ୍ରକାର ବାଦ୍ୟ (ଢୋଲ, ନାଗରା, ମହୁରୀ, ତେଲିଙ୍ଗିବାଜା ପ୍ରଭୃତି)ରେ ଦାଣ୍ଡ ଉଛୁଳି ପଡୁଥିଲା ।

ରାଜଗୁରୁ ଘର ଠାକୁର ପୂଜା ପ୍ରାୟ ବର୍ଷେ କଲାପରେ ମୁଁ ଝରମ ଗ୍ରାମ ମଠକୁ ଠାକୁର ପୂଜା କରିବାକୁ ଗଲି । ପ୍ରତିଦିନ ଘରୁ ଯିବା ଆସିବା ନ କରିପାରିବା ହେତୁ ମଠରେ ରହିଲି । ମୋତେ ସେତେବେଳେ ୧୨-୧୩ ବର୍ଷ ବୟସ । ମଠରେ ଜଣେ ବାବାଜୀ ଓ ଜଣେ ମାତା ଥିଲେ । ଦୁହିଁଙ୍କର ବୟସ ବେଶି ନଥିଲା । ମୁଁ ସେଠି ରହିଲି । ସେଠି ଠାକୁରଙ୍କର ଦୁଇଓଳି ପ୍ରସାଦ ରାନ୍ଧି ଭୋଗ କରୁଥିଲି ଏବଂ ଠାକୁର ପୂଜାର ଅନ୍ୟାନ୍ୟ ସବୁ କାମ କରୁଥିଲି । ଦ୍ୱି ପହରେ ଓ ରାତିରେ ରୋଷେଇ କରି ଭୋଗ ଲଗାଉଥିଲି ଏବଂ ତାହା ଖାଉଥିଲି । ଠାକୁର ଘର ସାମ୍ନାକୁ ଲାଗିଥିବା ଉଚ୍ଚ ପିଣ୍ଡା ଉପରେ ଶୋଉଥିଲି । ମଶାରି ନଥିଲା । ନଡ଼ିଆ ଚଞ୍ଚ ଉପରେ ଶୋଇଯାଉଥିଲି ।

ଆଗରୁ ମାତା ରୋଷେଇ କରୁଥିଲେ ଏବଂ ମାତା ଓ ବାବାଜୀ ଖାଉଥିଲେ । କିନ୍ତୁ ମୋ ଯିବାର ଅଳ୍ପଦିନ ପରେ ମାତା ଓ ବାବାଜୀ ଠାକୁରଙ୍କ ରୋଷେଇରେ ଖାଇବେ ବୋଲି କହିଲେ । ତେଣୁ ମୋତେ ଦୁଇଓଳି ତିନିଜଣଙ୍କର ରୋଷେଇ କରିବାକୁ ପଡ଼ିଲା । ଦିନେ କେହି ଜଣେ ଅତିଥି ଆସିଥାନ୍ତି । ମୁଁ ରୋଷେଇ କଲି । ଠାକୁରଙ୍କୁ ଭୋଗ ଲଗାଇ ବାବାଜୀ ଓ ସେହି ଲୋକଙ୍କୁ ପରଷିଦେଲି । ସେଦିନ ତରକାରୀଟା ଟିକିଏ ଧୂଆଁଟିଆ ହୋଇଯାଇଥାଏ । କାରଣ ଓଦାକାଠ ଜାଳିବାରେ ବହୁତ ଧୂଆଁ ବାହାରିଥାଏ । ବାବାଜୀ ଖାଇବାମାତ୍ରେ ବିରକ୍ତ ହୋଇଗଲେ । କହିଲେ 'ଅଘୋରି', ଏତେ ଦିନ ହେଲା ଆସିଲୁଣି, ତରକାରୀ ଟିକେ ରାନ୍ଧି ପାରିଲୁନି !" ଆହୁରି କ'ଣ ସବୁ କହିଗଲେ । ଅଘୋରି ଶବ୍ଦର ଅର୍ଥ (ବୋଧହୁଏ ଯାହାର ଘର ନାହିଁ) ମୁଁ ବୁଝିପାରିଲି ନାହିଁ । ତେଣୁ ଉତ୍ତର ନ ଦେଇ ନୀରବ ରହିଲି ।

କିଛି ଦିନ ପରେ ମୋର ଡ଼ାହାଣ ଗୋଡ଼ ଜଂଘମୂଳ ଦରଜ ହେଲା । ପାଦପର୍ଯ୍ୟନ୍ତ ଟାଙ୍କି ଧରିଲା । ଭୀଷଣ ଜ୍ୱର ହେଲା । ଆଣ୍ଠୁପାଖରୁ ପାଦ ଆଂଗୁଳି ପର୍ଯ୍ୟନ୍ତ ଫୁଲି ଲାଲ ଦିଶିଲା । ଚିପିଲେ ଗାତ ଭଳି ହେଲା । ବହୁତ କଷ୍ଟ ପାଇଲି । ଘରକୁ ବହୁ କଷ୍ଟରେ ପେଙ୍ଗେଇ ପେଙ୍ଗେଇ ଚାଲିଚାଲି ଆସିଲି । ବୋଉ ଦେଖି କାନ୍ଦିଲା । ମୋର ଡ଼ାହାଣ

ଗୋଡ଼ର ଆଣ୍ଠୁ ପାଖରୁ ପାଦ ପର୍ଯ୍ୟନ୍ତ ପାଚି ପୂଜ ହୋଇଗଲା । ପାଦଗଣ୍ଠି ପାଖରେ ଫାଟିଯାଇ ବହୁତ ପୂଜ ବାହାରିଲା । ଅନେକ ଦିନ ପଡ଼ିରହି କଷ୍ଟ ପାଇଲି । ବୋଉ ଏଣୁତେଣୁ ପତ୍ର ଚେରମୂଳ ବଟାବଟି ଛେଚାଛେଚି କରି ମୋ ଗୋଡରେ ବାଂଧିଲା । ବହୁତ ଦିନ ପରେ ଘା' ଶୁଖିଲା । କିନ୍ତୁ ମାସେ ଦି' ମାସ ଅନ୍ତରରେ ଭୀଷଣ କଷ୍ଟ ଦାୟକ ଜ୍ୱର ହେଲା । ଏତେ କଷ୍ଟ ହେଉଥିଲା ଯେ ମୁଁ ମଲାଗଲା ଭଳି ପଡ଼ିଯାଉଥିଲି । ଲୋକେ କହିଲେ ବାତଜ୍ୱର । ମହାଦେଈଆଡ଼ିଆ କୃଷ୍ଣ କବିରାଜ କହିଲେ ଶ୍ଳିପଦ । କୃଷ୍ଣ କବିରାଜ ଜଣେ ଗାଉଁଲି ବୈଦ୍ୟ ଥିଲେ । ଉତ୍ତମ ସ୍ୱଭାବର ଲୋକ ଥିଲେ । ସେ କିଛିଦିନ ମୋତେ ଚିକିତ୍ସା କଲେ । ଆମ ଗ୍ରାମର ଡ଼ାକ୍ତର ଶ୍ରୀରାମଚନ୍ଦ୍ର ସୂତାର ଏଲ୍.ଏମ୍.ପି. ପାସ୍ କରି ଝନ୍ଦବାଲିରେ ରହି ଚିକିତ୍ସା କରୁଥାନ୍ତି । ସେ କହିଲେ ଫାଇଲେରିଆ । ସେ ଦଶଟି ଇଂଜେକସନ ଦେଲେ । ପଇସାଟିଏ ନେଲେ ନାହିଁ । ରାମବାବୁ ଅତ୍ୟନ୍ତ ସରଳ ଓ ହୃଦୟବାନ୍ ଲୋକ ଥିଲେ । ତାଙ୍କ ଭଳି ଦୟାଳୁ ହୃଦୟବାନ୍ ଲୋକ ଦୁନିଆରେ ଖୁବ୍ ବିରଳ ।

ତା'ପରେ ବହୁ ବର୍ଷ ପର୍ଯ୍ୟନ୍ତ ଥରକୁ ଥର ମୋତେ ଭୀଷଣ ବାତ ଜ୍ୱର ହେଉଥିଲା । ରେଢେନ୍ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିବା ବେଳେ ମଧ୍ୟ ମୁଁ ବାତଜ୍ୱରରେ ଆକ୍ରାନ୍ତ ହେଉଥିଲି । ମୁଁ ସେହି ସ୍କୁଲର ଛାତ୍ରାବାସରେ ସହକାରୀ ପରିଚାଳକ ଥିଲି । ସଦାନନ୍ଦ ନାମରେ ଗୋଟିଏ ପିଲା ଛାତ୍ରାବାସରେ ରହିଲା । ତା'ର ବାପା ଡ଼ାକ୍ତର ରାମଚନ୍ଦ୍ର ବାରିକ (ଗଡ଼ମଧୁପୁର) ହୋମିଓପାଥିରେ ଜଣେ ପ୍ରବୀଣ ଡ଼ାକ୍ତର ଥିଲେ । ତାଙ୍କଠାରୁ ନିୟମିତ ଭାବେ ଔଷଧ ସେବନ କଲି । ବାତଜ୍ୱରର ବ୍ୟବଧାନ ଟିକିଏ କମିଲା ଅର୍ଥାତ୍ ୫-୬ ମାସରେ ଥରେ ହେଲା । ମୋର ଗୋଡ଼ ଏତେ ବିନ୍ଧୁଥିଲା ଯେ ଛାତ୍ରାବାସର କେତେକ ପିଲା ସେମାନଙ୍କ ସମସ୍ତ ଶକ୍ତି ଲଗାଇ ମାଡୁଥିଲେ । ଗୋଡ଼ ଉପରେ ଠିଆ ମଧ୍ୟ ହେଉଥିଲେ । ନୃସିଂହ, ଜ୍ୟୋତି,ସଦାନନ୍ଦ, ଭୋଳାନାଥ, ନାରାୟଣ, ବିମଳାନନ୍ଦନ, ବେଣୁଧର ଆଦି ପିଲାଙ୍କର ସେବାଯତ୍ନ ଓ ଉପକାର ମୁଁ ଭୁଲିପାରିବିନାହିଁ । ଈଶ୍ୱରଙ୍କ ଦୟାରୁ ସମସ୍ତେ ପ୍ରତିଷ୍ଠିତ ହୋଇଛନ୍ତି ।

●●●

## ନେତାଙ୍କର ଗୁଣ ଗାଇ, ବୁଦ୍ଧି ଶିଖିଲି ରେ ଭାଇ

ମୁଁ ୧୯୮୩ରେ ସରକାରୀ ଅଧ୍ୟାପକ ଚାକିରିରୁ ସ୍ୱଇଚ୍ଛାରେ ଅବସର ନେଲାପରେ ଦିନେ ସେ ସମୟର ବି.ଜେ.ପି ଯୁବନେତା ଦେବେନ୍ଦ୍ରକୁମାର ଦାସ ମୋର ଦେଖା ହେଲେ । ବି.ଜେ.ପି. ୧୯୮୦ରୁ ଜନ୍ମଲାଭ କରି ଓଡିଶାରେ ନିତାନ୍ତ ପ୍ରାରମ୍ଭିକ ଅବସ୍ଥାରେ ଥାଏ । ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ଦେବେଂଦ୍ର ସେହି କଲେଜରେ ବିଜ୍ଞାନ ଛାତ୍ର ଥିଲେ । ଏମ୍. ଏସ୍‌ସି. ପାସ୍ କରି ସେ ଚାକିରି ନ କରି ବି.ଜେ.ପି.ରେ ଯୋଗ ଦେଇଥିଲେ ଏବଂ ଓଡିଶା ରାଜ୍ୟ ବି.ଜେ.ପି.ର ସାଧାରଣ ସଂପାଦକ (General Secretary) ଥିଲେ । କଥା ପ୍ରସଂଗରେ ଦେବେନ୍ଦ୍ର ମୋତେ ବି.ଜେ.ପି.ରେ ଯୋଗ ଦେବାକୁ କହିବାରୁ ମୁଁ ଚିନ୍ତା କରିବି ବୋଲି କହିଲି ।

ମୁଁ ଚିନ୍ତା କଲି - ମୁଁ ତ ସରକାରୀ ଚାକିରି ଛାଡିଛି, ସ୍ୱାଧୀନ ହୋଇଛି, ରାଜନୀତିକୁ ନଯିବି କାହିଁକି ? ସ୍ୱାଧୀନତାର ଅର୍ଥ ମୁଁ ବୁଝିଥିଲି ସ୍ୱାଧୀନ ଭାବରେ କହିବା ବୋଲିବା, ଦେଶ ବିଷୟରେ ଚିନ୍ତା କରିବା ଏବଂ ଲୋକଂକ ମଂଗଳ ପାଇଁ କାମ କରିବା । ଯୁବକ ସମୟରେ ମୁଁ ଯେତେବେଳେ ଗାଁରେ ଥିଲି, ସେତେବେଳେ ଆମ ଗାଁର ଡାକ୍ତର ଶ୍ରୀରାମଚନ୍ଦ୍ର ସୂତାର ପ୍ରଜାସୋସାଲିଷ୍ଟ ପାର୍ଟି ପକ୍ଷରୁ ଆଳି ନିର୍ବାଚନମଣ୍ଡଳୀରୁ ବିଧାନସଭାପ୍ରାର୍ଥୀ ଭାବେ ନିର୍ବାଚନ ଲଢିଥିଲେ । ସେତେବେଳେ ମୁଁ ଓ ଅନ୍ୟ କେତେକ ଯୁବକ ଚୁଂଗା ଧରି ରାମବାବୁଂକ ପାଇଁ ପ୍ରଚାର କରିଥିଲୁଁ । ତାହା ମୋ ମନରେ ରାଜନୈତିକ ଚେତନାର ବୀଜସ୍ୱରୂପ ଥିଲା । ଅଂକୁରିତ ହେବାର ଉପାଦାନ ପାଇଲେ

ବୀଜ ଅଂକୁରିତ ହୁଏ । ମୋ ମନରେ ନିହିତ ଥିବା ସେହି ରାଜନୈତିକ ଚେତନାର ବୀଜଟି ଦେବେନ୍ଦ୍ରଙ୍କ ଆଳାପ ରୂପକ ଉପାଦାନରେ ଅଂକୁରିତ ହେଲା ।

ବଡ ଭାଇଂକ ସହିତ କଥା ହେଲି ରାଜନୀତିରେ ଯୋଗ ଦେବା ଆମ ପକ୍ଷରେ ଉଚିତ ହେବ କି ନାହିଁ । ବଡଭାଇ ସେତେବେଳକୁ କ୍ୟାନ୍‌ସରରେ ଆକ୍ରାନ୍ତ ହୋଇଥିବା ଜଣାପଡିନଥାଏ । ଦୁଇ ଭାଇଂକର ୧୧ଟି ପିଲା । ୫ ପୁଅ ଏବଂ ୬ ଝିଅ । ଦୁଇଟି ମାତ୍ର ଝିଅ ବି.ଏ.ସି.ଟି. ପାସ୍ କରି ବିଭା ହୋଇସାରିଥାଆନ୍ତି । ଆଉ ୯ଟି ସ୍କୁଲ କଲେଜରେ ପଢୁଥାଆନ୍ତି । ଆମେ ଦୁଇ ଭାଇ ବସି ଆଲୋଚନା କଲୁଁ । ବଡ ଭାଇ ପ୍ରାଥମିକ ସ୍କୁଲ ପଂଚମ ଶ୍ରେଣୀ ପର୍ଯ୍ୟନ୍ତ ପଢିଥିଲେ, କିଂତୁ ଉଚ୍ଚମନା ଓ ଉଦାର ଥିଲେ । ସେ ମୋ ଚିନ୍ତାଧାରାରେ ଲେଶମାତ୍ର ବ୍ୟାଘାତ ଆଣୁନଥିଲେ, ବରଂ ମୋତେ ଉତ୍ସାହିତ କରୁଥିଲେ । ରାଜନୀତି ଦ୍ୱାରା ଗରିବ ଲୋକଂକ ମଂଗଳ ସାଧନ କରି ହେବ, ଏହା ବିଚାର କରି ଦୁଇ ଭାଇ ଆନନ୍ଦ ଅନୁଭବ କଲୁଁ ।

ଧୀରେ ଧୀରେ ମୋ ମନରେ ରାଜନୈତିକ ଚେତନାର ଅଙ୍କୁର ବିକଶିତ ହେଲା । ବି.ଜେ.ପି.ର ନୀତି କଅଣ, ସେ ବିଷୟରେ ବୁଝିବାକୁ ଯତ୍ନବାନ୍ ହେଲି । ସେତେବେଳେ ବି.ଜେ.ପି.ର ନୀତିଗୁଡିକ ମୋତେ ଭଲ ବୋଧ ହୋଇଥିଲା । ଉଦାହରଣ ସ୍ୱରୂପ -

(୧) ଗାଂଧିବାଦୀ ସମାଜବାଦ ପ୍ରତିଷ୍ଠା କରାଯିବ । ଅର୍ଥାତ୍ ଦେଶରେ ବଡବଡ ଶିଳ୍ପ କାରଖାନା ପରିବର୍ତ୍ତେ କ୍ଷୁଦ୍ରଶିଳ୍ପ ଓ ଗ୍ରାମ୍ୟ ଶିଳ୍ପକୁ ପ୍ରାଧାନ୍ୟ ଦିଆଯିବ ।

(୨) ସ୍ୱଦେଶୀ ଚିନ୍ତାଧାରା ଗ୍ରହଣ କରାଯିବ । ଅର୍ଥାତ୍ ନିଜ ଦେଶରେ ଦ୍ରବ୍ୟ ଉତ୍ପାଦନ କରାଯିବ, ନିଜ ଦେଶରେ ବ୍ୟବହାର କରାଯିବ । ଏହାକୁ ସ୍ୱଦେଶୀ ଜାଗରଣ କୁହାଯାଉଥିଲା । ବିଦେଶୀମାନଂକୁ ଏ ଦେଶରେ ପୁଂଜି ଲଗାଇବାକୁ ଅନୁମତି ଦିଆଯିବ ନାହିଁ । ଏହି ସ୍ୱଦେଶୀ ବା ସ୍ୱାବଲଂବନ ନୀତି ବିଷୟରେ ମୁଁ ନିଜେ ଓଡିଶାର ଦୁଇଟି ସ୍ଥାନରେ ଆଡଭାଣିଙ୍କ ମୁହଁରୁ ଶୁଣି ଖୁବ୍ ପ୍ରଭାବିତ ହୋଇଥିଲି । ପ୍ରଥମେ ଖୋର୍ଦ୍ଧା ସଭାରେ ଏବଂ ତା'ପରେ ଭୁବନେଶ୍ୱର ସୂଚନାଭବନ ସଭାରେ । ଆଡଭାଣି ହିନ୍ଦୀ ଭାଷାରେ ଏହି ମର୍ମରେ କହୁଥିଲେ - "ବିଦେଶୀ କଂପାନି ଆମ ଦେଶରେ ଆଳୁଚିପ୍‌ସି ବିକିବେ, ଆମେ ତାଂକ ଆଳୁଚିପ୍‌ସି ଖାଇବା ? ବିଦେଶୀ କଂପାନି ଆମକୁ ପାଣି ବିକିବେ, ଆମେ ତାଂକ ପାଣି ପିଇବା ? ସକାଳୁ ଶେଯରୁ ଉଠି ରାତିରେ ଶେଯକୁ ଯିବା ପର୍ଯ୍ୟନ୍ତ ଆମେ କେବଳ ବିଦେଶୀ ଦ୍ରବ୍ୟ ବ୍ୟବହାର କରୁଥିବା ?" ଏହିଭଳି କଥା ମୋ ଚିନ୍ତାଧାରାକୁ ଖୁବ୍ ସ୍ପର୍ଶ କରିଥିଲା ।

(୩) ଗୋବଧକୁ ନିଷିଦ୍ଧ କରାଯିବ । କରଣ ହିନ୍ଦୁ ସଂସ୍କୃତିରେ ଗୋବଧକୁ ପାପ ମନେ କରାଯାଏ ।

(୪) ସଂବିଧାନରେ ଥିବା ଜାମ୍ମୁକାଶ୍ମୀର ସଂକ୍ରାନ୍ତ ୩୭୦ ଧାରାକୁ ଉଚ୍ଛେଦ କରାଯିବ । ଉକ୍ତ ରାଜ୍ୟକୁ ଭାରତର ଅନ୍ୟାନ୍ୟ ରାଜ୍ୟ ସହିତ ସମାନ ସ୍ତରକୁ ଅଣାଯିବ ।

(୫) ଭାରତର ଜନସଂଖ୍ୟା ନିୟଂତ୍ରଣ ପାଇଁ ସବୁ ଧର୍ମ ଓ ସବୁ ସଂସ୍କୃତିର ଲୋକଂକ ପ୍ରତି ସମାନ ଭାବରେ ନିୟମ ପ୍ରଯୁଜ୍ୟ ହେବ ।

(୬) ଭାରତରେ ଚଳି ଆସୁଥିବା କୃଷି ଭିତ୍ତିକ ସଭ୍ୟତାକୁ ଦୃଢ କରାଯିବ ।

(୭) ଭାରତର ପ୍ରାଚୀନ ବିଦ୍ୟା ଆୟୁର୍ବେଦ, ଜ୍ୟୋତିର୍ବିଜ୍ଞାନ, ସଂସ୍କୃତ ଭାଷା ପ୍ରଭୃତିର ବିକାଶ କରାଯିବ ଇତ୍ୟାଦି ।

ଏହିପରି ନୀତିମାନ ମୋତେ ଭଲ ବୋଧ ହେଲା । ସେତେବେଳେ ବି.ଜେ.ପି. କୁ କୁହାଯାଉଥିଲା "A Party with difference" ଅର୍ଥାତ୍ ଅନ୍ୟାନ୍ୟ ପାର୍ଟିଠାରୁ ଭିନ୍ନ ନୀତିର ଏକ ପାର୍ଟି । ଏହାର "ନେତା ଭଲ, ନୀତି ଭଲ" ଏମିତି କେତେ ସ୍ଲୋଗାନ ମଧ ଦିଆଯାଉଥିଲା । ତେଣୁ ମୁଁ ଏହାର ସଦସ୍ୟତା ଗ୍ରହଣ କଲି ଏବଂ କାର୍ଯ୍ୟକ୍ରମ ଓ ସଭାସମିତିରେ ଯୋଗ ଦେଲି । ଆଗରୁ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ମୋତେ କଂଗ୍ରେସରେ ଯୋଗ ଦେବାକୁ (ଆମ ସାହିକୁ ଡାକଘର ଉଦ୍‌ଘାଟନ କରିବାକୁ ଆସିଥିବା ସମୟରେ) କହିଥିଲେ । ବି.ଜେ.ପି. କଥାସବୁ ଶୁଣି ମୁଁ ମୁଗ୍ଧ ହୋଇଗଲି ଏବଂ ଶ୍ରୀମତୀ ପଟ୍ଟନାୟକଂକ ପରାମର୍ଶ ପ୍ରତି ଗୁରୁତ୍ୱ ନ ଦେଇ ବି.ଜେ.ପି.ରେ ଯୋଗ ଦେଲି । ଏହା ମୋ ଜୀବନରେ ଥିଲା ମାରାତ୍ମକ ବିଭ୍ରାନ୍ତି ଓ ଭୁଲ୍ । ପ୍ରାୟ ଏକ ବର୍ଷ ପରେ କେନ୍ଦ୍ରାପଡାର ଏକ ଧର୍ମଶାଳାରେ କଟକ ଜିଲ୍ଲା ବି.ଜେ.ପି. କମିଟି ଅନୁଷ୍ଠିତ ହେଲା । ସେତେବେଳେ ଅବିଭକ୍ତ କଟକ ଜିଲ୍ଲା ଥିଲା । ଜିଲ୍ଲାର ବି.ଜେ.ପି ଭୋଟର ସଭ୍ୟମାନେ ମୋତେ ଅଧିକ ସଂଖ୍ୟାରେ ଭୋଟ ଦେଇ ସଭାପତି ନିର୍ବାଚିତ କଲେ ।

ମୋ ସଭାପତିତ୍ୱରେ କଟକ ଜିଲ୍ଲା କମିଟି ଗଢା ହୋଇଥିଲା । ସାଧାରଣ ସଂପାଦକ ହୋଇଥିଲେ ଶ୍ରୀ ବିଧୁଭୂଷଣ ପ୍ରହରାଜ ଏବଂ ସଂପାଦକ ହୋଇଥିଲେ ଶ୍ରୀ ସମୀର ଦେ, ଶ୍ରୀ ନୟନ କିଶୋର ମହାନ୍ତି ଓ ଶ୍ରୀ ପ୍ରଦୀପକୁମାର ପଟ୍ଟନାୟକ । କମିଟିର କାର୍ଯ୍ୟାରମ୍ଭ ହେଲା । ମୁଁ ନିଜ ହାତରୁ ଖର୍ଚ୍ଚ କରି ବିଭିନ୍ନ ସ୍ଥାନକୁ ସଂଗଠନ ନିମନ୍ତେ ଗଲି । ପଟାମୁଣ୍ଡାଇ, ଆଳି, ରାଜକନିକା, ବଡମ୍ବା, ନରସିଂହପୁର, ଗୁରୁଡିଝାଟିଆ, ମାର୍ଶାଘାଇ, ଆଦି ସ୍ଥାନକୁ ଯାଇ ସଂଗଠନ କରାଇଲି । କଟକ ସହରରେ ମୁଁ ପ୍ରଥମ କରି

ବି.ଜେ.ପି.ର ସହର କମିଟି ଗଠନ କରାଇଲି । ଶ୍ରୀ ବିଜୟ କୁମାର ମହାପାତ୍ର ସଭାପତି ନିର୍ବାଚିତ ହୋଇଥିଲେ । ମୋ ନେତୃତ୍ୱରେ କଟକ ସହରରେ ପ୍ରଥମ କରି ବି.ଜେ.ପି.ର ଏକ ବଡ ଧରଣର ର୍‍ୟାଲି ବାହାର କରାଯାଇଥିଲା । କଲେଜ ଛକଠାରୁ ବି.ଜେ.ପି. କର୍ମୀମାନେ ଧାଡି ବାଂଧି, ସ୍ଲୋଗାନ୍ ଦେଇ ଜିଲାପାଳଂକ କାର୍ଯ୍ୟାଳୟ ନିକଟକୁ ଯାଇଥିଲେ । ବେଶୀ ସଂଖ୍ୟକ କର୍ମୀ ଆଣିଥିଲେ ଶ୍ରୀ ବିଧୁଭୂଷଣ ପ୍ରହରାଜ ଟାଙ୍ଗୀ ଚୌଦ୍ୱାର ଅଂଚଳରୁ । ବିଧୁଭୂଷଣ ବି.ଜେ.ପି.ର ସଚ୍ଚା କର୍ମୀ ତଥା ନେତା ଥିଲେ । ମୁଁ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ସମ୍ମୁଖରେ ଏକ ଭାଷଣ ଦେଇଥିଲି । ତାହା ଏପର୍ଯ୍ୟନ୍ତ ମୋର ଅଭୁଲା ହୋଇ ରହିଛି । ଏକ ସୁନ୍ଦର କୃଷି-କୁଟୀରଶିଳ୍ପ ଭିତ୍ତିକ ସ୍ୱାବଲମ୍ବୀ ଭାରତ ଗଠନ କରିବା ଥିଲା ମୋ ଭାଷଣର ସାରମର୍ମ । ମୋର ସେହି ଭାଷଣ ଏବଂ ବର୍ତ୍ତମାନ ବି.ଜେ.ପି.ର ସ୍ୱରୂପ କଥା ଭାବିଲେ ମୋତେ ସେତେବେଳେ ଶୂନ୍ୟରେ ଭାସୁଥିଲା ଭଳି ମନେ ହୁଏ ।

ମୋର କଲ୍ୟାଣୀନଗରସ୍ଥିତ ଘରେ ଜିଲା କମିଟି ବୈଠକ ଅନୁଷ୍ଠିତ ହେଉଥିଲା । ମୋ ସ୍ତ୍ରୀ ପରିବାରର ବୋଝ ବହନ କରିବା ସଂଗେ ସଂଗେ ଏ ଦିଗରେ ମଧ ଗୁଡିଏ ବୋଝ ବହନ କରୁଥିଲେ । ବି.ଜେ.ପି.ର ସଂଗଠନ କାର୍ଯ୍ୟରେ ଶ୍ରମ ଓ କଷ୍ଟ ସ୍ୱୀକାର କରିବା ଏବଂ ହାତରୁ ଖର୍ଚ୍ଚ କରିବା ମୋତେ ଆନନ୍ଦପ୍ରଦ ବୋଧହେଉଥିଲା । କେହି ବି.ଜେ.ପି. ଲୋକ ଦେଖା ହୋଇଗଲେ ପରମ ବଂଧୁ ଦେଖା ହେଲା ଭଳି ମନେ ହେଉଥିଲା । ଆମେ ବୈଠକରେ ସମସ୍ତେ ଏକାଠି, ଦରି ପକାଇ ବସୁଥିଲୁଁ । ଶିକ୍ଷକଜୀବନର କୋମଳତା ଥିଲା ମୋର ସ୍ୱଭାବ । ତେଣୁ ଦୁଃଖୀଗରିବଂକ ଦୁଃଖମୋଚନ କରିହେବ, ଏପରି ଏକ ସୁନ୍ଦର ଭାରତର ସ୍ୱପ୍ନରେ ବିଭୋର ହୋଇଯାଉଥିଲି ।

୧୯୯୪ରେ ବିଧାନସଭା ନିର୍ବାଚନରେ ମୁଁ ଆଳି ନିର୍ବାଚନ ମଂଡଳିରୁ ଠିଆ ହୋଇଥିଲି । ନିର୍ବଚନରେ ବି.ଜେ.ପି. ଦଳରୁ ଲଢିବାକୁ ମୋର ଇଚ୍ଛା ନଥିଲା । କାରଣ, ସେତେବେଳକୁ ଗୋଟାଏ ଛଳ ହିନ୍ଦୁତ୍ୱବାଦ ଧନିକ ବର୍ଗଂକ ସ୍ୱାର୍ଥରକ୍ଷା କରିବା ନିମନ୍ତେ ଏବଂ ଗାଂଧିବାଦୀ ସମାଜବାଦକୁ ପ୍ରତିହତ କରିବା ନିମନ୍ତେ ବି.ଜେ.ପି. କୁ ଆୟତ୍ତ କରିନେଇଥିଲା ଏବଂ ବି.ଜେ.ପି. ଭିତରେ ମାରାତ୍ମକ ସାଂପ୍ରଦାୟିକ ବିଷମଂଜି ବୁଣି ହୋଇଯାଇଥିଲା । ତଥାପି ମୁଁ ଭୁଲ୍ କରିବସିଲି । ବି.ଜେ.ପି. ପାଇଁ ଗୁଡାଏ ପରିଶ୍ରମ ଓ କଷ୍ଟ କରିଥିବାରୁ ମୋହ ଛାଡିପାରିଲି ନାହିଁ । କେତେକ ଲୋକଂକ ଅନୁରୋଧରେ ପ୍ରାର୍ଥୀପତ୍ର ଦାଖଲର ଶେଷଦିନ କେନ୍ଦ୍ରାପଡା ଉପଜିଲାପାଳଂକ ଅଫିସ୍‌ରେ ପ୍ରାର୍ଥୀପତ୍ର

ଦାଖଲ କଲି । ମନ ମଧ୍ୟରେ ଆଉ ଏକ ଦୁର୍ବଳତା ରହିଲା - ଏଥର ତ ହାରିବା ନିଶ୍ଚିତ । ଯଦି ଆଗାମୀ ନିର୍ବାଚନ ବେଳକୁ ବି.ଜେ.ପି.ର ଉତ୍‌ଥାନ ସମୟ ଆସେ, ତେବେ ମୁଁ ଟିକେଟ୍ ପାଇବି ।

ଏହି ଧାରଣାର ବଶବର୍ତ୍ତୀ ହୋଇ ମୁଁ ନିର୍ବାଚନ ଲଢିଲି । ନିର୍ବାଚନମଂଡଳି ସାରା "ଅମୁକ ଜିନ୍ଦାବାଦ୍, ଢମୁକ ଜିନ୍ଦାବାଦ୍, ନେତା ଭଲ ନୀତି ଭଲ" ଆଦି ସ୍ଲୋଗାନ୍ ପ୍ରଚାର କରାଇଲି । ମୋର ନିଜର ଥିଲା ୨୦ ହଜାର ଟଂକା, ପାର୍ଟି ଦେଲା ମାତ୍ର ୫ ହଜାର, ୩୫ ହଜାର ଟଂକା ମୁଁ ଋଣ କଲି, ଏପରି ୬୦ ହଜାର ଟଂକା ଜିନ୍ଦାବାଦ୍‌ରେ ଶ୍ରାଦ୍ଧ କଲି । ପରେ ୩୫ ହଜାର ଟଂକା ମୁଁ ବହୁ କଷ୍ଟରେ ସୁଧ ସହ ପରିଶୋଧ କରିଥିଲି ।

ଏତେ ସଂଗଠନ, ଶ୍ରମ, ସମୟ ଓ ଅର୍ଥବ୍ୟୟ, ସବୁ ପରବର୍ତ୍ତୀ ନିର୍ବାଚନ ବେଳକୁ ନିଷ୍ଫଳ ହୋଇଗଲା । କାରଣ, ପରବର୍ତ୍ତୀ ନିର୍ବାଚନ ବେଳକୁ ବି.ଜେ.ଡି. ଓ ବି.ଜେ.ପି ମେଣ୍ଟ ହୋଇଗଲା । ଯେଉଁ 'ଜନତା' ଦଳର ନେତାଏ ବି.ଜେ.ପି.କୁ ସାଂପ୍ରଦାୟିକ ବୋଲି କହି ତୀବ୍ର ସମାଲୋଚନା କରୁଥିଲେ, ସେମାନେ 'ବି.ଜେ.ଡି.' ନାମରେ ନାମିତ ହୋଇ ବି.ଜେ.ପି.ର ସହଚର ହୋଇଗଲେ । ଭାରତରେ ମଧ୍ୟ ଯେଉଁସବୁ ଦଳଂକୁ ବି.ଜେ.ପି. ବିରୋଧ କରୁଥିଲା, ସେମାନଂକ ସହିତ ମିଶି ମେଣ୍ଟ ଗଢିଲା । ମେଣ୍ଟରେ ସବୁ ଦଳ ନିଜ ନିଜର ନୀତି ବଜାୟ ରଖିଲେ, କିଂତୁ ବି.ଜେ.ପି. ନିଜର ସମସ୍ତ ନୀତିକୁ କ୍ଷମତା ପାଇଁ ଜଳାଂଜଳି ଦେଲା । ଓଡିଶାରେ ମେଣ୍ଟ ଯୋଗୁ ବହୁ ନିଷ୍ଠାପର ବି.ଜେ.ପି. ଲୋକ, ଯେଉଁମାନେ କି ବି.ଜେ.ପି. ପାଇଁ ବହୁ ତ୍ୟାଗ ସ୍ୱୀକାର କରିଥିଲେ, ଟିକେଟ୍ ପାଇଲେ ନାହିଁ । ବେଶୀ ଭାଗ ଆସନ ବି.ଜେ.ଡି. ଦଳ ନେଇଗଲା । ଆଳି ନିର୍ବାଚନ ମଂଡଳି ବି.ଜେ.ଡି. ଭାଗରେ ପଡିଲା । ତେଣୁ ମୁଁ ପ୍ରାର୍ଥୀ ହୋଇ ପାରିଲିନାହିଁ ।

ବି.ଜେ.ପି. ନେତାମାନେ ଏଭଳି ଛଳ ପ୍ରକୃତିର ଥିଲେ, ମୋତେ ଖୁବ୍‌ଦୁଃଖ ଲାଗିଲା । ସେମାନେ ଗୋଟାଏ ଅଭିସଂଧିମୂଳକ ହିନ୍ଦୁତ୍ୱବାଦ ଧରିଥିଲେ ବୋଲି ମୋର ଧାରଣା ହୋଇଗଲା । 'Party with difference' ସ୍ଲୋଗାନ୍‌ଟା ଯେ କେତେ ଛଳନାପୂର୍ଣ୍ଣ ଥିଲା, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଏହା ସୁବିଧାବାଦୀ ପୁଂଜିପତିଙ୍କର ଦଳ ହୋଇଗଲା, ମୁଁ ପ୍ରତ୍ୟକ୍ଷ ଭାବରେ ଜାଣେ । କିଂତୁ ସେସବୁ କଥାକୁ ଏଠାରେ ବର୍ଣ୍ଣନା କରିବାକୁ ମୁଁ ଇଚ୍ଛା କରୁନାହିଁ ।

ମୁଁ ଯେଉଁ ଥରକ ନିର୍ବାଚନରେ ଲଢିଥିଲି, ସେଥିରୁ ଅନେକ ଅନୁଭୂତି ଲାଭ କରିଥିଲି । କେତେକ ପଛୁଆ ଜାତିର ଲୋକ ଭୋଟ୍ ଦେବା ପାଇଁ ମୋତେ ଟଂକା

ମାଗିଥିଲେ । ଅନ୍ୟାନ୍ୟ ଜାତିର ଗରିବ ଲୋକ କେତେକ ମଧ୍ୟ ଟଂକା ମାଗିଥିଲେ । ଜନସାଧାରଣଂକ ଚରିତ୍ର ଅତ୍ୟନ୍ତ ନିମ୍ନସ୍ତରରେ ପହଂଚିଛି ବୋଲି ମୋର ଧାରଣା ହୋଇଯାଇଥିଲା । ମୋତେ ଅନେକ ଗାଁର ଲୋକ ଠାକୁରଠାକୁରାଣୀଂକ ପାଇଁ ଅର୍ଥ ମାଗିଥିଲେ । କେତେକ କ୍ଲବ୍‌ର ଯୁବକ ମଧ୍ୟ ମାଗିଥିଲେ । ମୁଁ କିଂତୁ ଦେଇପାରିନଥିଲି । ସେହି ସମୟରୁ ମୋର ଗୋଟାଏ କୌତୁହଳ ହୋଇଯାଇଛି । ମୁଁ ଯେଉଁ ମନ୍ଦିରର ପକ୍କା ଚଟାଣ ଉପରେ ବସେଁ, ପଚାରି ବୁଝେଁ ତାହା କେଉଁ ନିର୍ବାଚନ ପ୍ରାର୍ଥୀଙ୍କ ଦାନ-ଅର୍ଥରେ ହୋଇଛି ।

ସେ ଯାହାହେଉ, ମୁଁ ଯଦି ଦ୍ୱିତୀୟ ଥର ଟିକେଟ୍ ପାଇଥା'ନ୍ତି, ତେବେ ନିଶ୍ଚୟ ଜିଣିଥାନ୍ତି ଏବଂ ନିଶ୍ଚୟ ମୋ ନିର୍ବାଚନମଂଡଳିରେ ବିଶେଷଭାବେ କୃଷିର କିଛି ଉନ୍ନତି କରିଥାଆନ୍ତି । କାରଣ, ଦ୍ୱିତୀୟଥର ବାଜପେୟୀ ହାୱା ବହିଥିଲା । ତେବେ ବି.ଜେ.ପି.ର ପ୍ରଭାବ ଯେ ନଆସିବ, ଏପରି ନୁହେଁ ।

•••

# ମୋ ବୋଉ ଓ ମୋ ବଡ ଭାଇ

ମୋ ବୋଉ ଥିଲା ସଂସାରର ସର୍ବଶ୍ରେଷ୍ଠ ମହୀୟସୀ ମାଆ । କାରଣ, ସେ ଯେତେ କଷ୍ଟ କରି ମୋତେ ଏବଂ ମୋର ଭାଇ ଭଉଣୀ ଦୁଇଟିଙ୍କୁ ବଂଚାଇ ରଖିଥିଲା, ସେଭଳି କଷ୍ଟ ଆଉ କେହି କରିନଥିବେ କିଂବା କରିପାରିବେ ନାହିଁ ।

ମୁଁ ବୋଉଠାରୁ ଶୁଣିଥିଲି, ମୋ ବାପା (ପୁଣ୍ୟପାଦ ରତ୍ନାକର ମହାପାତ୍ର) ବତିଶିମାତ୍ର ବୟସରେ ପ୍ରାଣତ୍ୟାଗ କରିଥିଲେ । ବୋଉକୁ ପଚିଶି ବର୍ଷ ମାତ୍ର ବୟସ ହୋଇଥିଲା । ବାପାଂକର ବାପା (ପୁଣ୍ୟପାଦ ଭାଗୀରଥି ମହାପାତ୍ର) ଥିଲେ ଜଣେ ଗରିବ କୃଷକ । ଜାତିରେ ବ୍ରାହ୍ମଣ ହେଲେ ମଧ୍ୟ କୃଷିକର୍ମ କରି ଚଳୁଥିଲେ । ଧାନଜମି ଗାଁରେ ଦେଢ ଏକର, ଖଣ୍ଡେଇତା ମୌଜାରେ ଅଢେଇ ଏକର, ଘରଡିହ ସାତ ଗୁଂଠ, ଏହା ଥିଲା ଜେଜେବାପାଂକର ସଂପତ୍ତି । ଚାଳଘରଟିଏ ଥିଲା । ୧୯୨୨ ମସିହାରେ କେତେଜଣ କଂଗ୍ରେସ ନେତା କନିକାର ଜନସାଧାରଣଂକୁ "ଦେଶ ସ୍ୱାଧୀନ ହେବ, ଜନସାଧାରଣ ରାଜ ଅତ୍ୟାଚାରରୁ ମୁକ୍ତ ହେବେ ଏବଂ ଆନନ୍ଦରେ ରହିବେ" ଏହିପରି ସୁନେଲି ସ୍ୱପ୍ନ ଦେଖାଇ କନିକାରାଜଶାସନ ବିରୁଦ୍ଧରେ ଆନ୍ଦୋଳନ କରାଇଥିଲେ, ଯାହାକୁ କନିକାରାଜା ଇଂରେଜଶାସକଂକ ସାହାଯ୍ୟ ନେଇ ଦୃଢ ହସ୍ତରେ ଦମନ କରିଥିଲେ । ସେହି ଆନ୍ଦୋଳନରେ ମୋର ଜେଜେବାପା ମଧ୍ୟ ନେତାଂକ କଥାରେ ଭାସିଯାଇ ଯୋଗ ଦେଇଥିଲେ । ପୁଲିସ ଫଉଜ ତାଂକୁ ବଂଧୁକ ବେଂଟରେ ନିସ୍ତୁକ ମାଡ ଦେଇଥିଲେ । ଜେଜେବାପା ଗୁରୁତରଭାବେ ଆହତ ହୋଇ ଅକର୍ମଣ୍ୟ ହୋଇଯାଇଥିଲେ ଏବଂ ଅଳ୍ପ କେତେ ମାସ ପରେ ମରିଯାଇଥିଲେ । ମୋ ବାପା ସେତେବେଳେ ଥିଲେ ପନ୍ଦର

ବର୍ଷର ବାଳକମାତ୍ର । ତେଣୁ ଜେଜେଙ୍କ ଅକାଳ ମୃତ୍ୟୁ ତାଂକୁ ଘୋର ଦୁଃଖଦୁର୍ଦ୍ଦଶା ଭିତରକୁ ଠେଲିଦେଇଥିଲା । ବାପା ଆମ ଗାଁ ପ୍ରାଥମିକ ସ୍କୁଲରୁ (ପଂଚମ ଶ୍ରେଣୀ ପର୍ଯ୍ୟନ୍ତ) ପାଶ୍ କରିଥିଲେ । ତା'ପରେ ବହୁ କଷ୍ଟରେ ଘରୋଇ ଭାବେ ପଢି ଭର୍ଣ୍ଣାକୁଲାର ମାଇଁନର ପରୀକ୍ଷା (ଇଂରାଜି ବିହୀନ ମାଇଁନର ସ୍କୁଲ ପରୀକ୍ଷା) ଦେଇ ପାଶ୍ କରିଥିଲେ । ଗାଁ ପ୍ରାଥମିକ ବିଦ୍ୟାଳୟରେ ତାଂକୁ ତୃତୀୟ ଶିକ୍ଷକ ପଦରେ ନିଯୁକ୍ତି ମିଳିଥିଲା । ମାସିକ ବେତନ ଥିଲା ପାଂଚ ଟଂକା ।

ବାପାଂକୁ ୩୨ ବର୍ଷ ଓ ବୋଉକୁ ୨୫ ବର୍ଷ ହୋଇଥିବା ଭିତରେ ଆମେ ତିନିଟି ପିଲା ଜନ୍ମ ହୋଇଥିଲୁଁ । ମୋ ବଡ ଭାଇ(ନନା) ଶ୍ରୀଘନଶ୍ୟାମ ମହାପାତ୍ର, ମୁଁ ଓ ମୋ ତଳେ ପାର୍ବତୀ । ମୋତେ ଚାରି ବର୍ଷ ଓ ପାର୍ବତୀ କୋଳଛୁଆ ଥିଲାବେଳେ ବାପା ଇହଧାମ ତ୍ୟାଗ କଲେ । ନନା ଥିଲେ ମୋଠାରୁ ଦୁଇ ବର୍ଷ ବଡ । ବାପା ଯେତେ ଔଷଧ ସେବନ କଲେ ମଧ ତାଂକର ରୋଗ ଉପଶମ ହେଲାନାହିଁ । କାଶରେ କଫ ସହିତ ରକ୍ତ ପଡିଲା । ସେ କ୍ରମେ କ୍ରମେ ଅତ୍ୟନ୍ତ ଦୁର୍ବଳ ହୋଇପଡିଲେ । ଶେଷରେ ତାଂକର ପ୍ରାଣବାୟୁ ଉଡିଗଲା । ବୋଉଠାରୁ ମୁଁ ଶୁଣିଛି, ବାପାଂକୁ ରାଜହଂସ କାଶ ଧରିଥିଲା, ବୋଧହୁଏ ବର୍ତ୍ତମାନ ଯେଉଁ ରୋଗକୁ ଟି.ବି. କୁହାଯାଉଛି । ସେ କାଳରେ ଟି.ବି. ଥିଲା ଅସାଧ ରୋଗ । ଜେଜେବାପା କନିକା ପ୍ରଜା ଆନ୍ଦୋଳନରେ ଯୋଗ ଦେଇ ଅକାଳରେ ମୃତ୍ୟୁ ବରଣ କରିବା ଫଳରେ ବାପା ବାଳକ ବୟସରେ ଅନାଥ ହୋଇ ଗଲେ, ଘୋର ଦାରିଦ୍ର୍ୟ ଭିତରେ କଠୋର ପରିଶ୍ରମ କରି ରୋଗାକ୍ରାନ୍ତ ହୋଇଗଲେ ଏବଂ ଅକାଳରେ ମୃତ୍ୟୁ ମୁଖରେ ପଡିଲେ । ବାପା ଅକାଳରେ ଚାଲିଯିବା ଫଳରେ ଆମେ ତିନୋଟି ପିଲା ଅନାଥ ହୋଇଗଲୁଁ ଏବଂ ବହୁତ ଦୁଃଖ ଦୁର୍ଦ୍ଦଶା ଭୋଗ କଲୁଁ । ତେଣୁ ଆମ ପରିବାରଟିର ଦୁଃଖ ଦୁର୍ଦ୍ଦଶା ମୂଳରେ କଂଗ୍ରେସ ନେତାମାନେ ଦାୟୀ ଏବଂ ଏହିପରି ଅନେକ ପରିବାରର ଦୁଃଖଦୁର୍ଦ୍ଦଶା ପାଇଁ ଦାୟୀ ଥିଲେ, ଏଥିରେ ସଂଦେହ ନାହିଁ ।

ବାପାଂକର ଦୀର୍ଘ ଅସୁସ୍ଥତା ଭିତରେ ଘରର ଜିନିଷପତ୍ର ସବୁ ବିକା ସରିଥିଲା । ବୋଉ ବାପଘରୁ ଯାହା କିଛି ଗହଣାଗାଂଠି ଆଣିଥିଲା, ତାହା ସବୁ ମଧ ବିକା ସରିଥିଲା । ସଂବଳ ମାତ୍ର ଥିଲା ଚାଳଘରଟିଏ । ବାପା ଗଲାପରେ ବୋଉ ଗାଁ ଜମି ଦେଢ ମାଣ ନିଜ ହାତରେ ଚାଷ କଲା । ଜମି ହଳ କରାଇବାରେ ଯାହା ଖର୍ଚ୍ଚ ହେଲା, ସେତକ ବଡ ମାମୁଁ ଦେଲେ । ଆଉ ସବୁ ଯେତେ କାମ, ବୋଉ ସବୁ ନିଜେ କଲା । ନିଜେ ବିଲ ବାଛିଲା, ଧାନ କାଟିଲା । ମୁଣ୍ଡରେ ମୁଣ୍ଡେଇ ଛଣ, କଳେଇ (କଟା ଧାନଗଛ) ବୋହି

ଆଣିଲା । ଗୋଟିଏ ନାଲିଗାଈ ଥିଲା । ଘାସ କାଟି ଆଣି ଗାଈକୁ ଦେଲା । ମୁଗବିରି ହେଲେ ତାହାକୁ ଉପାଡି ଆଣି ଶୁଖାଇ ଅମଳ କଲା । ବାଡିରେ ପନିପରିବା କଲା । ଏହିପରି ଦିନ ରାତି ଅକ୍ଲାନ୍ତ ପରିଶ୍ରମ କରି ଆମକୁ ବଂଚାଇ ରଖିଲା ।

'ଆୟତନ' ଗ୍ରାମଠାରୁ ପ୍ରାୟ ଏକ କି.ମି.ଦୂର 'ଖଣ୍ଡେଇତା' ଗ୍ରାମରେ ମୋ ମାମୁଁଘର । ଦୁଇ ମାମୁଁ ଓ ଗୋଟିଏ ମାଉସୀ । ବଡ ମାମୁଁ ପୂଜ୍ୟପାଦ ବାଂଛାନିଧି ମହାପାତ୍ର ଓ ସାନ ମାମୁଁ ପୂଜ୍ୟପାଦ ଦୟାନିଧି ମହାପାତ୍ର । ମାଉସୀର ନାମ ଚଂଚଳା, ବୋଉର ନାମ କମଳା । ଦୁଇ ମାମୁଁ ନିତାନ୍ତ ଗରିବ ଥିଲେ । ବଡ ମାମୁଁ ଦୁଇ ତିନି ଦିନରେ ଥରେ ଥରେ ଆସି ଆମ କଥା ବୁଝିଯାଉଥିଲେ । ମାଉସୀ ଓ ମଉସା ମଧ୍ୟ ଯଥା ସଂଭବ ସାହାଯ୍ୟ କରିଥିଲେ । ବାପାଂକ ମୃତ୍ୟୁ ପରେ ପ୍ରାଥମିକ ବିଦ୍ୟାଳୟଟିରେ ତାଂକ ସ୍ଥାନରେ ନିଯୁକ୍ତ ହେଲେ ପୁଣ୍ୟାତ୍ମା ଦଧିବାମନ ଗିରି । ସେ ମଧ୍ୟ ଆମକୁ ସଦୟ ଦୃଷ୍ଟିରେ ଦେଖୁଥିଲେ । ଆମେ ତିନି ପିଲା ବିଦ୍ୟାଳୟରେ ପଢୁଥିବା ପର୍ଯ୍ୟଂତ ସେ ଆମକୁ କାଗଜ, କଲମ,କାଳି, ବହି ପ୍ରଭୃତି ପଢାସାମଗ୍ରୀ ଦେଉଥିଲେ । ମୁଁ ଚତୁର୍ଥ ଶ୍ରେଣୀ ପାସ୍ କରି ପଢା ବନ୍ଦ କରିବାକୁ ବାଧ୍ୟ ହୋଇଥିଲି । କାରଣ, ପେଟ ପୋଷିବାକୁ ମୋତେ ଗଂଗାଧରପ୍ରସାଦଡିଆ ଗ୍ରାମରେ ଠାକୁର ପୂଜା କରିବାକୁ ପଡିଥିଲା । ନନା ସାନ ମାମୁଁଙ୍କ ସାଙ୍ଗରେ କଲିକତା ଯାଇ ଝୋଟ କଳରେ ଖଟି ପେଟ ପୋଷିଲେ ।

ପ୍ରତି ଏକାଦଶୀ ତିଥିରେ ବୋଉ କାଷ୍ଠା ଉପବାସରେ ରହୁଥିଲା । ଏପରି କି ପାଣି ମୁନ୍ଦିଏ ମଧ୍ୟ ପିଉନଥିଲା । ପିଲାଂକର ମଂଗଳ ମନାସି ସେ ଅନେକ ଓଷାବ୍ରତ ମଧ୍ୟ କରୁଥିଲା । ଅନେକ ସମୟରେ ଆମକୁ ଖାଇବାକୁ ଦେଇ ସାରିବା ପରେ ତା' ପାଇଁ କିଛି ରହୁନଥିଲା । ତେଣୁ ଅନେକ ଦିନ ଥିଲା ତା'ପାଇଁ ଓଷାବ୍ରତ ଭଳି । ଓଷାବ୍ରତ କାରଣରୁ ହେଉ ବା ଖାଦ୍ୟାଭାବ କାରଣରୁ ହେଉ, ଥରେ ଥରେ ସେ ତିନି ଚାରିଦିନ ଧରି ଉପବାସରେ ରହୁଥିଲା । ଉପବାସରେ ମଧ୍ୟ କଠିନ ଶରୀରଶ୍ରମ କରୁଥିଲା । ବର୍ଷାଦିନେ ନଈକୂଳ ବିଲରେ ଘାସ ବାଛି, ବଢା ଘାସକୁ ମୁଣ୍ଡେଇ, ହାଟଚତର ପାଖ ଜୋଡବନ୍ଧ ଦେଇ ଘରକୁ ଆସୁଥିଲା । ବଢା ଘାସରୁ କାଦୁଅପାଣି ତାର ମୁଣ୍ଡରୁ ପାଦ ପର୍ଯ୍ୟନ୍ତ ବହୁଥିଲା ।

ମୋ ବୋଉର ଶିକ୍ଷାଥିଲା ଓଡିଆ ଅକ୍ଷର ପରିଚୟ ମାତ୍ର । ମାଣବସା ଓଷାବହି ଖଣ୍ଡିଏ ସେ ଝୁଂଟୁଝୁଂଟୁ ହୋଇ ପଢୁଥିଲା । ମାର୍ଗଶିର ମାସର ପ୍ରତି ଗୁରୁବାର ଦିନ ମାଣବସା ଓଷାବହି (ଲକ୍ଷ୍ମୀପୁରାଣ) ସେ ପଢୁଥିଲା । ଓଡିଆ ଅକ୍ଷର ପରିଚୟ ଓ ବହି ପଢିବା ସେ ବାପାଂକ ଠାରୁ ଶିକ୍ଷା କରିଥିଲା ବୋଲି ମୁଁ ତା'ଠାରୁ ଶୁଣିଥିଲି । ଆମ

ଝିଅମାନଂକୁ ପାଠ ପଢାଇବାକୁ ସେ ଆମକୁ ବରାବର କହୁଥିଲା । ତେଣୁ ତା'ର ନାତୁଣୀମାନେ ଭଣା ଅଧିକେ ସ୍କୁଲ କଲେଜରେ ଶିକ୍ଷାଲାଭ କରିଛନ୍ତି ।

ମୁଁ ଜୀବନରେ ଶିକ୍ଷକଟିଏ ହୋଇପାରିବି ବୋଲି ସ୍ୱପ୍ନରେ ମଧ୍ୟ ଭାବି ନଥିଲି । କିଂତୁ ଯେତେବେଳେ ସଂସ୍କୃତରେ ସାହିତ୍ୟାଚାର୍ଯ୍ୟ ପାସ୍ କରି ରେଭେନ୍ସା କଲିଜିଏଟ୍ ସ୍କୁଲରେ ଦ୍ୱିତୀୟ ପଣ୍ଡିତ ପଦରେ ନିଯୁକ୍ତି ପାଇଲି, ସେହି ଦିନରୁ ବୋଉର କଥା ସ୍ମରଣରେ ରଖି ଜୀବନରେ ବାଳିକା ସ୍କୁଲଟିଏ କରିବି ବୋଲି ଭାବନାରେ ରହିଥିଲି ଏବଂ ସେଥିପାଇଁ ସଂଚୟ କରିବାରେ ଲାଗିଥିଲି । ପରେ ଆମ ଗାଁରେ ଲୋକମାନେ ବାଳିକା ହାଇସ୍କୁଲଟିଏ କରିବାକୁ ଆବଶ୍ୟକତା ଅନୁଭବ କରି ମୋତେ ଯେତେବେଳେ ଅନୁରୋଧ କଲେ, ମୁଁ ମୋ ଚାକିରିଦିନରୁ ସ୍ୱତଂନ୍ତ୍ର ଭାବେ ସଂଚୟ କରି ରଖିଥିବା ଏକ ଲକ୍ଷ ତିରିଶି ହଜାର ଟଂକାକୁ ସେଥିରେ ଲଗାଇବାକୁ ଇଚ୍ଛା କଲି ଏବଂ ବାଳିକା ହାଇସ୍କୁଲଟିଏ ଆମ ଗାଁରେ ପ୍ରତିଷ୍ଠା କରାଇଲି । ଲୋକମାନେ ସଭାକରି ସ୍ୱତଃ ସେହି ସ୍କୁଲଟିକୁ ମୋ ବୋଉ ନାମରେ ନାମିତ କଲେ । ବୋଉ ସେତେବେଳେକୁ ଇହଧାମରୁ ଯାଇସାରିଥିଲା । ଥିଲେ ହୁଏତ ତା' ନାମରେ ନାମିତ କରାଇବାକୁ ରାଜି ହୋଇନଥାନ୍ତା ।

ପାର୍ବତୀର ବିବାହ ବୋଉ ଆଳି ପଦନିପାଳ କଲମୋଡା ଶାସନର ପଣ୍ଡିତ ମହେଶ୍ୱର ନନ୍ଦଂକ ସହ କରାଇଥିଲା । ପାର୍ବତୀ କୋଳଶିଶୁ ଥିଲା ବେଳେ ବାପାଂକର ବିୟୋଗ ହୋଇଥିବାରୁ ବୋଉର ତା'ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଥିଲା ।

ବୋଉର ଦେହାନ୍ତ ହେଲା ୧୯୮୬ ମସିହାରେ ୭୩ ବର୍ଷ ବୟସରେ । ତା' ଆଗରୁ ୧୯୮୩ରେ ମୋ ବଡ ଭାଇଂକର ଦେହାନ୍ତ ହୋଇଥିବାରୁ ବୋଉ ପୁତ୍ରଶୋକରେ ଭାଂଗିପଡିଲା ଏବଂ କ୍ରମେ କ୍ରମେ ରୋଗାକ୍ରାନ୍ତ ହୋଇ ଇହଧାମରୁ ବିଦାୟ ନେଲା । ଦୁହିଁଙ୍କର ବିୟୋଗ ପରେ ମୋ ଜୀବନ ନିସ୍ତେଜ ହୋଇଗଲା ।

ମୋ ନନା (ଏକମାତ୍ର ବଡଭାଇ ପୂଜ୍ୟପାଦ ସ୍ୱର୍ଗତ ଘନଶ୍ୟାମ ମହାପାତ୍ର) ପଂଚମ ଶ୍ରେଣୀ ପର୍ଯ୍ୟନ୍ତ ପଢିଥିଲେ । କିଂତୁ ସେ ଥିଲେ ଆମ ଅଂଚଳର ଶ୍ରେଷ୍ଠ ବିବେକୀ, ବିଚାରବନ୍ତ ଓ ପରିଶ୍ରମୀ ଲୋକ । ବାପାଂକ ମୃତ୍ୟୁପରେ, ବୋଉର କଠିନ ପରିଶ୍ରମ ସତ୍ତ୍ୱେ ଆମର ପେଟ ପୋଷିବା ସଂଭବ ନ ହେବାରୁ ନନା ବାଳକ ଅବସ୍ଥାରେ ସାନମାମୁଁଙ୍କ ସଂଗେ କଲିକତା ଯାଇ ଟାଲିଗଂଜର ଏକ ଝୋଟ କଳରେ ଶ୍ରମିକ ଭାବେ କାମ କଲେ । ଏତେ କମ୍ ବୟସରେ (୧୩/୧୪ ବର୍ଷ ବୟସରେ) କଳ ଘରେ ଖଟିବା ଫଳରେ ଏବଂ ଖାଦ୍ୟପେୟ ଯଥେଷ୍ଟ ନପାଇବା ଫଳରେ ରୁଗ୍ଣଶରୀର ହୋଇପଡିଲେ । ଯେତେବେଳେ ଦେଶ ଭାଗ ଭାଗ ହେଲା ଏବଂ ଭୀଷଣ ସାଂପ୍ରଦାୟିକ ଦଂଗା ଲାଗିଲା,

ସେତେବେଳେ ନନା କଲିକତାରେ ଥିଲେ । କେହି ଗୋଟାଏ ଦୁର୍ବୃତ୍ତ ତାଂକୁ ହାଣିବାକୁ ଗୋଡାଇଥିଲା । ନନା କୌଣସି ପ୍ରକାରେ ଅଂଧାରରେ କେଉଁଠି ଲୁଚିଯାଇ ମୃତ୍ୟୁମୁଖରୁ ବର୍ତ୍ତିଯାଇଥିଲେ । କଲିକତାର ହାଣକାଟ ଖବର ଗାଁରେ ଶୁଣାଯାଆନ୍ତେ ବୋଉ ଖାଲି କାଂଦିବାକୁ ଲାଗିଲା । ପୁଅ ବଂଚିଛି କି ନାହିଁ, କାହାଠାରୁ ଜାଣିପାରିଲା ନାହିଁ । ନଖାଇ ନପିଇ ମଲାଗଲା ହୋଇଗଲା । ଯାହା ହେଉ, କିଛିଦିନ ପରେ ନନା ଆସି ପହଂଚିଗଲାରୁ ବୋଉ ବଂଚିଗଲା ।

କଲିକତାରୁ ଆସି ନନା ଝରମ ଗ୍ରାମର ଜଣେ ଦରଜିଙ୍କଠାରୁ ସିଲେଇକାମ ଶିଖିଲେ ଏବଂ ପୁରୁଣା ସିଲେଇ ମେସିନ୍‌ଟିଏ କିଣି ଘରେ ସିଲେଇ କାମ କଲେ । ଏକେ ତ କଳଘରେ ଖଟିଖଟି ସେ ରୁଗ୍ଣ ହୋଇପଡିଥିଲେ । ପୁଣି ସିଲେଇ କାମରେ ବସି ରହିବା ଫଳରେ ତାଂକର ସ୍ୱାସ୍ଥ୍ୟ ଆଉ ଫେରିଲା ନାହିଁ । ଗଣେଶ ପୂଜା, ଶ୍ରୀପଂଚମୀ, ପ୍ରଥମାଷ୍ଟମୀ ଆଦି ଉତ୍ସବ ଉପଲକ୍ଷେ ସେ ଦିନରାତି ବସି ରହି ପିଲାଂକ ପାଇଁ ଜାମାପ୍ୟାଣ୍ଟ ପ୍ରଭୃତି ତିଆରି କରିବା ଫଳରେ ଖାଇବା ପିଇବାରେ ଅନିୟମିତତା ଘଟିଲା । ତେଣୁ ତାଂକର ପେଟ ଖରାପହୋଇ ପେଟବିଂଧା ରୋଗ ଆରମ୍ଭ ହେଲା । ଔଷଧପତ୍ର ଯାହା ସେତେବେଳେ ସଂଭବ ଥିଲା, ବ୍ୟବହାର କଲେ । କିଂତୁ ରୋଗ ଭଲ ହେଲା ନାହିଁ ।

ନନାଂକୁ ୫୪ ବର୍ଷ ଓ ମୋତେ ୫୨ ବର୍ଷ ପର୍ଯ୍ୟନ୍ତ ଆମେ ଦୁଇ ଭାଇ ଏକ ମନ, ଏକ ପ୍ରାଣରେ ଚଳି ଆସିଥିଲୁଁ । ସେହି ସୁଖ, ଆନନ୍ଦ ଓ ଶାନ୍ତି ଆଜି ମୋତେ ସ୍ୱପ୍ନ ପରି ଲାଗୁଛି । ମୁଁ ସଂସ୍କୃତ ପଣ୍ଡିତ ଚାକିରିଟିଏ ପାଇଲା ପରେ ଯାହା ଦରମା ପାଉଥିଲି, ନିଜର ଖର୍ଚ୍ଚ ଛଡା ସବୁ ତାଂକୁ ଦେଉଥିଲି । ୧୯୫୫ରୁ ୧୯୬୯ ପର୍ଯ୍ୟନ୍ତ ମୁଁ ମୋ ପାଖରେ ପରିବାର ରଖିନଥିଲି । କେବଳ ବଡ ବଡ ଛୁଟିରେ ଘରକୁ ଯାଉଥିଲି । ପ୍ରଥମେ ଦ୍ୱିତୀୟ ସଂସ୍କୃତ ଶିକ୍ଷକ, ତା'ପରେ ଟ୍ରେଣ୍ଡ ଗ୍ରାଜୁଏଟ୍, ତା'ପରେ ଅଧ୍ୟାପକ, ଏହିପରି କ୍ରମଶଃ ଉପର ସ୍ତରର କାର୍ଯ୍ୟ କରି ଏବଂ ପରୀକ୍ଷାଖାତାଦି ଦେଖି ଯାହା ପାଉଥିଲି, ସବୁ ନନାଂକୁ ଦେଉଥିଲି । ନନା ସେଥିରେ ଚାଷଜମି କିଣୁଥିଲେ ଏବଂ ଗାଁରେ କୋଠାଘର ଖଂଡିଏ କରିଥିଲେ । ନିଜ ରୋଜଗାରରେ ଘର ଚଳାଉଥିଲେ । ସବୁ କଥା ମୋତେ ଜଣାଉଥିଲେ । ଆମେ ଦୁଇ ଭାଇ ଅଭିନ୍ନ ଆତ୍ମା ଥିଲୁଁ ।

ସାମାଜିକ ସାର୍ବଜନୀନ କାମରେ ନନାଂକର ଅଭିରୁଚି ଥିଲା । ତାଂକୁ ସମସ୍ତେ ସାଧୁ ପ୍ରକୃତିର ଲୋକ ବୋଲି ଜାଣିଥିଲେ । ସେ ଆୟତନ ଏମ୍.ଇ.ସ୍କୁଲର କେତେ ବର୍ଷ ସେକ୍ରେଟେରି ଥିଲେ । ଆମ ଗ୍ରାମ 'କନିକା ହାଇସ୍କୁଲ'ର ପରିଚାଳନା ନେଇ ଯେତେବେଳେ ବାଦବିବାଦ ଲାଗିଲା ଏବଂ ସ୍କୁଲଘର (ସେତେବେଳେ ଚାଳଘର ଥିଲା)

ପୋଡ଼ା ହୋଇଗଲା, ଲୋକମାନଂକ ଅନୁରୋଧରେ ସେ ହାଇସ୍କୁଲପରିଚାଳନା କମିଟିର ସଂପାଦକ ଥିଲେ । ଲୋକଙ୍କ ମଧ୍ୟରୁ ବିବାଦ ତୁଟାଇବାରେ ସେ ଭଦ୍ରଲୋକମାନଙ୍କ ମଧ୍ୟରେ ଜଣେ ଥିଲେ । ଲୋକହିତ ସାଧନରେ ତାଙ୍କର ଅତ୍ୟନ୍ତ ଆଗ୍ରହ ଥିଲା । କିଂତୁ ଦୈବର ଇଚ୍ଛା ଭିନ୍ନ ଥିଲା । ମୁଁ ସ୍ୱେଚ୍ଛାକୃତ ଅବସର ନେବାର ଚାରିମାସ ମାତ୍ର ପରେ ନନାଂକର ପାକସ୍ଥଳୀରେ କର୍କଟ ରୋଗ ଜଣାପଡିଲା । ଚିକିତ୍ସା ପାଇଁ ସେ କଟକରେ ମୋ ପାଖରେ ଆସି ରହିଲେ । ପ୍ରାୟ ଦେଢ ବର୍ଷ କାଳ ବିଭିନ୍ନ ପଦ୍ଧତିରେ ତାଂକର ଚିକିତ୍ସା କରାଇଲି । ଅପରେସନ ମଧ୍ୟ କରାଇଲି । କିଂତୁ ସବୁ ବିଫଳ ହେଲା । ତାଂକର ଯଂତ୍ରଣା ଦିନକୁ ଦିନ ବଢିଲା ଏବଂ ଯଂତ୍ରଣା ଏପରି ଅସହ୍ୟ ହେଲା ଯେ ନିଶା ଇଂଜେକ୍‌ସନ୍ ଦେଇ ତାଂକୁ ଶୁଆଇ ରଖିବାକୁ ପଡିଲା । ଶେଷରେ ତାଂକର ପ୍ରାଣବାୟୁ ଉଡିଗଲା ।

ମୋ ବାପାଂକ ସ୍ୱଭାବ ଚରିତ୍ର କିପରି ଥିଲା ଏବଂ ତାଂକର ଚେହେରା କିପରି ଥିଲା, ମୋର ଧାରଣା ନାହିଁ । ତାଂକ ବିଷୟରେ ବୋଉଠାରୁ ଶୁଣିଥିଲି, ସେ ଖୁବ୍ ଧୀରସ୍ଥିର ଲୋକ ଥିଲେ । ପଢିବାରେ ଏବଂ ଗୀତ ଲେଖିବାରେ ତାଂକର ଆଗ୍ରହ ଥିଲା । ଆମ ଗାଁର ଯାତ୍ରାଦଳ ପାଇଁ ସେ ଗୀତ ଲେଖୁଥିଲେ । ତାଂକ ପାଖରେ ପଢିଥିବା ଲୋକଂକଠାରୁ ଶୁଣିଛି, ସେ ଜଣେ କର୍ତ୍ତବ୍ୟପରାୟଣ ଶିକ୍ଷକ ଥିଲେ ଏବଂ ପିଲାମାନଂକୁ ଶ୍ରଦ୍ଧା କରୁଥିଲେ ।

ବାପା, ବଡ ଭାଇ ଓ ବୋଉ ସ୍ୱର୍ଗକୁ ଚାଲିଯାଇଛନ୍ତି, ମୋ ଜୀବନ ନିଃସାର ହୋଇଯାଇଛି । ଯଦି ପୁନର୍ଜନ୍ମ ଥାଏ, ତେବେ ସେହି ବାପା ଓ ବୋଉଙ୍କ କୋଳରେ ଏବଂ ସେହି ବଡଭାଇଂକ ମେଳରେ ମୋତେ ସ୍ଥାନ ମିଳୁ, ଏହା ମୋର ପ୍ରାର୍ଥନା ।

●●●

# ଆମ ସଂପତ୍ତି

ମୁଁ ଓ ନନା ଏକମନ, ଏକ ପ୍ରାଣରେ ଚଳିବା ଫଳରେ ଆମ ଆର୍ଥିକ ଅବସ୍ଥାରେ କିଛି ଉନ୍ନତି ଘଟିଥିଲା । ସେ ସିଲେଇ ମେସିନ୍‌ଟିରେ ସିଲେଇ କରି ଓ ଲୁଗାକପଡା ଦୋକାନଟିଏ କରି ଯାହା ପାଉଥିଲେ ଏବଂ କୃଷିରୁ ଯାହା ପାଉଥିଲେ, ସେଥିରେ ପରିବାର ଚଳାଉଥିଲେ । ମୁଁ ଶିକ୍ଷକ ଚାକିରିରୁ ଯାହା ପାଉଥିଲି, ନିଜର ଚଳିବା ମୁତାବକ ରଖି ନନାଂକୁ ସବୁ ଦେଉଥିଲି । ସେଥିରେ ସେ ଜମି କିଛି କିଛି କିଣୁଥିଲେ । ସେ ସମୟରେ ରଂଗଣି ଅଂଚଳରେ ବହୁତ ଜମି ବିକାହେଉଥିଲା । ସେହି ଜମି ଉର୍ବର ଥିଲା । ମୁଁ ସେତେବେଳେ କଟକ କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲି । କନିକା ରାଜାଂକ କଟକ ଉଆସକୁ ଯାଇ ରାଜା ଶୈଳେନ୍ଦ୍ରନାରାୟଣ ଭଂଜଦେଓଂକୁ ସାକ୍ଷାତ କରିଥିଲି ଏବଂ କିଛି ଜମି ଆମକୁ ବିକ୍ରି କରିବାପାଇଁ ଅନୁରୋଧ କରିଥିଲି । ସେ ଛଅ ଏକର ରଂଗଣିଜମି ଆମକୁ ମଂଜୁର କରିଥିଲେ । ନନା କନିକାରେ ସେଠାକାର ଉଆସରେ ସୁବୁଦ୍ଧି ବାବୁଂକୁ ଭେଟି ଜମି କିଣିଥିଲେ । କିଂତୁ ରଂଗଣି ଆମ ଗାଁରୁ ବହୁ ଦୂର ହେତୁ ସେଠାକୁ ଯିବାପାଇଁ ନନାଂକୁ ଖୁବ୍ ତକଲିଫ୍ ପଡିଲା । ତେଣୁ କିଛି ବର୍ଷ ପରେ ସେ ତାହାକୁ ବିକିଲେ ଏବଂ ବାଲୁଙ୍ଗାପାଟିଆରେ ଦଶ ଏକର କିଣିଲେ । ବାଲୁଂଗାପାଟିଆରେ ସେହି ଜମି ହରିଜନ ଲୋକଂକର ଥିଲା । ସେତେବେଳେ ହରିଜନ ଲୋକଂକଠାରୁ ଜମି କିଣିବାକୁ ହେଲେ ସରକାରଂକ ଅନୁମତି ଆବଶ୍ୟକ ହେଉଥିଲା । ତେଣୁ ମୁଁ କନିକାର ତତ୍‌କାଳୀନ ତହସିଲଦାର ରାମଚନ୍ଦ୍ର ଦାସଂକର ସାହାଯ୍ୟରେ ଅନୁମତି କରାଇଥିଲି । ତା'ପରେ ନନା ଆମର ସେହି ବାଲୁଂଗା ପାଟିଆ ଜମିକୁ ଲାଗିଥିବା ଆଉ ଦଶ ଏକର

ଜମି କିଣିବାକୁ ଚାହିଁଲେ । ମୁଁ ନନାଂକୁ କୋଡିଏ ହଜାର ଟଂକା ଦେଇଥିଲି ଏବଂ କେବଳ ତାଂକରି ନାମରେ କବଲା କରିନେବା ପାଇଁ କହିଥିଲି । କାରଣ, ମୁଁ ବ୍ୟସ୍ତଥିବାରୁ ଗାଁକୁ ଯାଇପାରିଲିନାହିଁ । ମୁଁ ସେତେବେଳେ ରେଭେନ୍ସା କଲେଜରେ ଅଧ୍ୟାପକ ଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ରେଭେନ୍ସା କଲେଜରେ ସାଂଧ୍ୟ କଲେଜ ଖୋଲାଯାଇଥିଲା । ସାଂଧ୍ୟ କଲେଜରେ କେହି ସଂସ୍କୃତ ଅଧ୍ୟାପକ ନଥିବାରୁ ମୁଁ ପ୍ରାୟ ଦୁଇ ବର୍ଷ ସଂସ୍କୃତ କ୍ଲାସ୍ ନେଇଥିଲି ଏବଂ ସେଥିପାଇଁ ସ୍ୱତଂତ୍ର ପାରିଶ୍ରମିକ ପାଇଥିଲି । ତେଣୁ ଦିନ କଲେଜ ଓ ସାଂଧ୍ୟ କଲେଜରେ ରୋଜଗାରରୁ ମୋର ବେଶ୍ କିଛି ସଂଚୟ ହୋଇପାରିଥିଲା । ପିଲାପରିବାର ଗାଁରେ ରହୁଥିଲେ । ମୁଁ କଟକରେ ଏକାକୀ ରହୁଥିଲି । ନନା ଆସି କୋଡିଏ ହଜାର ଟଂକା ମୋଠାରୁ ନେଲେ ଏବଂ ଆମ ବାଲୁଙ୍ଗାପାଟିଆ ଦଶ ଏକର ଜମିକୁ ଲାଗିଥିବା ଆଉ ଦଶ ଏକର ଜମି କିଣିଲେ ଏବଂ କେବଳ ତାଂକ ନାମରେ କବଲା କଲେ ।

ଏହାର କେତେକ ବର୍ଷ ପରେ ନନା ସେହି ବାଲୁଂଗା ପାଟିଆ ଜମିକୁ ଲାଗିଥିବା ଆହୁରି ପ୍ରାୟ ଦଶ ଏକର ଜମି ବିକ୍ରିହେବ ବୋଲି ଖବର ପାଇଲେ ଏବଂ ତାହା କିଣିବା ପାଇଁ ଓ ୩୦ ଏକରକୁ ଗୋଟିଏ ଘେରି କରିବାପାଇଁ ଇଚ୍ଛା କରି ମୋ ନିକଟକୁ ପତ୍ର ଲେଖିଲେ । ଫସଲ ବିକ୍ରି ହୋଇ କିଛି ଟଂକା ତାଂକ ପାଖରେ ସଂଚିତ ଥିଲା । ମୁଁ ବେଶୀ ଭାଗ ଦେଲି । ସେହି ଜମି ମଧ୍ୟ କିଣା ହେଲା । ମୋଟ ହେଲା ପ୍ରାୟ ତିରିଶି ଏକର ଗୋଟିଏ ଜାଗାରେ । ନନା ସେଠି ନିଜେ ରହି ଲୋକ ଲଗାଇ ତିରିଶି ଏକର ଜମିର ଚାରିପାଖରେ ଗୋଟିଏ ମଜବୁତ ଘେରି କରାଇଲେ । ଲୁଣା ପାଣି ଘେରି ଭିତରକୁ ପଶି ପାରିଲା ନାହିଁ । ଚାଷୀମାନେ ଅଧା ଭାଗରେ ସେହି ଜମି ଚାଷ କରିବାକୁ ଆଗ୍ରହୀ ହେଲେ । ଦୀର୍ଘକାଳ ସଂପୂର୍ଣ୍ଣ ଅନାବାଦୀ ହୋଇ ପଡିଥିବା ସେହି ଜମିକୁ ଆବାଦୀ କରିବାପାଇଁ ନନା ବହୁତ ପରିଶ୍ରମ ଓ କଷ୍ଟ ସ୍ୱୀକାର କରିଥିଲେ । ଗାଁରେ ମଧ୍ୟ ପାଂଚ ଛଅ ଏକର ଜମି କିଣିଥିଲେ । ପୈତୃକ ଜମି ପ୍ରାୟ ଚାରି ଏକର ଥିଲା । ଗାଁ ଜମି ସବୁକୁ ନନା ହାତେ ଚାଷ କଲେ ହଳିଆ ଓ ହଳବଳଦ ରଖି ।

ତା'ପରେ ଆମେ ଦୁଇ ଭାଇ ଚିନ୍ତା କଲୁ ଗାଁରେ ଖଣ୍ଡିଏ କୋଠାଘର କରିବାପାଇଁ । ମୁଁ କଟକରୁ ଡଙ୍ଗାରେ ଲୁହା ଛଡ, ଗୋଡି, ସିମେଣ୍ଟ ଆଦି କିଣି ପଠାଇଲି । ଇଟା ପୋଡା ବେଳକୁ ଡଙ୍ଗାରେ କୋଇଲା ମଧ୍ୟ ପଠାଇଥିଲି । ସେତେବେଳେ ଆମ ଗାଁ ଅଂଚଳରୁ କଟକ ସହିତ ଡଂଗାରେ କାରବାର ଚାଲୁଥିଲା । ଗାଁରୁ ନଈ ଓ ନଈରୁ କେନାଲ ଦେଇ ଡଂଗା କଟକରେ ପହଂଚୁଥିଲା । ପାଂଚ ଛଅ

ଦିନ ଲାଗୁଥିଲା । ଯାହାହେଉ, ବହୁକଷ୍ଟରେ ଆମର ଗାଁରେ ଢଳେଇ ଛାତ କୋଠାଘରଟିଏ ହୋଇଗଲା ।

ମୁଁ କଟକରେ ୧୯୬୯ରୁ ସପରିବାର ରହିଲା ପରେ ମୋ ପତ୍ନୀଂକର ନିତାନ୍ତ ଆଗ୍ରହ ହେତୁ ଯେତେବେଳେ କଲ୍ୟାଣୀନଗରରେ ଜମି ଖଣ୍ଡିଏ (ଅଢେଇଗୁଂଠ) କିଣିଲି, ସେଥିରେ ନନାଂକର ନାମ ମଧ୍ୟ ରଖିଲି । ନନା ସେତେବେଳେ ଏହାକୁ ସାନବୋହୁଙ୍କ ନାମରେ କିଣିବାକୁ କହୁଥିଲେ । କିଂତୁ ମୁଁ ରାଜି ହେଲିନାହିଁ । ଏଥିରେ ଘରଖଣ୍ଡିଏ ତିଆରି କଲା ବେଳକୁ ନନା ଆସି ସବୁ ବୁଝିଥିଲେ । ସେତେବେଳେ ସିମେଣ୍ଟ ଦୁଷ୍ପ୍ରାପ୍ୟ ଥିଲା । ତେଣୁ ନନା ମଂଗଳାବାଗ କାଠଗୋଲାରୁ ଟାଣ ଶାଳକାଠଗଣ୍ଡି କିଣି, ସେଠାକାର କରତ କଳରେ ଚିରାଇ, ବଳଦ ଗାଡିରେ ଅଣାଇ, କଡିବରଗା ଛାତ କରାଇଥିଲେ । ସେହି ଘରକୁ ଲାଗି ଯେଉଁ ଛୋଟ ଢଳେଇ ଛାତ ଅଂଶଟି, ତାହାକୁ ନନାଂକ ବିୟୋଗ ପରେ ମୁଁ କରାଇଥିଲି । ଭୁବନେଶ୍ୱରରେ ଟେକ୍ସ ବୁକ୍ ବ୍ୟୁରୋରେ ମୁଁ ଯେତେବେଳେ ଥିଲି, ଭୁବନେଶ୍ୱରରେ ଖଣ୍ଡିଏ ଲଟେରି ପ୍ଲଟ୍ ପାଇଁ ଦରଖାସ୍ତ ପକାଇଥିଲି । ଦରଖାସ୍ତରେ ମୁଁ ନନାଂକ ନାମ ରଖିବାକୁ ଚାହିଁଥିଲି । କିଂତୁ ଗୋଟିଏ ଦରଖାସ୍ତରେ ଦୁଇ ଜଣଂକ ନାମ ରହିବାର ନିୟମ ନଥିଲା । (ପ୍ଲଟ୍ ପାଇଁ ଆଫିଡେଭିଟ୍ ମଧ୍ୟ କରାଯାଉଥିଲା) ତେଣୁ ମୁଁ ଏକାକୀ ଦରଖାସ୍ତ କରିଥିଲି ଏବଂ ନୟାପଲ୍ଲୀ ଏନ୍ -୨ ସେକ୍ଟରରେ ଗୋଟିଏ ବଡ ପ୍ଲଟ୍ (ତିନିଗୁଂଠରୁ ବଡ) ପାଇଥିଲି । ତାହା ପାଇବାରେ ଏବଂ ତା' ଚାରିପଟେ ପଥର ପାଚେରି ବୁଲାଇବାରେ ପ୍ରାୟ ୩୦ ହଜାର ଟଂକା ଖର୍ଚ୍ଚ ହୋଇଥିଲା । କିଂତୁ ଅଭାବଗ୍ରସ୍ତ ହୋଇ ସାନ ଝିଅ ବିଭାଘର ପାଇଁ ତାହାକୁ ନିତାନ୍ତ ଅଳ୍ପ ମୂଲ୍ୟରେ ବିକି ଦେଲି । ସେହି ଜମିଖଣ୍ଡିକ ଥିଲେ ବର୍ତ୍ତମାନ ଏକ କୋଟି ଟଙ୍କା ହୋଇଥାଆନ୍ତା ।

ସମୟ ସ୍ରୋତରେ ମୁଁ ଯେତେବେଳେ ଅନୁଭବ କଲି, ମୋ ଚାଲିଯିବା ପୂର୍ବରୁ ଦୁଇ ଭାଇଂକର ସଂପତ୍ତି ବଂଟୁଆରା ହୋଇଯିବା ଉଚିତ, ମୁଁ ଗାଁର ସମସ୍ତ ସଂପତ୍ତି (ଘର, ଘରବାଡି, ଜଳଜମି ପ୍ରାୟ ଚାଳିଶି ଏକର, ଜଳଜମିରୁ କେବଳ ନନାଙ୍କ ନାମରେ ହୋଇଥିବା ଦଶଏକରକୁ ତାଙ୍କ ପିଲାମାନେ ବିକିଦେଇଥିଲେ) ଓ ଅନ୍ୟାନ୍ୟ ସ୍ଥାବର ସଂପତ୍ତି ସ୍ୱର୍ଗତ ଘନଶ୍ୟାମ ମହାପାତ୍ରଂକ ନାମରେ ଲେଖିଦେଲି ଏବଂ କଟକ କଲ୍ୟାଣୀନଗର ଜମିଖଂଡିକ ଓ ଘର ଖଂଡିକ ମୋ ନାମରେ ରଖିଲି । ପିଲାମାନେ ଏହି ବଣ୍ଟନରେ ରାଜି ହେଲେ ଏବଂ ଜଣେ ନୋଟାରିଆନ୍ ଓକିଲଂକ ପାଖରେ ବଂଟୁଆରା ପତ୍ର ପ୍ରସ୍ତୁତ କରାଇ ସମସ୍ତେ ସେଥିରେ ସ୍ୱାକ୍ଷର କଲେ । ଏହା ପୂର୍ବରୁ ନନାଙ୍କର ଗୋଟିଏ ପୁଅ (ଦେବବ୍ରତ) ନାମରେ କଟକ ସି.ଡି.ଏ ରେ ଖଂଡିଏ ପ୍ଲଟ୍ କିଣିଦେଇଥିଲି ଏବଂ କେବଳ ତା'ରି

ନାମରେ ରେଜେଷ୍ଟ୍ରି କରାଇଥିଲି । ସଂପତ୍ତି ବଂଟୁଆରା ପରେ ମୋ ପୁଅ (ଧର୍ମବ୍ରତ) କଠୋର ପରିଶ୍ରମ କରି ସ୍ୱ-ଉପାର୍ଜିତ ଧନରେ ଗୋଟିଏ ନୂଆ ଘର କଲା ।

ମୋ ଜୀବନରେ ମହାଦୁଃଖର ତୃତୀୟ ଧକ୍କା ଲାଗିଥିଲା ମୋର ଏକମାତ୍ର ଭଗିନୀପତି ପଣ୍ଡିତ ମହେଶ୍ୱର ନନ୍ଦଂର ବିୟୋଗ । ମହେଶ୍ୱର ମୋର ପ୍ରାୟ ସମବୟସ୍କ ଥିଲେ ଏବଂ ୭୩ ବର୍ଷ ବୟସରେ ଇହଧାମ ତ୍ୟାଗ କରିଥିଲେ । ସେ ପ୍ରଥମେ ଦାଣ୍ଡିସାହି ହାଇସ୍କୁଲ ନାମକ ଏକ ବେସରକାରୀ ହାଇସ୍କୁଲରେ ସଂସ୍କୃତ ଶିକ୍ଷକ ଥିଲେ । ତାଂକୁ ବାଂକୀ ସରକାରୀ ବାଳିକା ହାଇସ୍କୁଲରେ ନିଯୁକ୍ତି ମିଳିବାରେ ମୁଁ ସାହାଯ୍ୟ କରିଥିଲି । ମୁଁ କଟକ ସେକଣ୍ଡାରି ଟ୍ରେନିଂ ସ୍କୁଲରେ ଶିକ୍ଷକ ଥିଲା ବେଳେ ଶ୍ରୀମତୀ ବିନୟ କୁମାରୀ ପଣ୍ଡା ସେହି ସ୍କୁଲରେ ପ୍ରଧାନ ଶିକ୍ଷୟିତ୍ରୀ ଥିଲେ । ବାଂକୀ ସରକାରୀ ବାଳିକା ବିଦ୍ୟାଳୟରେ ଖାଲିହୋଇଥିବା ହେଡ୍ ପଣ୍ଡିତ ପଦରେ ଜଣେ ପଣ୍ଡିତଂକୁ ନିଯୁକ୍ତି ଦେବାପାଇଁ ଇଣ୍ଟରଭ୍ୟୁ କରାଯାଇଥିଲା । ଶ୍ରୀମତୀ ପଣ୍ଡାଙ୍କୁ ଇଣ୍ଟରଭ୍ୟୁରେ ମୁଖ୍ୟ ରଖାଯାଇଥିଲା । ମୋ ଅନୁରୋଧରେ ସେ ମହେଶ୍ୱରଂକୁ ପ୍ରଥମ ସ୍ଥାନ ଦେଇଥିଲେ । କିଛି ବର୍ଷ ପରେ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲରେ ହେଡ୍ ପଣ୍ଡିତ ପଦ ଖାଲି ହୁଅନ୍ତେ ମୁଁ ମହେଶ୍ୱରଂକୁ ବାଂକୀରୁ କଲିଜିଏଟ୍ ସ୍କୁଲକୁ ଟ୍ରାନ୍ସଫର କରାଇ ଆଣିବାରେ ସାହାଯ୍ୟକରିଥିଲି । ମୁଁ ସେତେବେଳେ ରେଭେନ୍ସା କଲେଜର ଅଧ୍ୟାପକ ଥିଲି । ମୁଁ ଓ ମହେଶ୍ୱର ଉଭୟ ସଂସ୍କୃତ ପଣ୍ଡିତ ଥିବାରୁ ଅନେକ ସମୟରେ ଶାସ୍ତ୍ର ଆଲୋଚନା କରୁଥିଲୁ । ସେ ଥିଲେ ଅତ୍ୟନ୍ତ ଉଦାର ପ୍ରକୃତିର ଲୋକ । ଦାଣ୍ଡିସାହିରେ ଥିଲାବେଳେ ନିଜର ଗରିବ ଆତ୍ମୀୟ ସ୍ୱଜନ ପିଲାଂକୁ ପାଖରେ ରଖି ହାଇସ୍କୁଲ ପର୍ଯ୍ୟନ୍ତ ଶିକ୍ଷା ଦେଇଥିଲେ ।

ମହେଶ୍ୱରଙ୍କର ବଡ ପୁଅ (ମୋ ବଡ ଭଣଜା) ଅଶୋକ ୪୪/୪୫ ବର୍ଷ ବୟସରେ ଇହଧାମରୁ ବିଦାୟ ନେଲା । ମୋ ସାନ ଭଉଣୀଟି (ପାର୍ବତୀ) ମଧ୍ୟ ଇହଧାମରୁ ବିଦାୟ ନେଲା । ଏହିପରି କାଳଚକ୍ରରେ ବୋଉ, ବଡଭାଇ, ସ୍ୱଜନ, ଭଉଣୀ, ଭିଣୋଇ, ଭଣଜା,ବଡ ମାମୁଁ, ବଡ ମାଇଁ, ସାନମାମୁଁ, ମଉସା, ମାଉସୀ, କେତେ ବନ୍ଧୁ, ପଡୋଶୀ ଆଦି ପ୍ରିୟ ଜନ ଗଲେଣି । ମୁଁ ସେହି ଚକ୍ରକୁ ଅପେକ୍ଷା କରି ରହିଛି ମାତ୍ର ।



# ମୋ ସକଳ ସ୍ନେହର କଳିକା : ମୋ ଅଂଚଳର ବାଳିକା

୧୯୮୮ ମସିହା । ମୁଁ ଗାଁକୁ ଯାଇଥାଏ । ପାଖ ଗାଁ 'ରାଉତବର୍ଦ୍ଧନି'ର ବ୍ରଜବନ୍ଧୁ ମହାନ୍ତି, ଯେ କି ଏକ ମାଇଁନର ସ୍କୁଲର ପ୍ରଧାନ ଶିକ୍ଷକ ଚାକିରିରୁ ଅବସର ନେଇ ଘରେ ଥାଆନ୍ତି, ଦିନେ ମୋ ପାଖକୁ ଆସିଲେ ଏବଂ କହିଲେ- "ଧନୀ, ଆୟତନ କନିକା ହାଇସ୍କୁଲରେ ଛାତ୍ରଛାତ୍ରୀ ସଂଖ୍ୟା ଦୁଇଗୁଣରୁ ଅଧିକ ହେଲାଣି । ପ୍ରତ୍ୟେକ ଶ୍ରେଣୀରେ ଦୁଇଟି ଲେଖାଏଁ ସେକ୍‌ସନରେ ୭୦-୮୦ ଲେଖାଏଁ ପିଲା ପଢୁଛନ୍ତି । ଏଥିରେ କି ପାଠ ପଢାହେବ ? । ତୃତୀୟ ସେକ୍‌ସନ ପାଇଁ ତ ସରକାର ଆଉ ମଞ୍ଜୁର ଦେଉ ନାହାନ୍ତି । ତେଣୁ ଆୟତନରେ ଗୋଟିଏ ବାଳିକା ହାଇସ୍କୁଲ କରିବାକୁ ଚେଷ୍ଟାକର ।"ସେସମୟରେ କେନ୍ଦ୍ରସରକାର ଦେଶରେ ବାଳିକା ଶିକ୍ଷାର ପ୍ରସାର ନିମନ୍ତେ ଏବଂ ସ୍ୱତଂତ୍ର ବାଳିକା ହାଇସ୍କୁଲମାନ ଖୋଲିବା ନିମନ୍ତେ ରାଜ୍ୟସରକାରଂକୁ ପ୍ରଚୁର ଆର୍ଥିକ ସହାୟତା ଦେଉଥାଆନ୍ତି, ତେଣୁ ବାଳିକା ହାଇସ୍କୁଲ ମାନ ଆବଶ୍ୟକସ୍ଥଳେ ଖୋଲାଯାଉଥାଏ । ଆମ ଗାଁ 'ଆୟତନ' ରେ ବାଳିକା ହାଇସ୍କୁଲଟିଏ କରିବାକୁ କିପରି ପୂର୍ବରୁ ପ୍ରଚେଷ୍ଟା କରାଯାଇଥିଲା, କିଂତୁ ସଫଳ ହୋଇନଥିଲା, କିପରି କେତେକ ସ୍ୱଚ୍ଛଳ ବ୍ୟକ୍ତିଂକୁ ଆର୍ଥିକ ସାହାଯ୍ୟ ମଗାଯାଇଥିଲା, ଯେ କୋଡିଏ ହଜାର ଟଂକା ଦେବ, ତାଂକ ନାମରେ ବାଳିକା ହାଇସ୍କୁଲଟିଏ ନାମିତ ହେବ, ଏହି ପ୍ରସ୍ତାବ କେତେକ ଆର୍ଥିକ ସ୍ୱଚ୍ଛଳ ବ୍ୟକ୍ତିଂକୁ ଦିଆଯାଇଥିଲା, କିଂତୁ କେହି ରାଜି ହୋଇ ନଥିଲେ, ସେସବୁ କଥା ମଧ୍ୟ ବ୍ରଜବଂଧୁ ବାବୁ ମୋ ଆଗରେ ବର୍ଣ୍ଣନା କଲେ । ବଡଭାଇ ଓ ମାଆଂକୁ ହରାଇ ମୁଁ

ସେ ସମୟରେ ନିତାନ୍ତ ବ୍ୟଥିତ ହୃଦୟରେ ଥାଏଁ । ବାଳିକା ହାଇସ୍କୁଲ ପ୍ରସ୍ତାବଟି ଶୁଣି ମୁଁ ଆବେଗ ପ୍ରବଣ ହୋଇଗଲି । ଆଗରୁ ମଧ୍ୟ ମୋର ଇଚ୍ଛା ଥିଲା । ତେଣୁ ମୁଁ ବ୍ରଜବଂଧୁ ବାବୁଂକୁ ପରାମର୍ଶ ଦେଲି, "ଜନସାଧାରଣଂକର ଗୋଟିଏ ସଭା ଡକାନ୍ତୁ ଏବଂ ସଭାରେ ବିଷୟଟି ଉତ୍‌ଥାପନ କରନ୍ତୁ ।"

କଟକ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ମାସିକ ଅଶି ଟଂକା ବେତନରେ ପଣ୍ଡିତ ଚାକିରି ଆରମ୍ଭ କରିବା ଦିନଠାରୁ ମୋ ମନରେ ଗୋଟିଏ ଭାବନା ଥିଲା. "ମୁଁ ତ ଶିକ୍ଷକଟିଏ । ଜୀବନରେ ମୋ ପଇସାରେ କୌଣସି ସାଧାରଣହିତକର କାର୍ଯ୍ୟ କରିପାରିବି ନାହିଁ । ତଥାପି ଜୀବନର ଶେଷଭାଗରେ ଯଦି ସଂଭବ ହୁଏ, ତେବେ ବାଳିକାବିଦ୍ୟାଳୟଟିଏ କରିବାକୁ ଚେଷ୍ଟା କରିବି ।"ଏହା ସହିତ ମୋ ବୋଉର ମୂଳରୁ ପ୍ରେରଣା ମଧ୍ୟ ଥିଲା । ଏହି ଉଦ୍ଦେଶ୍ୟରେ ମୁଁ ବେତନ ପାଇବା ଦିନଠାରୁ ପ୍ରତିମାସରେ ବେତନରୁ ସାମାନ୍ୟ କିଛି କିଛି ସଂଚୟ କରି ରଖୁଥିଲି । ଚାକିରିରୁ ଅବସର ନେଲାବେଳକୁ ତାହା ଏକଲକ୍ଷ ତିରିଶି ହଜାର ଟଂକା ହୋଇଥିଲା । ଖାତାଦେଖା ବା ଅନ୍ୟ କୌଣସି ସୂତ୍ରରୁ ଯାହା ମିଳୁଥିଲା, ସେଥିରୁ କିଛି ଅଂଶ ମଧ୍ୟ ସେହି ପାଣ୍ଠିରେ ମିଶାଉଥିଲି ।

ଉକ୍ତ ପାଣ୍ଠିର ବିନିଯୋଗରେ ଆମ ଗାଁ ରେ ଗୋଟିଏ ଡାକ୍ତରଖାନା ଆରମ୍ଭ କରିବା ପାଇଁ ମଧ୍ୟ ବେଳେବେଳେ ମୁଁ ଭାବୁଥିଲି । କିଂତୁ ସ୍ୱାସ୍ଥ୍ୟବିଭାଗରେ କେହି ଉଚ୍ଚ କର୍ମକର୍ତ୍ତା ମୋର ପରିଚିତ ନଥିଲେ । ରାଜନୈତିକ ନେତା ମଧ୍ୟ କେହି ସହାୟକ ନଥିଲେ । ତା ଛଡା ପୁଣ୍ୟାତ୍ମା ଡାକ୍ତର ଶ୍ରୀରାମଚନ୍ଦ୍ର ସୂତାର ଲୋକମାନଙ୍କଂର ଚିକିତ୍ସା ଆବଶ୍ୟକତା ପୂରଣ କରୁଥିଲେ । ତେଣୁ ସେଭଳି ଚିନ୍ତାରୁ ନିବୃତ୍ତ ହେଲି । ଆମ ଅଂଚଳର କେତେଗୁଡିଏ ଶିକ୍ଷାନୁଷ୍ଠାନଗଠନର ଉଦ୍ୟୋକ୍ତାମାନଙ୍କୁଂ ସାହାଯ୍ୟ କରି ମୁଁ କିଛି ଅନୁଭୂତି ମଧ୍ୟ ଲାଭ କରିଥିଲି । ମୁଁ ଯେତେବେଳେ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲି, ମୋର ବାଲ୍ୟବଂଧୁ ଶ୍ରୀ ଗୟାଧର ପଲେଇ ତାଂକ ଗ୍ରାମରେ (କାଟଣାଠାରେ) ଗୋଟିଏ ହାଇସ୍କୁଲ ଆରମ୍ଭ କରିଥିଲେ । ସେ ସ୍କୁଲ କାମରେ ଆସି ମୋ ପାଖରେ ରହୁଥିଲେ । ମୁଁ ତତ୍‌କାଳୀନ ଅବିଭକ୍ତ କଟକ ଜିଲାର ସ୍କୁଲ ସମୂହର ଇନିସ୍‌ପେକ୍‌ଟର ଶ୍ରୀ ଗୋପାଳକୃଷ୍ଣ ପଟ୍ଟନାୟକଙ୍କୁ ସଂଗରେ ନେଇ କାଟଣା ହାଇସ୍କୁଲ ପରିଦର୍ଶନ କରାଇଥିଲି । ସ୍କୁଲଟିର ଆରମ୍ଭ ଅବସ୍ଥାରେ କିଛି ନଥିଲା । ଖାଲୁଆ ପାଣିଘେର ଭିତରେ ଗୋଟିଏ ଛୋଟିଆ ଢିପ ବଂଧାଯାଇ ଛୋଟିଆ ଚାଳଘରଟିଏ ହୋଇଥିଲା ମାତ୍ର । ଆସବାବପତ୍ର କିଛି ନ ଥିଲା । ଗୋପାଳବାବୁ ଅଷ୍ଟମ ଶ୍ରେଣୀ ମଂଜୁରି ଦେବାକୁ ନିତାନ୍ତ କୁଂଠିତ ହେଉଥିଲେ, ମୋ ଅନୁରୋଧରେ ଦେଇଥିଲେ । ରାଜକନିକା ଏସ୍.ଏନ୍.

କଲେଜର ଆରମ୍ଭ ଅବସ୍ଥାରେ ମୁଁ ତାହାର ସଭ୍ୟ ଓ ସଭାପତି ମଧ୍ୟ ଥିଲି । ମୋ ଗାଁ ରେ କନିକା ହାଇସ୍କୁଲର ପ୍ରତିଷ୍ଠାରେ ମଧ୍ୟ ମୁଁ ଉଦ୍ୟୋକ୍ତାମାନଂକ ମଧ୍ୟରେ ଜଣେ ଥିଲି । ମୁଖ୍ୟ ଉଦ୍ୟୋକ୍ତା ଥିଲେ ଡାକ୍ତର ଶ୍ରୀରାମଚନ୍ଦ୍ର ସୂତାର । କଟକ ସିଟି କଲେଜର ଅଧ୍ୟକ୍ଷ ଭାବେ କଲେଜ ଗଠନରେ ବହୁ ଅଭିଜ୍ଞତା ଲାଭ କରିଥିଲି । ଏହିସବୁ ଅଭିଜ୍ଞତା ଓ ଅନୁଭୂତିକୁ ନେଇ ମୁଁ ବାଳିକା ହାଇସ୍କୁଲଟିଏ କରିପାରିବି ବୋଲି ଭାବିଲି ।

ସେତେବେଳେ ବାଳିକାହାଇସ୍କୁଲର ପ୍ରତିଷ୍ଠା ପାଇଁ ସରକାରଂକ ପକ୍ଷରୁ ପ୍ରୋତ୍ସାହନ ଦିଆଯାଉଥିଲା । ତିନିଟି ମାତ୍ର ରେଗୁଲାର ବ୍ୟାଚ୍ ପରୀକ୍ଷା ଦେଲା ପରେ ବାଳିକା ହାଇସ୍କୁଲ ଗୁଡ଼ିକ ଅନୁଦାନ ପାଉଥିଲେ । ମଂଜୁରିପ୍ରାପ୍ତ ବାଳିକା ହାଇସ୍କୁଲରେ ତିନି କିଲୋମିଟର ଭିତର ଅଂଚଳର ବାଳିକାମାନେ ପଢ଼ିବେ ବୋଲି ନିୟମ ମଧ୍ୟ ହୋଇଥିଲା ।

ବାଳିକା ହାଇସ୍କୁଲର ପ୍ରତିଷ୍ଠା ପାଇଁ ପାଂଚ ଜଣ ବିଶିଷ୍ଟ ବ୍ୟକ୍ତିଂକ ସ୍ୱାକ୍ଷରରେ ଗୋଟିଏ ସାଧାରଣ ସଭା ଡକା ହେଲା । ସେମାନଂକ ମଧ୍ୟରେ ଜଣେ ଥିଲେ କନିକା ହାଇସ୍କୁଲର ପ୍ରଧାନ ଶିକ୍ଷକ । ସେ ଜଣେ ଉତ୍ତମ ସ୍ୱଭାବର ଲୋକଥିଲେ । ତତ୍‌ପୂର୍ବରୁ ସେ ମଧ୍ୟ ମୋ ସଂଗେ ବାଳିକା ହାଇସ୍କୁଲଟିଏ ପାଇଁ କଥା ହୋଇଥିଲେ ଏବଂ ତାହା ସେ ଚାହୁଁଥିଲେ । ସଭା ଅନୁଷ୍ଠିତ ହେଲା । ମୋତେ ମଧ୍ୟ ସେଠାକୁ ଆମଂତ୍ରଣ କରାଯାଇଥିଲା । ସବୁଲୋକ ଆନନ୍ଦ ପ୍ରକାଶ କଲେ । ମୁଁ ପ୍ରାଥମିକ ଆର୍ଥିକ ସାହାଯ୍ୟ ଦେବି ଏବଂ ମଂଜୁରି ମିଳିବା ଦିଗରେ ସାହାଯ୍ୟ କରିବି ବୋଲି କହିଲି । ତଥାପି ଆଉ ଥରେ ବେଶୀ ଲୋକଂକର ସଭା ଡାକିବାକୁ ପରାମର୍ଶ ଦେଲି । ତଦନୁସାରେ ଆଉ ଦିନେ ସଭା ହେଲା । ବେଶୀ ଲୋକ ଆସିଲେ । ମୁଁ ପ୍ରଥମେ ୫୫ ହଜାର ଟଂକା ଦେବାକୁ ଏବଂ ପରେ ଯଥାସଂଭବ ସାହାଯ୍ୟ କରିବାକୁ କହିଲି । ଆବାହକମାନଂକ ପକ୍ଷରୁ ସ୍କୁଲର ନାମ ପ୍ରସ୍ତାବ ଦିଆଗଲା 'କମଳା ମଡେଲ ଗାର୍ଲସ ହାଇସ୍କୁଲ' ଏବଂ ଏହା ସର୍ବସମ୍ମତ ଭାବେ ଗୃହୀତ ହେଲା ।

ପରିଚାଳନା କମିଟିଟିଏ ଗଢାହେଲା । ମୁଁ କମିଟିରେ ରହିଲିନାହିଁ । ସଭାପତି ରହିଲେ ଆମ ଅଂଚଳର ସର୍ବମାନ୍ୟ ବ୍ୟକ୍ତି ଉଦାରମନା ଡାକ୍ତର ଶ୍ରୀ ରାମଚନ୍ଦ୍ର ସୂତାର । ସଂପାଦକ ହେଲେ କନିକାର ଜଣେ ଧୀରସ୍ଥିର, ଉତ୍ତମ ସ୍ୱଭାବର ବ୍ୟକ୍ତି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ।

୧୯୮୮ ଜୁଲାଇ ମାସରୁ ବିଦ୍ୟାଳୟ ଆରମ୍ଭ ହେଲା । ପ୍ରଥମେ ଚାଲିଲା କନିକା ହାଇସ୍କୁଲରେ ସକାଳୁ ୧୧ଟା ପର୍ଯ୍ୟନ୍ତ । ୧୧ଟା ପରେ ବାଳକମାନଂକ କ୍ଲାସ୍ ଚାଲିଲା ।

ବର୍ଷାଋତୁ ପରେ ବାଳିକା ହାଇସ୍କୁଲ ଘର ତିଆରି ପାଇଁ ଇଟା ପୋଡା ହେଲା । ମୁଁ କଟକରୁ ଡଂଗାରେ କୋଇଲା ପଠାଇଲି । କବାଟ, ଝରକା, ଛାତ ପ୍ରଭୃତି ପାଇଁ ଜାରକାରୁ ୩୦ ହଜାର ଟଂକାର କାଠ ପଠାଇଲି । ଇଟାକାଂଥ ଓ ଚାଳଛପର ଘର କରାଗଲା । ନୂଆଘରେ ବାଳିକା ସ୍କୁଲ ଚାଲିଲା । ତା'ପର ଦୁଇ ବର୍ଷରେ ମାଧ୍ୟମିକ ଶିକ୍ଷା ପରିଷଦଂକଠାରୁ ନବମ ଓ ଦଶମ ଶ୍ରେଣୀ ପାଇଁ ମଂଜୁରି ମିଳିଲା । ବାଳିକା ବିଦ୍ୟାଳୟଟି ଚନ୍ଦ୍ରକଳା ପରି ବଢିଲା । ପ୍ରତିବର୍ଷ ସ୍କୁଲର ପୁରସ୍କାର ବିତରଣୀ ସଭା ହେଲା । ଶିକ୍ଷାବିଭାଗ ଶାସନସଚିବ, ସ୍କୁଲ ଶିକ୍ଷା ଡି.ପି ଆଇ., ମାଧ୍ୟମିକ ଶିକ୍ଷାପରିଷଦ ସଭାପତି, ଅବିଭକ୍ତ କଟକ ଜିଲ୍ଲା ଜିଲ୍ଲାପାଳ, କେନ୍ଦ୍ରାପଡା ଜିଲାପାଳ, ସର୍କଲ ଇନିସ୍‌ପେକ୍ଟର, ସ୍ଥାନୀୟ ତହସିଲଦାର, ବି.ଡି.ଓ. ପ୍ରମୁଖ ସରକାରୀ କର୍ମକର୍ତ୍ତାମାନେ ସ୍କୁଲ ପରିଦର୍ଶନ କରି ଆନନ୍ଦ ପ୍ରକାଶ କଲେ ।

କିନ୍ତୁ ୨/୩ ଜଣ ଅସହିଷ୍ଣୁ ଖଳଲୋକ ଖେଳ ଆରମ୍ଭ କରିଦେଲେ । ମୁଖ୍ୟ ଖଳକୁ କମିଟିରେ ନିଆଯାଇଥିଲା, କିଂତୁ ସେ କମିଟିକୁ ଆସିଲା ନାହିଁ । ସେମାନେ ସ୍କୁଲ ବିରୁଦ୍ଧରେ ଦୁର୍ନାମ ରଟନା କଲେ । ସ୍କୁଲଟିକୁ ଭାଂଗିବା ପାଇଁ ଚେଷ୍ଟା କଲେ । 'ଆୟତନ' ଠାରେ ଗୋଟିଏ ହାଟ ଚଳାଇ, ବିକ୍ରେତାମାନଂକଠାରୁ ଯତ୍ କିଂଚିତ୍ ବଟି ସଂଗ୍ରହ କରି ବାଳିକା ବିଦ୍ୟାଳୟର ଦୈନନ୍ଦିନ ଖର୍ଚ୍ଚ ତୁଳାଇବା ପାଇଁ ଯୋଜନା କରିଥିଲି । ଏଥିପାଇଁ ଗୋଟିଏ ହାଟ (ଗୋରୁ ହାଟ ମଧ୍ୟ) ମଂଜୁର କରାଇଥିଲି । କେନ୍ଦ୍ରାପଡାର ତତ୍‌କାଳୀନ ଏସ୍.ଡି.ଓ. ଶ୍ରୀ ବିଜୟଚନ୍ଦ୍ର ଜେନା ଓ.ଏ.ଏସ୍ . ମୋର ଛାତ୍ର ଥିଲେ ଏବଂ ଏଦିଗରେ ମୋତେ ସାହାଯ୍ୟ କରିଥିଲେ । 'ଆୟତନ' ଠାରେ ୫/୬ ପାଳି ହାଟ ଚାଲିଥିଲା । ଗୋରୁଗାଈ କିଣାବିକା ମଧ୍ୟ ହୋଇଥିଲା । କିଂତୁ ଖଳସର୍ପ ମାନେ ହାଟ କରାଇନଦେବାପାଇଁ ହାଟରେ ମାଡଗୋଳ କରାଇଥିଲେ । ହାଟରେ ନିରାପତ୍ତା ନାହିଁ ବୋଲି ବେପାରୀମାନଂକର ଧାରଣା ହେଲା । ସେମାନେ ଆଉ ଆସିଲେ ନାହିଁ । ହାଟ ଭାଂଗିଗଲା ।

ବାଳିକା ହାଇସ୍କୁଲ ଆଗରେ ଗୋଟିଏ ବଡ ଗଡିଆ ଥିଲା । ତାହାକୁ ପୋତାଇ ଗୋଟିଏ ଖେଳ ପଡିଆ ପ୍ରସ୍ତୁତ କରାଇବାକୁ ମୁଁ କ୍ରୀଡା ଓ ସଂସ୍କୃତି ବିଭାଗ ମଂତ୍ରୀ ଶ୍ରୀ ଶରତ କରଙ୍କ ଦ୍ୱାରା ୫୦ ହଜାର ଟଂକା ମଂଜୁର କରାଇଥିଲି । ତା' ପରେ ଆଉ ୫୦ ହଜାର ଟଂକା ମଂଜୁର ହେବାର ଯୋଜନା ଥିଲା । ତଦ୍ୱାରା ଠାକୁରପୋଖରୀଟିର ପଂକୋଦ୍ଧାର କରାଯାଇ ଉତ୍ତମ ପୋଖରୀଟିଏ ମଧ୍ୟ ହୋଇଥାଆନ୍ତା । କିଂତୁ ଖଳମାନେ ତାହା କରାଇଦେଲେ ନାହିଁ । ଗୁଣ୍ଡାମି ସୃଷ୍ଟି କରାଇଲେ । ଫଳରେ ଟଂକା ବି.ଡି.ଓ.ଙ୍କ

ପାଖରେ ତିନିବର୍ଷ କାଳ ପଡିରହି ଶେଷରେ ତାଂକ ଦ୍ୱାରା ଯେନତେନ ପ୍ରକାରେଣ ଅଧାପ୍ରାୟ ପୋତାହେଲା ଏବଂ ବିଳମ୍ବ ହେତୁ ଆଉ ଟଂକା ମଂଜୁର ହେଲାନାହିଁ ।

କନିକା ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଉତ୍ତମ ଲୋକ । କିନ୍ତୁ ବାଳିକା ସ୍କୁଲଟିର ଦୁର୍ଭାଗ୍ୟ ଯେ ସେ ମଧ୍ୟ କ୍ଷମତାଶାଳୀ କୁଚକ୍ରୀଂକ ପ୍ରଭାବରେ ବିଭ୍ରାନ୍ତ ହୋଇଗଲେ । ସେମାନେ ବାଳିକା ସ୍କୁଲଟିକୁ ଭାଂଗିଦେବା ପାଇଁ ଚକ୍ରାନ୍ତ ଚଳାଇଲେ । ପ୍ରଚାର କଲେ ଯେ ବାଳିକା ସ୍କୁଲ ଏକ ବ୍ୟକ୍ତିଗତ ସ୍କୁଲ । ସେଥିରେ ଭଲ ପଢା ହେଉନାହିଁ । ଫଳରେ ଅଭିଭାବକ ମାନେ ସେମାନଂକର ଝିଅଙ୍କୁ ଆଉ ବାଳିକାସ୍କୁଲରେ ପଢାଇଲେନାହିଁ । ଛାତ୍ରୀସଂଖ୍ୟା କ୍ରମଶଃ ହ୍ରାସ ପାଇବାରେ ଲାଗିଲା । ତେଣେ ପାଖ ହାଇସ୍କୁଲରେ ନିୟମାନୁମୋଦିତ ସଂଖ୍ୟାଠାରୁ ବହୁ ଅଧିକ ଛାତ୍ରଛାତ୍ରୀଂକୁ ନିଆଗଲା । ୩/୪ ବର୍ଷ ମଧ୍ୟରେ ଛାତ୍ରୀ ଅଭାବରୁ ବାଳିକା ସ୍କୁଲଟି ଭାଂଗିବାକୁ ବସିଲା ।

ମୁଁ ବାଳିକା ସ୍କୁଲଟିର ପରିଚାଳନା ସମିତିରେ ନଥିଲି । ତଥାପି ପ୍ରତୀକାର କରାଯିବା ଉଚିତ ବୋଲି ଅନୁଭବ କଲି । କେନ୍ଦ୍ରାପଡା ଶିକ୍ଷାମଣ୍ଡଳ ଅଧିକାରୀଂକ ନିକଟକୁ ପତ୍ର ଲେଖାହେଲା । ଶିକ୍ଷାମଣ୍ଡଳ ଅଧିକାରୀ କନିକା ହାଇସ୍କୁଲର ପ୍ରଧାନ ଶିକ୍ଷକଂକୁ ନିୟମାନୁମୋଦିତ ସଂଖ୍ୟାରୁ ଅଧିକ ଆଡମିଶନ ନ କରିବାପାଇଁ ନିର୍ଦ୍ଦେଶ ଦେଲେ । ପ୍ରଧାନ ଶିକ୍ଷକ ଖଳମାନଂକ ପ୍ରରୋଚନାରେ ଶିକ୍ଷାମଣ୍ଡଳ ଅଧିକାରୀଙ୍କ ନିର୍ଦ୍ଦେଶକୁ ମାନିଲେ ନାହିଁ । ଖଳଲୋକ ଗୋଟିଏ ବାରବର୍ଷର ବାଳିକାକୁ ଶିଖାଇ ଅନଶନରେ ବସାଇଲେ । ବାଳିକାଟି ବସି ରହି କହିଲା- "ମୁଁ ବାଳିକା ସ୍କୁଲରେ ପଢ଼ିବି ନାହିଁ ।" ଶହଶହ ଲୋକ ଜମାହେଲେ । ଗୋଟିଏ କୌତୁକିଆ ପରିବେଶ ସୃଷ୍ଟି ହେଲା । ମୁଁ ସ୍କୁଲ କରି ପ୍ରଚୁର ଟଂକା ସଂଗ୍ରହ କରୁଛି ବୋଲି ଧାରଣା ମଧ୍ୟ ଦିଆଗଲା । ଅଥଚ ସେତେବେଳକୁ ମୁଁ ମୋହାତରୁ ଦୁଇଲକ୍ଷରୁ ଉର୍ଦ୍ଧ୍ୱ ଟଂକା ଦେଇସାରିଥିଲି ।

ବାଳିକା ସ୍କୁଲଟି ସେତେବେଳେ ଚାଳ ଛପର ଘରେ ହେଉଥିଲା । ସୂଚନା ପାଇଲି ତାହାକୁ ପୋଡିଦିଆଯିବ । 'କନିକା ହାଇସ୍କୁଲ'ର ଆରମ୍ଭ ସମୟରେ ମଧ୍ୟ ଚାଳଘର ଥିଲା । ତାହାକୁ ପୋଡିଦିଆଯାଇଥିଲା । ସେସମୟର କଥା ମନେପଡି ମୋତେ ଘୋର ଚିନ୍ତାଗ୍ରସ୍ତ କଲା । ଆମେ ବାଳିକା ସ୍କୁଲଟିକୁ ରାତିରେ ଜଗାଇବା ସଂଗେ ସଂଗେ ପ୍ରାୟ ସପ୍ତାହକ ସମୟରେ ଚାଳ ଛାତକୁ ଉଠାଇ କରୁଗେଟେଡ୍ ସିଟ୍ ଛାତ କରିଦେଲୁଁ । ସେତେବେଳର ଅବିଭକ୍ତ କଟକ ଜିଲାର ଉପଜିଲାପାଳ ଶ୍ରୀ ଗୌରୀଶଂକର ମହାପ୍ରଶସ୍ତ ମୋତେ ଖୁବ୍ ସାହାଯ୍ୟ କରିଥିଲେ । ସେ କରୁଗେଟେଡ୍ ସିଟ୍ ଗୁଡିଏ ଯୋଗାଇ ଦେଇଥିଲେ ।

କେନ୍ଦ୍ରାପଡା ସି.ଆଇ. ଜଣକ ପରେ ଜଣେ ତିନିଜଣ ଆସିଲେ ଏବଂ ନିଜ ନିଜ କାର୍ଯ୍ୟକାଳ ଭିତରେ 'କନିକା ହାଇସ୍କୁଲ'ର ପ୍ରଧାନ ଶିକ୍ଷକଂକୁ ନିୟମାନୁମୋଦିତ ସଂଖ୍ୟାଠାରୁ ଅଧିକ ଆଡମିଶନ ନ କରିବା ପାଇଁ ନିର୍ଦ୍ଦେଶ ଦେଲେ । 'କନିକା ହାଇସ୍କୁଲ'ର ପରିଚାଳନା ସମିତିର ସଭାପତି ସ୍ଥାନୀୟ ତହସିଲଦାର ମଧ୍ୟ ବୈଠକ ଡକାଇ ଅଧିକ ଆଡମିଶନ ନକରିବାପାଇଁ ପ୍ରସ୍ତାବ ଗ୍ରହଣ କରାଇଲେ । କିଂତୁ ପ୍ରଧାନ ଶିକ୍ଷକ କାହାରି ନିର୍ଦ୍ଦେଶ ମାନିଲେ ନାହିଁ । ମୁଁ ଅନ୍ୟ ଉପାୟ ନ ଦେଖି ହାଇକୋର୍ଟରେ କେଶ୍ କଲି ।

ପ୍ରଧାନ ଶିକ୍ଷକ ଖଳମାନଂକ ପ୍ରରୋଚନାରେ ଅଧିକ ବିଭ୍ରାନ୍ତ ହୋଇ ମୁଦ୍ରିତ ପତ୍ରଦ୍ୱାରା ଅଭିଭାବକମାନଂକୁ ଡକାଇ ଏକ ସଭା କଲେ । ସଭାରେ ମୋ ବିରୁଦ୍ଧରେ ବିଷ ଉଦ୍‌ଗାର କରାହେଲା । ମୁଁ ଅସହାୟ ହୋଇ ଦୁଇଖଣ୍ଡ ମୁଦ୍ରିତ ପ୍ରଚାରପତ୍ର ହାଇକୋର୍ଟରେ ପେଶ୍ କଲି । ବିଚାର ଚାଲୁଥିବା ସମୟରେ ଏପରି କରାଯିବା ହାଇକୋର୍ଟଙ୍କ ଦୃଷ୍ଟିରେ ବେନିୟମ ବିବେଚିତ ହେଲା ଏବଂ ପ୍ରଧାନ ଶିକ୍ଷକଂକୁ କୋର୍ଟକୁ ଡକାଗଲା । କୋର୍ଟରେ ପ୍ରଧାନ ଶିକ୍ଷକ ଉପସ୍ଥିତ ହୋଇ ନିଃସର୍ତ୍ତ କ୍ଷମା ପ୍ରାର୍ଥନା କଲେ ।

ହାଇକୋର୍ଟରେ ବିଚାର ଚାଲୁଥିବା ଅବସ୍ଥାରେ ଜଣେ ଖଳଲୋକ ମକଦ୍ଦମାରେ ଇଣ୍ଟରଭେନର ହେଲା । ଯେ ଇଣ୍ଟରଭେନର ହେଲା, ମୁଁ ତାର ନିଜ ଶାଳକକୁ କଟକ ସିଟି କଲେଜରେ ଚାକିରି ଦେଇଥିଲି । ଏ ଯୁଗରେ ଏକ ଲକ୍ଷ ଟଂକା ଲାଂଚ ଦେଇଥିଲେ ମଧ୍ୟ ସେଭଳି ପରିପକ୍ୱ ଚାକିରି ମିଳିନଥାନ୍ତା । କିନ୍ତୁ ସେ ଲୋକ କୃତଜ୍ଞ ହେବା ପରିବର୍ତ୍ତେ ଇଣ୍ଟରଭେନର ହୋଇ ମୋ ବିରୁଦ୍ଧରେ ନାନା କୁତ୍ସିତ ଅଭିଯୋଗ ଆଣିଲା । କିଂତୁ କୋର୍ଟ ତା'ର ଅଭିଯୋଗକୁ ଗ୍ରହଣ କଲେନାହିଁ ।

ସଂସାରର ଗତି ଏପରି ଯେ ଭଲ ଲୋକ ମଧ୍ୟ ଖଳ ଲୋକଂକ ଜାଲରେ ପଶିଗଲେ ସହଜରେ ମୁକୁଳି ପାରନ୍ତି ନାହିଁ । ପ୍ରଧାନ ଶିକ୍ଷକ ଭଲଲୋକ ହୋଇ ମଧ୍ୟ ଅଧିକ ଅଧିକ ବିଭ୍ରାନ୍ତ ହୋଇପଡିଲେ । ଥରେ ବାଳିକା ସ୍କୁଲଟିର ପରୀକ୍ଷାକେନ୍ଦ୍ର ପଡିଲା କାଟଣା ହାଇସ୍କୁଲରେ । ପରୀକ୍ଷାର ଦୁଇ ଦିନ ମାତ୍ର ପୂର୍ବରୁ ଖଳମାନେ କେନ୍ଦ୍ରାପଡା ସି.ଆଇ.ଙ୍କ ଉପରେ ରାଜନୈତିକ ଚାପ ପକାଇ କାଟଣା ହାଇସ୍କୁଲର ପ୍ରଧାନ ଶିକ୍ଷକଂକୁ ପରୀକ୍ଷା ପରିଚାଳନା ଦାୟୀତ୍ୱରୁ ହଟାଇ କନିକା ହାଇସ୍କୁଲର ପ୍ରଧାନ ଶିକ୍ଷକଂକୁ ସେହି କେନ୍ଦ୍ରର ପରୀକ୍ଷା ପରିଚାଳକ କରାଇଲେ । ଉଦ୍ଦେଶ୍ୟ ଥିଲା ବାଳିକା ହାଇସ୍କୁଲଟିର ଛାତ୍ରୀମାନଂକୁ କପିବାହାନାରେ ହଇରାଣ କରିବା । ମୁଁ ଏହା ହାଇକୋର୍ଟଙ୍କୁ ଜଣାଇବାରୁ ହାଇକୋର୍ଟ ସି.ଆଇ. ଙ୍କ ନିଯୁକ୍ତିକୁ ରଦ୍ଦ କରିଦେଲେ ଏବଂ କେନ୍ଦ୍ରାପଡା ଜିଲାପାଳଙ୍କୁ ଫାକ୍‌ସଯୋଗେ

ଜଣାଇଦେଲେ । କନିକା ହାଇସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ପରୀକ୍ଷା ଆରମ୍ଭର ୨/୩ ଘଣ୍ଟା ମାତ୍ର ପୂର୍ବରୁ କାଟଣାରୁ ଫେରି ଆସିବାକୁ ପଡ଼ିଲା ।

ଆମେ ବାଳିକା ହାଇସ୍କୁଲ ପାଖରେ ଥିବା ସରକାରୀ ସ୍ୱାସ୍ଥ୍ୟ ବିଭାଗର ଗୋଟିଏ ଭଂଗା ପରିତ୍ୟକ୍ତ କ୍ୱାର୍ଟରକୁ ମରାମତି କରାଇ ସେଥିରେ ୩/୪ ଜଣ ଶିକ୍ଷୟିତ୍ରୀଙ୍କ ରହିବାର ବଂଦୋବସ୍ତ କରାଇଥିଲୁ । ଏଥିପାଇଁ ଆମେ ଅନୁମତି ମଧ୍ୟ ନେଇଥିଲୁଁ । କିଂତୁ ଖଳମାନେ ଡରାଇବାରୁ ଶିକ୍ଷୟିତ୍ରୀମାନେ ତାହାକୁ ଛାଡ଼ିବାକୁ ବାଧ୍ୟ ହୋଇଥିଲେ । ଆମେ ବହୁ କଷ୍ଟରେ ସ୍କୁଲ ହତା ଭିତରେ ଶିକ୍ଷୟିତ୍ରୀମାନଂକ ପାଇଁ ତିନି ବଖରା ବିଶିଷ୍ଟ ଘରଟିଏ ନିର୍ମାଣ କରାଇଲୁଁ ।

ଶେଷରେ ହାଇକୋର୍ଟ ରାୟ ଦେଲେ ଯେ ଆଗେ କମଳା ମଡେଲ ଗାର୍ଲସ୍ ହାଇସ୍କୁଲରେ ନିୟମାନୁମୋଦିତ ସଂଖ୍ୟାରେ ଛାତ୍ରୀ ଗ୍ରହଣ କରାଯିବ ଏବଂ ତା ପରେ କନିକା ହାଇସ୍କୁଲରେ ଛାତ୍ରୀ ଗ୍ରହଣ କରାଯିବ । ଏହାକୁ କେନ୍ଦ୍ରପଡା ସି.ଆଇ. ଶ୍ରୀ ଚିତ୍ତରଞ୍ଜନ ଦାସ କାର୍ଯ୍ୟକାରୀ କରିଥିଲେ ।

ପରୀକ୍ଷା ଦୁର୍ନୀତିକୁ କେନ୍ଦ୍ରକରି କମଳା ମଡେଲ ଗାର୍ଲସ୍ ହାଇସ୍କୁଲର ଦୀର୍ଘମୋକଦମା ଫଳରେ ଓଡିଶାର ହାଇସ୍କୁଲ ପରୀକ୍ଷା କ୍ଷେତ୍ରରେ ଏକ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟିଥିଲା । ତାହାହେଲା ତିନି ସେଟ୍ ପ୍ରଶ୍ନ ପତ୍ରର ପ୍ରଚଳନ । ଜନସ୍ୱାର୍ଥ ସଂବଳିତ ମକଦ୍ଦମାଟି ହାଇକୋର୍ଟରେ ତିନି ବର୍ଷ କାଳ ଚାଲିଥିଲା ଏବଂ ବହୁ ସାକ୍ଷ୍ୟ ପ୍ରମାଣ ଉପରେ ଆଧାରିତ ଥିଲା । ଏ ସଂବଂଧରେ ବହୁ ସଂବାଦପତ୍ରମାନଂକରେ ସଂବାଦ ପ୍ରକାଶ ପାଇଥିଲା । ଗୋଟିଏ ପଟରେ ସ୍କୁଲ ବଂଚାଇବା ଏବଂ ଅନ୍ୟ ପଟରେ ଖଳ ମାନଂକ ସହିତ ଲଢ଼ିବା, ଏଥିରେ ମୁଁ ନାକେଦମ୍ ହୋଇଯାଇଥିଲି ।

୧୯୯୯ ମସିହାରେ ଓଡିଶାରେ ଯେଉଁ ଭୀଷଣ ମହାବାତ୍ୟା ହୋଇଥିଲା, ସେଥିରେ ବାଳିକା ବିଦ୍ୟାଳୟଟିର ମଧ୍ୟ ବହୁତ କ୍ଷତି ହୋଇଥିଲା । ସେ ସମୟର ରିଲିଫ୍ କମିଶନର ଶ୍ରୀ ଅଜିତ୍ କୁମାର ତ୍ରିପାଠୀ, ଆଇ.ଏ.ଏସ୍. ଲକ୍ଷ୍ନୌ ଓଡିଆ ସମାଜ ପକ୍ଷରୁ ବାଳିକା ବିଦ୍ୟାଳୟଟି ପାଇଁ ଗୋଟିଏ କୋଠାଘର (ବିଦ୍ୟାଳୟ-ବାତ୍ୟା ଆଶ୍ରୟ ସ୍ଥଳୀ) କରାଇ ଦେଇଥିଲେ । ଆଉ ମଧ୍ୟ, ବାଳିକାମାନଂକ ପିଇବା ପାଣି ପାଇଁ ଗୋଟିଏ ଗଭୀର ନଳକୂପ କରାଇ ଦେଇଥିଲେ । ଶ୍ରୀ ରାଜକିଶୋର ମିଶ୍ର, ଆଇ.ଏ.ଏସ୍. ମଧ୍ୟ ଖେଳପଡିଆଟିର ପ୍ରସ୍ତୁତି ପାଇଁ କେନ୍ଦ୍ରସରକାରରୁ ଆର୍ଥିକ ସହାୟତା କରାଇଦେଇଥିଲେ । ଯାହା ଫଳରେ ସଂପୂର୍ଣ୍ଣ ଖାଲ ଗାଡ଼ିଆ ପୋତାଯାଇ ପଡ଼ିଆ ପ୍ରସ୍ତୁତ ହୋଇପାରିଲା ।

ଖେଳପଡିଆଟିରେ ପିଲାମାନେ ଖେଳୁଥିବାରୁ ଏବଂ ବିଭିନ୍ନ ଉତ୍ସବ ଅନୁଷ୍ଠାନ

ହେଉଥିବାରୁ ମୁଁ ଆନନ୍ଦ ଅନୁଭବ କରୁଛି । ସେକ୍ରେଟାରି ଭାବରେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ସ୍କୁଲଟିର ଗଠନ ଦିଗରେ ବହୁତ ସାହାଯ୍ୟ କରିଥିବାରୁ ସ୍କୁଲଟି ତାଂକ ନିକଟରେ କୃତଜ୍ଞ । ଶ୍ରୀ ଅଜିତ୍ କୁମାର ତ୍ରିପାଠୀ ଆଇ.ଏ.ଏସ୍.,ଶ୍ରୀ ରାଜକିଶୋର ମିଶ୍ର, ଅବିଭକ୍ତ କଟକ ଜିଲାପାଳ ଶ୍ରୀ ରଘୁନାଥ ମିଶ୍ରଆଇ.ଏ.ଏସ୍., ଉପଜିଲାପାଳ ଶ୍ରୀ ଗୌରୀଶଙ୍କର ମହାପ୍ରଶସ୍ତ ଓ.ଏ.ଏସ୍., କେନ୍ଦ୍ରାପଡା ଜିଲାପାଳ ଶ୍ରୀ ରାଜକିଶୋର ମିଶ୍ର ଆଇ.ଏ.ଏସ୍., ଆଡ୍‌ଭୋକେଟ୍ ଶ୍ରୀ ମହାଦେବ ମିଶ୍ର, ରାଜକନିକା ତହସିଲଦାର ଶ୍ରୀ ବ୍ରଜବନ୍ଧୁ ଲେଙ୍କା ଓ.ଏ.ଏସ୍. ଓ ଶ୍ରୀ ଗଗନ ବିହାରୀ ସାହୁ ଓ.ଏ.ଏସ୍., ପ୍ରମୁଖ ଉଦାରମନା ଅଫିସରମାନେ ଅନୁଷ୍ଠାନଟିକୁ ବିଭିନ୍ନ ଭାବରେ ସାହାଯ୍ୟ କରିଥିବାରୁ ଅନୁଷ୍ଠାନଟି ସେମାନଙ୍କ ନିକଟରେ କୃତଜ୍ଞ । ଖଳ ଲୋକ ଶତ୍ରୁତା ନକରିଥିଲେ ବାଳିକାସ୍କୁଲଟି ଖୁବ ଆଗେଇଯାଇଥାନ୍ତା ।

ବିଧାତାର ବିଧାନ ଅଲଘ୍ୟ । ବାଳିକା ବିଦ୍ୟାଳୟଟି ଆଉଥରେ ଘୋର ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲା ଏବଂ ମୋତେ ବହୁତ କଷ୍ଟ ଭୋଗିବାକୁ ପଡିଥିଲା । ପବିତ୍ର ସରସ୍ୱତୀପୀଠଟିରେ ଆସକ୍ତି ପଶିଯାଇଥିଲା, ଯାହାର ପରିଣତି ଖୁବ୍ ବିଷମୟ ହୋଇଉଠିଥିଲା । ଜଣେ ମହିଳା ସି.ଆଇ.ଙ୍କର ପ୍ରବଳ ସ୍ୱାର୍ଥାନ୍ଧତା ମଧ୍ୟ ବାଳିକା ସ୍କୁଲଟିକୁ ଧ୍ୱଂସ ମୁଖକୁ ଠେଲିଦେଇଥିଲା ।ସେସବୁ ଅଶୋଭନୀୟ ଘଟଣା ମୁଁ ଉଲ୍ଲେଖ କରିବାକୁ ଚାହୁଁନାହିଁ । ସଂସ୍କୃତରେ ଗୋଟିଏ ଉକ୍ତି ଅଛି-ଶ୍ରେୟାଂସି ବହୁବିଘ୍ନାନି ଅର୍ଥାତ୍ ଭଲ କାମରେ ବହୁତ ବିଘ୍ନ ପଡେ । ଏହା ସ୍ମରଣ କରି ମୁଁ ସେହି ଘୋର ବିଷମ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି । ହାୟ ! ସଂସାର କି ଦାରୁଣ ବିଚିତ୍ର ! ଦୀର୍ଘକାଳର ଘନିଷ୍ଠ ବନ୍ଧୁତା ମଧ୍ୟ ଏମିତି ଅତି ଦୁଃଖଦଭାବରେ ଛିନ୍ନ ହୋଇଯାଏ ।



# ସାହିତ୍ୟ ପ୍ରବୃତ୍ତି, ନମାନେ ନିବୃତ୍ତି

ପିଲାଦିନରୁ ମୋର ସାହିତ୍ୟ ପ୍ରବୃତ୍ତି ଥିଲା । ମୁଁ ପଢିବାକୁ ଓ ଲେଖିବାକୁ ଭଲ ପାଉଥିଲି । ସେତେବେଳେ ସାହିତ୍ୟର ଆଦର ଥିଲା । ସାଧାରଣ ଶିକ୍ଷିତ ଲୋକେ, ବିଶେଷତଃ କିଛି ଶିକ୍ଷାଲାଭ କରିଥିବା ଝିଅବୋହୂମାନେ ଗଳ୍ପ ଉପନ୍ୟାସ ଆଦି ପଢିବାକୁ ଭଲ ପାଉଥିଲେ । କେତେକ ଝିଅ ବିଭା ହୋଇ ଶାଶୁଘରକୁ ଗଲାବେଳେ ଅନ୍ୟାନ୍ୟ ଜିନିଷ ସଂଗରେ କେତେକ ଛୋଟ, ବଡ ବହି ମଧ୍ୟ ନେଉଥିଲେ । ଅଳ୍ପ ଶିକ୍ଷିତା ଝିଅମାନେ କାନ୍ଦଣା, ଭଜନ, ଜଣାଣ, ଚଉତିଶା, ଛାନ୍ଦ ଆଦିର ବହି ନେଉଥିଲେ । ପାଲାରେ ପ୍ରାଚୀନ ସାହିତ୍ୟଚର୍ଚ୍ଚା ହେଉଥିଲା । ପାଲା ଶୁଣିବାକୁ ବହୁ ଲୋକ ଆଗ୍ରହରେ ଯାଉଥିଲେ । କୌଣସି ଗ୍ରାମରେ ପାଲା ହେବାର ଜାଣିଲେ ମୁଁ ନିଶ୍ଚୟ ଯାଉଥିଲି । ପାଲା ଶୈଳୀରେ ମୁଁ ଅନେକ ଛାନ୍ଦ ରଚନା କରିଥିଲି ।

ଶିକ୍ଷାରେ ଓଡିଆ ସାହିତ୍ୟର ଯଥେଷ୍ଟ ଗୁରୁତ୍ୱ ଥିଲା । ପାଠ୍ୟକ୍ରମରେ ଓଡ଼ିଆ ସାହିତ୍ୟ ଓ ବ୍ୟାକରଣ ମୁଖ୍ୟ ବିଷୟ ଥିଲା । କବି ଲେଖକମାନଂକର ଅତ୍ୟନ୍ତ ସାମାଜିକ ମର୍ଯ୍ୟାଦା ଥିଲା । ଏହି କାରଣ ସବୁ ସାହିତ୍ୟ ପ୍ରବୃତ୍ତିକୁ ଉତ୍ସାହିତ କରୁଥିଲା । ମୁଁ ମଧ୍ୟ ଘୋର ପାରିବାରିକ ଜଂଜାଳ, ଦୁଃଖକଷ୍ଟ ଓ ଅଭାବ ଅନାଟନ ମଧ୍ୟରେ ଏହିପ୍ରବୃତ୍ତିକୁ ଛାଡିପାରିନଥିଲି ।

ମୋ ପିଲାଦିନର କେତେକ ଗୀତକୁ ନେଇ ପରମାନନ୍ଦ ଜେନା ନାମକ ଜଣେ ଲୋକ ଚଟିବହି କେତୋଟି ଛାପିଥିଲେ ଭଦ୍ରକର କୌଣସି ପ୍ରେସ୍‌ରେ ଏବଂ ମେଳା ମହୋତ୍ସବରେ ବିକୁଥିଲେ । ସେଗୁଡିକ ଥିଲା ମୋର ପ୍ରଥମ ମୁଦ୍ରିତ ବହି । ତା'ପରେ

ମୁଦ୍ରିତ ବହି ଥିଲା 'ଅଭିଜ୍ଞାନଶାକୁନ୍ତଳମ୍'ର ଓଡିଆ ଅନୁବାଦ । ଛାପିଥିଲେ ତତ୍କାଳୀନ କଟକ ରାଷ୍ଟ୍ରଭାଷାପ୍ରେସ୍ର ପରିଚାଳକ ଶ୍ରୀ ଗୋପୀନାଥ ସାହୁ । ତାହାର ପ୍ରଚ୍ଛଦପଟ୍ଟ ତଥା ଭିତର ଚିତ୍ର ଅଂକନ କରିଥିଲେ ଚିତ୍ରଶିଳ୍ପୀ ଶ୍ରୀ ଗୋପାଳ କାନୁନ୍ଗୋ । ସେତେବେଳେ ମୁଁ ରେଭେନ୍ସା କଲିଜିଏଟ୍ ସ୍କୁଲରେ ସଂସ୍କୃତ ଶିକ୍ଷକ ଥିଲି ।

ବର୍ତ୍ତମାନ ସୁଦ୍ଧା ମୋ ଲିଖିତ ମୁଦ୍ରିତ ପୁସ୍ତକଗୁଡିକ ହେଉଛି -

(୧) ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ, (୨) ଓଡିଆ ଧ୍ୱନିତତ୍ତ୍ୱ ଓ ଶବ୍ଦ ସଂଭାର , (୩) ଓଡିଆ ଭାଷାତତ୍ତ୍ୱ: ବିଚାର ଓ ବିଶ୍ଳେଷଣ, (୪) ଆଧୁନିକ ଓଡିଆ ବ୍ୟାକରଣ, (୫) ସରଳ ଓଡିଆ ଅଭିଧାନ, (୬) ସାହିତ୍ୟତତ୍ତ୍ୱ, (୭) ରମ୍ୟ ଅରମ୍ୟ, (୮) ସେଦିନ ସକାଳ (କବିତା), (୯) ହାସ ହାସିକା, (୧୦) ବୁଲ ମୁକ୍ତ ବିହଙ୍ଗ ପରି, (୧୧) ବଂଧୁଆଳାପ, (୧୨) ସଂସାର ଚିତ୍ର, (୧୩) ଆବେଗ ଓ ଆଦର୍ଶର ଦୁଇଟି ନାଟକ, (୧୪) ଠିକ୍ ପଢ ଠିକ୍ ଲେଖ, (୧୫) ବାଙ୍ମୟ, (୧୬) ଚରୁବାକ୍ ବିଚାର, (୧୭) ଏକ ବୁଦ୍ବୁଦ୍ର କାହାଣୀ ।

ମୋ ଅନୂଦିତ ମୁଦ୍ରିତ ପୁସ୍ତକ ଗୁଡିକ ହେଉଛି -

(୧) କାଳିଦାସ ଗ୍ରଂଥାବଳୀ (ପ୍ରଥମ ଭାଗ), (୨) କାଳିଦାସ ଗ୍ରଂଥାବଳୀ(ଦ୍ୱିତୀୟ ଭାଗ), (୩) ଅଶ୍ୱଘୋଷ ରଚନାବଳୀ, (୪) ସଂସ୍କୃତ କାବ୍ୟନାଟକ ସଂଗ୍ରହ, (୫) ସଂସ୍କୃତ ନାଟକ ତ୍ରୟୀ, (୬) ପଂଚତନ୍ତ୍ର (ମିତ୍ର ଭେଦ), (୭) କର୍ପୂରମଂଜରୀ (୮) ପୁନର୍ଜୀବନ, (୯) ପଠନଦକ୍ଷତା ଶିକ୍ଷଣ (P.C. Burg ଙ୍କ ପ୍ରଣୀତ 'Teaching Efficient Reading'ର ଅନୁବାଦ), (୧୦) ସରଳ ଶ୍ରୀମଦ୍ଭଗବଦ୍ଗୀତା ।

'ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ' ମୋ ପିଏଚ୍.ଡି. ନିବଂଧର ସଂକ୍ଷିପ୍ତ ରୂପ । 'ରମ୍ୟ ଅରମ୍ୟ' 'ବୁଲ ମୁକ୍ତ ବିହଙ୍ଗ ପରି' ଓ 'ବଂଧୁ ଆଳାପ', - ଏ ତିନିଟି ବହି ବ୍ୟଙ୍ଗ-ଲଳିତ ପ୍ରବଂଧ ଗୁଡିକର ସମଷ୍ଟି । ଅଧିକାଂଶ ପ୍ରବଂଧ ମୁଁ ଏକ ନୂତନ କଥନ ଶୈଳୀରେ ଲେଖିଥିଲି । ସାହିତ୍ୟରେ ଏହାର ନାମ ପଡ଼ିଥିଲା 'ରମ୍ୟ କଥନୀ' । 'ବଂଧୁ, ବିଧାୟକ ହେବ ?' 'ଆସ କଲେଜ କରିବା', 'ରଙ୍ଗ ରେ ଭୋଟରଗଣ ଯିବ କୁଆଡେ ?', 'ଭୋଟ୍ ସ୍ୱୟମ୍ବର', 'ଆସିଲା ନିର୍ବାଚନବେଳ', 'ତାର ଚାଲିରେ ଚାଲିରେ ରାଜହଂସ' ଆଦି ଅନେକ ରମ୍ୟ କଥନୀ 'ସମାଜ' ରେ ତଥା ଅନ୍ୟାନ୍ୟ ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା ଏବଂ ହାସ୍ୟବ୍ୟଙ୍ଗ ଚେତନା ସୃଷ୍ଟି କରିଥିଲା । ମୋ ଲିଖିତ ଏବଂ ରେଭେନ୍ସା କଲିଜିଏଟ୍ ସ୍କୁଲର ଛାତ୍ରଂକଦ୍ୱାରା ଅଭିନୀତ ହାସ୍ୟବ୍ୟଙ୍ଗ ସଂସ୍କୃତ ଏକାଙ୍କିକା ଗୁଡିକୁ ନେଇ 'ହାସ ହାସିକା' ବହିଟିଏ ହୋଇଛି ।

'ସମାଜ'ରେ ମୋର ପ୍ରଥମ ଲେଖା ଥିଲା 'ଓଡିଶାର ଅକ୍ଷୟ ବିଭବ ସାହିତ୍ୟ ଦର୍ପଣ' । ତା'ପରେ ମୁଁ ଅନେକ ଲେଖା 'ସମାଜ'ରେ ଲେଖିଥିଲି । ମୋର 'ନାରୀନିର୍ଯାତନା' ସମ୍ପର୍କରେ ଲେଖାଗୁଡିଏ 'ସମାଜ'ରେ ପ୍ରକାଶ ପାଇଥିଲା । ତାହା ଥିଲା ନାରୀମାନଂକ ଦୁଃଖ ଦୁର୍ଦ୍ଦଶା ସଂବନ୍ଧରେ ଓଡିଶାରେ ପ୍ରଥମ ଲେଖା । ସେଉଠୁ 'ନାରୀନିର୍ଯାତନା' ଶବ୍ଦଟି ବହୁଳ ଭାବେ ପ୍ରଚଳିତ ହୋଇଯାଇଥିଲା । ଦୁର୍ଭାଗ୍ୟତଃ ଏଭଳି ଅନେକ ଲେଖା ମୋର ହଜିଗଲା ବା ନଷ୍ଟ ହୋଇଗଲା, ତେଣୁ ପୁସ୍ତକରେ ସନ୍ନିବେଶିତ ହୋଇନାହିଁ । 'ସମାଜ' ଓ ବିଭିନ୍ନ ପତ୍ରପତ୍ରିକାରେ ମୋ ଲିଖିତ ହାସ୍ୟବ୍ୟଙ୍ଗ ଲେଖାମାନ ଅନେକ କବିଲେଖକଙ୍କୁ ପ୍ରଭାବିତ କରିଥିଲା । ସେମାନେ ମଧ୍ୟ ମୋ ଲେଖାରୁ ଖିଅ ଧରି ହାସ୍ୟବ୍ୟଙ୍ଗ ଲେଖାମାନ ଲେଖିଥିଲେ ଏବଂ ଲେଖୁଛନ୍ତି ।

ଅନୁବାଦରେ ମୁଁ ବହୁତ ସମୟ ଦେଇ ବହୁତ ଶ୍ରମ କରିଥିଲି । ମୋର ଗୋଟିଏ ଧାରଣା ଅଛି ଯେ, ପ୍ରତ୍ୟେକ ଲେଖକ ନିଜେ କିଛି ଲେଖିବା ସଂଗେ ସଂଗେ ଅନ୍ୟ ଭାଷାର ଲେଖକଙ୍କର କିଛି ଉତ୍ତମ ରଚନା ଅନୁବାଦ କରିବା ଉଚିତ । ମୋ ଅନୂଦିତ 'ମୁଦ୍ରାରାକ୍ଷସ' 'ମୃଚ୍ଛକଟିକ' ଓ 'ଅଭିଜ୍ଞାନଶାକୁନ୍ତଳ' ପ୍ରଥମେ ଅଲଗା ଅଲଗା ବହି ରୂପେ ପ୍ରକାଶ ପାଇଥିଲା । ପରେ ସେଗୁଡିକୁ ଏକତ୍ର କରି 'ସଂସ୍କୃତ ନାଟକ ତ୍ରୟୀ' ନାମରେ ଖଣ୍ଡିଏ ବହି ହୋଇଛି । ରୁଷୀୟ ଲେଖକ ଲିଓ ଟଲଷ୍ଟୟଂକ Resurrection ଉପନ୍ୟାସର ଓଡିଆ ଅନୁବାଦ 'ପୁନର୍ଜୀବନ' ନାମରେ କରିଥିଲି । ସେଥିରେ ମୋତେ ଏତେ କଠିନ ପରିଶ୍ରମ କରିବାକୁ ପଡିଥିଲା ଯେ ଶେଷ କଲା ପରେ ପରେ ଦୁଃସାଧ୍ୟ ଜ୍ୱରରେ ଆକ୍ରାନ୍ତ ହୋଇପଡିଥିଲି ଏବଂ କଟକ ବଡ ମେଡିକାଲରେ ଭର୍ତ୍ତି ହୋଇ ମାସାଧିକ କାଳ ପରେ ଆରୋଗ୍ୟ ଲାଭ କରିଥିଲି । କାଳିଦାସ ରଚନାବଳୀ, ଅଶ୍ୱଘୋଷ ରଚନାବଳୀ ପ୍ରଭୃତି ସଂସ୍କୃତରୁ ଅନୁବାଦ କରିବାରେ ମଧ୍ୟ ମୋତେ କଠିନ ଶ୍ରମ କରିବାକୁ ପଡିଥିଲା । 'କାବ୍ୟନାଟକ ସଂଗ୍ରହ' (୨୫ ଜଣ ପ୍ରସିଦ୍ଧ ସଂସ୍କୃତ କବି ଲେଖକଙ୍କର ରଚନାରୁ ନିର୍ବାଚିତ ଅଂଶସବୁର ସମଷ୍ଟି) ଅନୁବାଦ କରିବାକୁ ମୋତେ କେନ୍ଦ୍ର ସାହିତ୍ୟ ଏକାଡେମି ଦେଇଥିଲେ । ଏତେ ବଡ କଠିନ କାମକୁ ମୋତେ ୧୨ ହଜାର ଟଂକା ମାତ୍ର ମିଳିଥିଲା । ମୋର ସମଗ୍ର ଜୀବନର ଅନୁଭୂତି ହୋଇଛି, ସାହିତ୍ୟ ପଛରେ ଧାଇଁବା ଅର୍ଥ ହାତରୁ ଖାଇ ଘୋଡା ଆଗରେ ଡେଇଁବା । ତଥାପି କେତେ ଲୋକ ଧାଉଁଛନ୍ତି ଏବଂ ଧାଇଁବେ । ଏବେ ଅନେକ କବିଲେଖକ ପ୍ରକାଶକଂକୁ ନିଜ ହାତରୁ ପଇସା ଦେଇ ବହି ଛାପୁଛନ୍ତି ।

ସାହିତ୍ୟସେବା ପାଇଁ ମୋତେ ଅନେକ ଅନୁଷ୍ଠାନ ସମ୍ମାନସଂବର୍ଦ୍ଧନା ଜ୍ଞାପନ

କରିଥିଲେ । ସୋଭିଏତ୍ ଦେଶ ନେହେରୁ ପୁରସ୍କାର , ଓଡିଶା ସାହିତ୍ୟ ଏକାଡେମି, ପ୍ରାଣନାଥ ସ୍ମୃତି ମଂଜରୀ ଦେବୀ ସାହିତ୍ୟ ସମ୍ମାନ, ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ପାଠକ ସମାଜ, ନୀଳଚକ୍ର, ଜଷ୍ଟିସ୍ ରାଜକିଶୋର ଦାସ ସ୍ମୃତି ସମ୍ମାନ, ବିରୂପାକ୍ଷ କର ସ୍ମୃତି ସମ୍ମାନ, ସାରଳା ସାହିତ୍ୟ ସଂସଦର ପଣ୍ଡିତ ଗୋଦାବରୀଶ ମିଶ୍ର ସ୍ମୃତି ସମ୍ମାନ, ସୂତାହାଟ ସାହିତ୍ୟ ସଂସଦ ସମ୍ମାନ, ଚର୍ଚ୍ଚା (ହେତୁବାଦୀ ସମାଜ ପତ୍ରିକା) ସମ୍ମାନ ଇତ୍ୟାଦି ।

ମୋର ବିଶେଷ ଆନନ୍ଦ ଯେ ମୁଁ ବ୍ୟଙ୍ଗ ଲଳିତ ରଚନା ମାଧ୍ୟମରେ କିଛି ଲୋକହିତକର ଗଣତାଂତ୍ରିକ ପ୍ରଗତିବାଦୀ ଚେତନା ସୃଷ୍ଟି କରିଥିଲି । ମୋର 'ବୌଦ୍ଧିକ ଅଂଧବିଶ୍ୱାସ' ଲେଖା ଖୁବ୍ ଆଲୋଡନ ସୃଷ୍ଟି କରିଥିଲା ।

ପାଠ୍ୟପୁସ୍ତକ ପ୍ରଣୟନ କ୍ଷେତ୍ରରେ ମୁଁ କିଛି କାମ କରିଥିଲି । ଓଡିଶା ସରକାରଙ୍କ ଦ୍ୱାରା ପ୍ରାଥମିକ ସ୍କୁଲ ଶିକ୍ଷାପାଇଁ ପାଠ୍ୟପୁସ୍ତକ ଜାତୀୟକରଣ ହେଲା ଏବଂ ସରକାରଂକ ପକ୍ଷରୁ ପାଠ୍ୟପୁସ୍ତକ ପ୍ରଣୟନ ନିମନ୍ତେ ଏକ ସଂସ୍ଥା ଗଢାହେଲା । ସେହି କମିଟିରେ ଓଡିଆ ବ୍ୟାକରଣ ପୁସ୍ତକ ରଚନା ପାଇଁ ମୋତେ ନିଯୁକ୍ତି ଦିଆ ଯାଇଥିଲା ଏବଂ ପଣ୍ଡିତ କୃଷ୍ଣଚନ୍ଦ୍ର କରଙ୍କୁ ସମୀକ୍ଷକ ଭାବେ ନିଯୁକ୍ତି ଦିଆଯାଇଥିଲା । ପଣ୍ଡିତ କର ଜଣେ ଉଚ୍ଚକୋଟୀର ଭାଷାଜ୍ଞାନୀ ତଥା କବିଲେଖକ ଥିଲେ । ମୁଁ ଯେଉଁ 'ଠିକ୍ ପଢ, ଠିକ୍ ଲେଖ' ନାମକ ବ୍ୟାକରଣ ବହି ଖଣ୍ଡିଏ ଚତୁର୍ଥ ପଂଚମ ଶ୍ରେଣୀପାଇଁ ଲେଖିଥିଲି, ତାହା ପ୍ରାୟ ୪୦ ବର୍ଷ ଧରି ଚାଲିଲା । ଶ୍ରୀଯୁକ୍ତ ରାମକୃଷ୍ଣ ନନ୍ଦଙ୍କ ସଂଗରେ ମଧ୍ୟ ମୁଁ ସାହିତ୍ୟ ଓ ବ୍ୟାକରଣ ବହି ରଚନାରେ କାମ କରିଥିଲି । ରାମକୃଷ୍ଣ ବାବୁ ଏକାଧାରରେ ଜଣେ ସୁଯୋଗ୍ୟ ଶିକ୍ଷକ, ଲେଖକ, କବି ଓ ସଜ୍ଜନ ଥିଲେ ।

ମାଧ୍ୟମିକ ଶିକ୍ଷାପରିଷଦର ଓଡିଆ ବ୍ୟାକରଣ ପୁସ୍ତକର ଲେଖକ ତଥା ସମୀକ୍ଷକ ଭାବରେ ମୁଁ ଓଡିଆ ବ୍ୟାକରଣକୁ ଓ ବ୍ୟାକରଣ ଲିଖନର ଧାରାକୁ ସଂସ୍କୃତ ବ୍ୟାକରଣ ତଥା ଇଂରାଜି ବ୍ୟାକରଣର ଅଂଧାନୁସରଣରୁ ମୁକ୍ତ କରିବାପାଇଁ ଯଥାସଂଭବ ଚେଷ୍ଟା କରିଥିଲି । ବହୁ ବିରୋଧ ସତ୍ତ୍ୱେ ଅନୁନାସିକ ଯୁକ୍ତାକ୍ଷର- ଗୁଡିକର ଅନୁସ୍ୱାରଦିଆ ଲେଖାକୁ (ଅଂଧ, ରଂଜନ, ବାଂଛା ପ୍ରଭୃତି) ଓଡିଆ ବ୍ୟାକରଣ ବହିରେ ବିକଳ୍ପ ସ୍ୱୀକୃତି ଦେଇଥିଲି । ଶିକ୍ଷାସ୍ତରରେ ଗୃହୀତ ହେବାରୁ ଅନୁସ୍ୱାରଦିଆ ଲେଖା ଆଉ ଭୁଲ୍ ବୋଲି ବିବେଚିତ ହେଉନାହିଁ ଏବଂ କ୍ରମଶଃ ଏହା ବିସ୍ତାର ଲାଭ କରୁଛି ।

'ସରଳ ଓଡିଆ ଅଭିଧାନ'ରେ ମଧ୍ୟ ଓଡିଆ ଭାଷାର ମୁକ୍ତ ପ୍ରକୃତିକୁ ଅଧିକ ଗ୍ରହଣ କରିବାପାଇଁ ମୁଁ ଇଚ୍ଛା କରିଥିଲି । କିଂତୁ ଭୟରେ ଅଧିକ ଗ୍ରହଣ କରିପାରିଲି ନାହିଁ ।

ମୋ ମନରେ ଗୋଟିଏ ଅବଶୋଷ ରହିଗଲା ଯେ ମୁଁ ଗୋଟିଏ ଭଲ ଶବ୍ଦତାତ୍ତ୍ୱିକ ଅଭିଧାନ ପ୍ରସ୍ତୁତ କରିପାରିଥାଆନ୍ତି । କିନ୍ତୁ ବିଭିନ୍ନ କ୍ଷେତ୍ରକୁ ଆବେଦନ ନିବେଦନ କରି ବିଫଳ ହେବାରୁ କରିପାରିଲିନାହିଁ ।

ମୋର ଅନୁଭବ, ଶିକ୍ଷକତାରେ ମୁଁ ଯେତେ ଆନନ୍ଦ ଅନୁଭବ କରିଥିଲି, ସାହିତ୍ୟରେ ସେତେ ଆନନ୍ଦ ଅନୁଭବ କରିନଥିଲି । ଶ୍ରେଣୀ ଭିତରକୁ ପଶିଗଲେ ଏବଂ ଛାତ୍ରଛାତ୍ରୀମାନଙ୍କୁ ଦେଖିଲେ ମୁଁ ସବୁ ଦୁଃଖ ଭୁଲିଯାଉଥିଲି । ସାହିତ୍ୟ ପ୍ରବୃତ୍ତି ମୋର ଯେତିକି ହିତ କରିଛି, ତତୋଧିକ ଅହିତ କରିଛି । ଏହା ମୋର ବହୁତ ସମୟ ନଷ୍ଟ କରିଛି ଏବଂ ଶାରୀରିକ, ମାନସିକ ଓ ଆର୍ଥିକ କଷ୍ଟ ମଧ୍ୟ ଦେଇଛି । ଚିନ୍ତା କରି, ନିଜ ହାତରେ ଲେଖି, ନିଜ ହାତରେ ଆଉଥରେ ଭଲ କରି ଲେଖି, ପାଣ୍ଡୁଲିପି ପ୍ରସ୍ତୁତ କରି, ତିନିଥର ପ୍ରୁଫ୍ ସଂଶୋଧନ କରି ବହିଟିଏ ହେଲା ପରେ ପଇସାଟିଏ ନପାଇବା ଏବଂ କେବଳ କବି ଲେଖକ ବୋଲାଇବା ନିର୍ବୋଧତା ଛଡା ଅନ୍ୟ କିଛି ନୁହେଁ । ଅବଶ୍ୟ ବିତ୍ତଶାଳୀ ବା କ୍ଷମତାଶାଳୀ କବିଲେଖକଙ୍କ ପାଇଁ ଏହା ଯଶ ଅର୍ଜନର ପନ୍ଥା ହୋଇପାରେ । ସାହିତ୍ୟର ଆହିତ୍ୟ (ଅହିତ ଭାବ) ମୁଁ ଅନୁଭବ କରୁଥିଲି, ତଥାପି ତା'ପଛରେ ଧାଉଁଥିଲି ।

•••

# କେତେକ ସ୍ମୃତି ଓ ଅନୁଭୂତି

(କ) ମାଧ୍ୟମିକ ଶିକ୍ଷା ପରିଷଦ ଗୋଟିଏ ଓଡିଆ ବ୍ୟାକରଣ ବହି ପ୍ରସ୍ତୁତ କରାଇଥିଲେ । ବହିର ଲେଖକ ତିନିଜଣ ଓ ସମୀକ୍ଷକ ଜଣେ ଥିଲେ । ଗୋଟିଏ ଛାତ୍ର ପାଖରୁ ବହିଟିଏ ମୁଁ ଦେଖିବାକୁ ପାଇଲି । କୌତୂହଳର ସହିତ ଆଖି ପକେଇନେଲି । ବ୍ୟାକରଣ ବୋଲି ଯେଉଁ ବିଦ୍ୟା, ସେଥିରେ ବହୁ ଗୁରୁତର ଭୁଲ ଥିବାର ଦେଖି ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ବ୍ୟାକରଣରେ ସାଧାରଣ ଭାବେ ମଧ୍ୟ ଯାହା ଜଣାଶୁଣା, ସେଥିରେ ମଧ୍ୟ ଭୁଲ୍ ଥିଲା । ଉଦାହରଣ ସ୍ୱରୂପ (୧) 'ସମ୍' ଉପସର୍ଗକୁ 'ସମ' ବୋଲି ଧରାଯାଇ ଉଦାହରଣମାନ ଦିଆଯାଇଥିଲା ଯଥା ସମ+କାଳ=ସମକାଳ, ସମ+ବୟସ=ସମବୟସ ଇତ୍ୟାଦି । (୨) 'ଛାତ୍ରମାନେ ପଢିବାକୁ ଯାଉଛନ୍ତି' ଏହା ଗୋଟିଏ ଯୌଗିକ ବାକ୍ୟ, ଯେହେତୁ ଏଥିରେ ପଢିବା ଓ ଯିବା, ଦୁଇଟି କ୍ରିୟାର ବ୍ୟବହାର ରହିଛି । ଏହିପରି ଅମାର୍ଜନୀୟ ତ୍ରୁଟିମାନ ଲକ୍ଷ୍ୟ କରି ମୁଁ 'ସମାଜ'ରେ ଗୋଟିଏ ଲେଖା ଲେଖିଲି । ତା'ଉପରେ ବହୁତ ବାଦାନୁବାଦ ବାହାରିଲା । ମୁଁ ମୋ ଭଗିନୀପତି ପଣ୍ଡିତ ମହେଶ୍ୱର ନନ୍ଦଙ୍କୁ ଉକ୍ତ ବ୍ୟାକରଣ ବହିରେ ଥିବା ଅନେକ ଭୁଲ ମଧ୍ୟରୁ ପ୍ରାୟ ୨୫ଟିର ତାଲିକା ପ୍ରସ୍ତୁତ କରି ଦେଲି । ମହେଶ୍ୱର ସେ ସବୁକୁ ସଂଶୋଧନ କରାଇବା ଉଦ୍ଦେଶ୍ୟରେ ହାଇକୋର୍ଟଙ୍କୁ ଏକ ଦରଖାସ୍ତ ଦେଲେ ।

ଦରଖାସ୍ତଟି ଜନସ୍ୱାର୍ଥସଂବଳିତ ମକଦ୍ଦମା ରୂପେ ଗୃହୀତ ହେଲା ଏବଂ ହାଇକୋର୍ଟ ବୋର୍ଡକର୍ତ୍ତୃପକ୍ଷଙ୍କୁ ଦୁଇମାସ ମଧ୍ୟରେ ସିଦ୍ଧାନ୍ତ ଜଣାଇବାକୁ ନିର୍ଦ୍ଦେଶ ଦେଲେ । ବୋର୍ଡ କର୍ତ୍ତୃପକ୍ଷ ଲେଖକ ସମୀକ୍ଷକମାନଙ୍କ ସହିତେ କେତେକ ବିଦ୍ୱାନ୍‌ଙ୍କର ଏକ ବୈଠକ ଡକାଇ

ଭୁଲଗୁଡିକ ବିଷୟରେ ଆଲୋଚନା କରାଇଲେ । ମୋତେ ମଧ୍ୟ ଆମନ୍ତ୍ରଣ କଲେ । ମୋ ଦର୍ଶାଇଥିବା ସମସ୍ତ ଭୁଲ୍ ପ୍ରମାଣିତ ହେଲା ଏବଂ ହାଇକୋର୍ଟଙ୍କ ନିର୍ଦ୍ଦେଶକ୍ରମେ ଉକ୍ତ ପୁସ୍ତକ ପ୍ରଚଳନ ବନ୍ଦ କରାଗଲା । ପରେ ବୋର୍ଡ ଏକ ନୂତନ ବ୍ୟାକରଣ ପୁସ୍ତକ ପ୍ରସ୍ତୁତ କରାଇଲେ ।

(ଖ) ଓଡିଶା ସରକାରଂକ ସଂସ୍କୃତି ବିଭାଗ ପକ୍ଷରୁ 'ଓଡିଆ ଶବ୍ଦ ତାତ୍ତ୍ୱିକ ଅଭିଧାନ' ନାମରେ ('ଅ'ଠାରୁ 'ଝ' ପର୍ଯ୍ୟନ୍ତ) ପ୍ରଥମ ଭାଗ ଅଭିଧାନଟିଏ ପ୍ରକାଶିତ ହେଲା । କେତେକ ବିଦ୍ୱାନ ତାହାକୁ ପ୍ରସ୍ତୁତ କରିଥିଲେ । ଅଭିଧାନଟି ମୋ ଦୃଷ୍ଟିକୁ ଆସିଲା । ମୁଁ ଦେଖିଲି, କଦଳୀକୁ ବାଇଗଣ କହିବା ଯାହା, ବହୁ ଶବ୍ଦର ଶବ୍ଦତତ୍ତ୍ୱ ସେହିପରି ଭୁଲ ହୋଇଥିଲା । ବିଦ୍ୱାନ୍‌ମାନେ ସଂସ୍କୃତଜ୍ଞ ହୋଇନଥିବାରୁ ଶବ୍ଦଗୁଡ଼ିକର ଉତ୍ପତ୍ତିବ୍ୟୁତ୍ପତ୍ତି ନିତାନ୍ତ ତ୍ରୁଟିପୂର୍ଣ୍ଣ ହୋଇଥିଲା । ମୁଁ ଏ ସଂବନ୍ଧରେ 'ସମାଜ'ରେ ଏକ ସମାଲୋଚନା ମୂଳକ ଲେଖା ଲେଖିଲି ଏବଂ ତାହାର ପ୍ରସାର ବନ୍ଦ ହେବା ଉଚିତ ବୋଲି ମନ୍ତବ୍ୟ ଦେଲି । କ୍ରମେ ଅଭିଧାନଟି ବହୁ ତ୍ରୁଟିପୂର୍ଣ୍ଣ ବୋଲି ବିବେଚିତ ହେବାରୁ ନିଷିଦ୍ଧ ହୋଇଥିଲା ।

(ଗ) 'ନୀଳଚକ୍ର'ର ମୁଁ ପ୍ରାୟ ଏକ ବର୍ଷ ସଭାପତି ହୋଇଥିଲି । 'ଆସାମ ଗଣପରିଷଦ' ଯେଉଁ ସମୟରେ ଯେଉଁ ଲକ୍ଷ୍ୟ ନେଇ ଉଚ୍ଚାକାଂକ୍ଷୀ ଯୁବକମାନଙ୍କ ଦ୍ୱାରା ଗଢା ହୋଇଥିଲା, ଓଡିଶାରେ 'ନୀଳଚକ୍ର' ସେହି ସମୟରେ ସେହି ଲକ୍ଷ୍ୟ ନେଇ ଗଢା ହୋଇଥିଲା । ସେହି ଲକ୍ଷ୍ୟକୁ ଉଜ୍ଜୀବିତ କରାଇବାକୁ ଚେଷ୍ଟା କଲି, କିଂତୁ ବିଫଳ ହେଲି ।

(ଘ) ମୁଁ କଟକ ମଧୁପାଟଣା 'ଉଦୟଭାନୁ ସାହିତ୍ୟ ସଂସଦ'ର ଆଜୀବନ ସ୍ଥାୟୀ ସଭାପତି ଥିଲି । ଦଶ ବର୍ଷ ସଭାପତି ଦାୟିତ୍ୱ ତୁଲାଇଥିଲି । ସଂସଦରେ ଆଲୋଚନା ଚକ୍ରମାନ ଅନୁଷ୍ଠିତ ହେଉଥିଲା । ସାହିତ୍ୟ, ସଂସ୍କୃତି, ସମାଜସେବା ଆଦି କ୍ଷେତ୍ରର ଅନେକ କୃତୀ ବ୍ୟକ୍ତିଂକୁ ସମ୍ମାନିତ କରାଯାଉଥିଲା । ଶାରୀରିକ ଅସୁସ୍ଥତା ହେତୁ ମୁଁ ଅସାମର୍ଥ୍ୟ ଅନୁଭବ କରି ସ୍ଥାୟୀ ସଭାପତି ପଦରୁ ଇସ୍ତଫା ଦେଲି । ସଂପାଦିକା ଅଧ୍ୟାପିକା ଡକ୍‌ଟର ସଂଘାରାଣୀ ସିଂହ ତଥା ଗୋକୁଳାନନ୍ଦ ନାୟକ ପ୍ରମୁଖ ସଭ୍ୟମାନଙ୍କର ଉତ୍ସାହ ଓ ଆନ୍ତରିକତା ମୁଁ ଭୁଲିପାରିବି ନାହିଁ ।

(ଙ) ରାଜାବଗିଚ୍ଛ ସିଟି କଲେଜରେ ଥିଲାବେଳେ ମୁଁ ଦିନେ ଅଫିସ୍‌ରେ ବସିଥାଏ । ଗୋଟିଏ ବିଶେଷ କାମରେ ମଗ୍ନ ଥାଏ । ଅପରାହ୍ନ ପ୍ରାୟ ଛଅଟା ସମୟ । ଜଣେ ପିଅନ ଛଡା ଆଉ କେହି ନଥାନ୍ତି । ମୋ କାମ ସରିଲା ପରେ ପିଅନ କଲେଜଘର ଗୁଡିକରେ ତାଲା ପକାଇବାକୁ ଗଲା । ଆସି କହିଲା - "ସାର୍, ଚାରି ଜଣ ଗୁଣ୍ଡାଟୋକା

ଦୋଚାଲାରେ ବସି ମଦ ପିଉଛନ୍ତି, ତଳକୁ ଆସୁନାହାନ୍ତି ।" ମୁଁ କଲେଜ ମମତା ଏତେ ଅନୁଭବ କରୁଥିଲି ଯେ ଆଗପଛ କିଛି ବିଚାର ନ କରି ହଠାତ୍ କ୍ରୋଧାନ୍ୱିତ ହୋଇ ସେମାନଙ୍କ ପାଖରେ ପହଂଚିଗଲି ଏବଂ କହିଲି - "ତଳକୁ ଯାଅ, ତାଲା ପଡିବ ।" ଚାରିଜଣ ମୋ ଆଡକୁ ରଗଡେଇ ଚାହିଁଲେ । ମୁଁ ଆହୁରି ଚଢା ଗଳାରେ କହିଲି - "ଯିବ ନା ମୁଁ ଜବରଦସ୍ତି ବାହାର କରିଦେବି ?" ସେମାନେ କିଛିକ୍ଷଣ ପରସ୍ପରକୁ ଚାହିଁଲେ । ମୁଁ ସେହିପରି ଦାଣ୍ଡରେ ଠିଆ ହୋଇଥାଏଁ । କଅଣ ଭାବିଲେ କେଜାଣି, ଧୀରେ ଧୀରେ ତଳକୁ ଓହ୍ଲାଇଗଲେ । ମୋ ଦେହରୁ ଝାଳ ବୋହିଗଲା । ସତରେ ମୋତେ ଯଦି ସେମାନେ ଆକ୍ରମଣ କରିଥାଆନ୍ତେ, ମୁଁ ଶେଷ ହୋଇଯାଇଥାଆନ୍ତି ।

(ଚ) ମୁଁ ସୁନ୍ଦରଗଡ କଲେଜରେ ଥାଏଁ । ଇବ୍ ନଈକୂଳରେ ଗୋଟିଏ ଛୋଟ ପିଅନକ୍ୱାର୍ଟରରେ ରହୁଥାଏଁ । ନିକାଂଚନ ଜାଗା । ପାଖରେ ଗୋଟିଏ ସରକାରୀ ଫଳବଗିଚା । ବଗିଚାର ପଶ୍ଚିମ ପଟକୁ ନଈ, ପୂର୍ବ ପଟକୁ ବିସ୍ତୀର୍ଣ୍ଣ ଖୋଲା ଢିପାଳିଆ ପଡିଆ । ମୁଁ ଯେତେବେଳେ କାଠକଠଉ ମାଡି ସେହି ପଡିଆ ଆଡକୁ ଯାଏ, ବିପରୀତ ଦିଗରୁ କଠଉର ପ୍ରତିଧ୍ୱନି ଶୁଭେ । ନଈ କୂଳେକୂଳେ ଅଣଓସାରିଆ ପାଦଚଲା ରାସ୍ତା କାହିଁ କେଉଁ ଗାଁ ଆଡକୁ ଲମ୍ବିଯାଇଥାଏ । ଦିନେ କଲେଜ ସାରି ପ୍ରାୟ ଛଅଟା ବେଳେ ମୁଁ ସେହି ପାଦଚଲା ରାସ୍ତାରେ ବୁଲୁଛି, ଦେଖିଲି ପ୍ରାୟ ୪୫ ବର୍ଷ ବୟସର ଜଣେ ସ୍ତ୍ରୀଲୋକ ଏବଂ ପ୍ରାୟ ୨୦ ବର୍ଷ ବୟସର ଝିଅଟିଏ କେଉଁ ଗାଁକୁ ଯାଉଛନ୍ତି । ମନେ ହେଲା ଦୁହେଁ ମାଆଝିଅ । ଦୁହିଁଙ୍କର ଦେହର ଆଭା ବିଶେଷତଃ ଝିଅଟିର ଆଭା ଏପରି ଝଟକୁଥିଲା ଯେ ଆଖି ଅପଲକ ଭଳି ହୋଇଗଲା । ଝିଅଟିର ମୁହଁଟି ଥିଲା ସତେ ଯେପରି ଗୋଟିଏ ସୁବର୍ଣ୍ଣ ପଦ୍ମଫୁଲ ! ଆଖିଦୁଇଟି ବିଶାଳ, ଉଜ୍ଜ୍ୱଳ, ଢଳଢଳ । ଦୁହେଁ ଗପସପ ହୋଇଚାଲିଥାଆନ୍ତି । ସଂଧ୍ୟା ହୋଇ ଆସିଲାଣି, କେଉଁ ଗାଁକୁ ଯିବେ, କିଂତୁ ମନରେ ତିଳେମାତ୍ର ଭୟ ନଥାଏ । ଇବ୍ ନଈର ସ୍ୱଚ୍ଛ ଧାର, ପଶ୍ଚିମ ଦିଗ୍‌ବଳୟରେ ଲାଲ୍ ସୂର୍ଯ୍ୟବିମ୍ବର ଲୋହିତ ଆଭା, ଶାନ୍ତ ସୁନ୍ଦର ପରିବେଶ, ତା'ଭିତରେ ସତେ ଯେପରି ମେନକା ଓ ତା' ସଙ୍ଗରେ ଝିଅ ଶକୁନ୍ତଳା ଚାଲିଛନ୍ତି ! ମୁଁ ଅପୂର୍ବ ଭାବାବେଶ ଅନୁଭବ କଲି । ସେମାନେ ମୋ ପାଖ ଦେଇ ଗଲେ । ସେହି ମୁହୂର୍ତ୍ତର ଦିବ୍ୟ ଆନନ୍ଦ ମୁଁ କେବେ ଭୁଲିପାରିବିନାହିଁ ।

ସୁନ୍ଦରଗଡରେ ପ୍ରାୟ ଅଢେଇ ବର୍ଷ ରହିବା ଭିତରେ ମୁଁ ଜାଣିଲି, ସେ ଅଂଚଳର ଅଗ୍ରିୟା ଜାତିର ପରିବାରମାନେ ଉନ୍ନତ ଏବଂ ସେମାନଙ୍କ ଝିଅବୋହୂମାନେ ସୁନ୍ଦର

ତଥା ନିର୍ଭୟ । ବହୁ ବର୍ଷ ପରେ ଓଡିଶା ମାଧ୍ୟମିକ ଶିକ୍ଷା ପରିଷଦର ଓଡିଆ ସିଲାବସ୍ କମିଟିର ମୁଖ୍ୟ ଥିଲାବେଳେ ଗୋଟିଏ ଶ୍ରେଣୀର ସାହିତ୍ୟ ବହିରେ ଯେତେବେଳେ ସୁନ୍ଦରଗଡନିବାସୀ କବି ବିନୋଦଚନ୍ଦ୍ର ନାୟକଙ୍କର 'ଗ୍ରାମପଥ' କବିତାଟି ରଖାଗଲା, ମୋର ଆନନ୍ଦର ସୀମା ରହିଲା ନାହିଁ । ସୁନ୍ଦରଗଡର ସେହି ପାଦଚଲା ଗ୍ରାମପଥଟି ଓ ସେଥିରେ ଚାଲୁଥିବା ସେହି ମାଆଝିଅବୋହୂଙ୍କର ଦୃଶ୍ୟ ମୋ ଆଖି ଆଗରେ ଝଲସି ଉଠିଲା ଏବଂ ମୁଁ ଭାବାବେଗରେ ଅଭିଭୂତ ହୋଇଗଲି । କବି ବିନୋଦ ବାବୁ ସୁନ୍ଦରଗଡ କଲେଜରେ ମୋର ସହକର୍ମୀ ଅଧ୍ୟାପକବଂଧୁ ଥିଲେ । ସେ ମିଷ୍ଟ ଭାଷୀ, ଉଦାରମନା, ବଂଧୁ ବତ୍ସଳ ବ୍ୟକ୍ତି ଥିଲେ ।

(ଛ) ଡକ୍‌ଟର ସୁବୋଧଚନ୍ଦ୍ର ପ୍ରହରାଜ ଓ ତାଂକ ପତ୍ନୀ ଶାନ୍ତି ମୋର ଅଶେଷ ଉପକାର କରିଛନ୍ତି । ସୁବୋଧ ମୁଁ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲାବେଳେ ସେହି ସ୍କୁଲରେ ପଢୁଥିଲେ । ଶିଶୁ ବିଭାଗରେ ଡାକ୍ତର ହୋଇ ପ୍ରଫେସର ଭାବରେ ଅବସର ନେଇଛନ୍ତି, ଶିଶୁ ଚିକିତ୍ସାର ଡାକ୍ତରଭାବେ ସୁନାମ ଅର୍ଜନ କରିଛନ୍ତି । ମୋର ପାଂଚଟି ପିଲା ଓ ମୋ ବଡ ଭାଇଂକର ଛଅଟି ପିଲା, ସମସ୍ତଂକର ସେ ଆନନ୍ଦରେ ଚିକିତ୍ସା କରିଛନ୍ତି ଏବଂ ଆରୋଗ୍ୟ ପ୍ରଦାନ କରିଛନ୍ତି । ଶାନ୍ତି ପ୍ରକୃତରେ ଶାନ୍ତିର ପ୍ରତିମୂର୍ତ୍ତିଟିଏ । ମୁଁ ସେମାନଙ୍କୁ ଅନ୍ତରର ଆଶୀର୍ବାଦ ଦେଇଆସିଛି ।

(ଜ) ବଡମ୍ବା ଗୋପପୁରର ସ୍ୱାଧୀନଚେତା, ଜନସେବୀ ଡାକ୍ତର ନିହାର ରଂଜନ ମହାପାତ୍ର ଜଣେ ଉତ୍ତମ ହେତୁବାଦୀ ଲେଖକ ମଧ୍ୟ । ସେ ଏବଂ ତାଂକ ପତ୍ନୀ ଅଂଜୁଳତା ସ୍ୱତଃ ଆଗ୍ରହୀ ହୋଇ, ହାତରୁ ଖର୍ଚ୍ଚ କରି ମୋର ବହି ଛାପିଛନ୍ତି । ମୁଁ ସେମାନଂକୁ ଅତ୍ୟନ୍ତ ଶ୍ରଦ୍ଧା କରେ । ସେମାନେ ମୋତେ ଜଣେ ଆତ୍ମୀୟ ଗୁରୁଜନ ବୋଲି ମନେ କରନ୍ତି ।

(ଝ) ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ୧୯୬୦ରେ ଏବଂ କଟକ ସେକଣ୍ଡାରି ଟ୍ରେନିଂ ସ୍କୁଲରୁ ୧୯୬୪ରେ ବିଦାୟ ନେଇ ଆସିବା ବେଳର ବିଦାୟକାଳୀନ ସଭା ମୋ ମାନସପଟରେ ସଦା ଅଲିଭା ହୋଇ ରହିଛି । କଲିଜିଏଟ୍‌ରେ ମୋର ତଥା ପିଲାମାନଙ୍କର ଚକ୍ଷୁ ସଜଳ ହୋଇ ଉଠିଥିଲା । ଆନ୍ତରିକ ସ୍ନେହମମତା- ଭରା ସଂପର୍କ ସେତେବେଳେ ଶିକ୍ଷକ ଓ ଛାତ୍ରଛାତ୍ରୀମାନଂକ ମଧ୍ୟରେ ଥିଲା ଏବଂ ଶିକ୍ଷାନୁଷ୍ଠାନ ଗୁଡିକରେ କି ଆନନ୍ଦ ଓ ଶାନ୍ତିର ବାତାବରଣ ଥିଲା, ଭାବିଲେ ମନ ବ୍ୟାକୁଳ ହୋଇଉଠେ । ସୁନ୍ଦରଗଡ କଲେଜରେ ଅଢେଇ ବର୍ଷ ମାତ୍ର ରହି ୧୯୬୬ରେ ରେଭେନ୍ସା କଲେଜକୁ ବଦଳି ହୋଇ ଆସିଲାବେଳେ ସୁନ୍ଦରଗଡ କଲେଜରେ ମଧ୍ୟ ମୋପାଇଁ ବିଦାୟ ସଭା

ଅନୁଷ୍ଠିତ ହୋଇଥିଲା । ଉକ୍ତ ସଭାରେ ପିଲାମାନେ ଖୁବ୍ ଦୁଃଖ ପ୍ରକାଶ କରିଥିଲେ ଏବଂ ମୁଁ ମଧ୍ୟ ଅଭିଭୂତ ହୋଇପଡିଥିଲି ।

(ଞ) ମୋ ପିଲାଦିନେ, ତରୁଣ ବୟସରେ ମଧ୍ୟ, ଆମ ଗାଁ ହାଟପୋଖରୀ ପାଖରୁ ରାଉତବର୍ତ୍ତନୀ ଗାଁ ମୁଣ୍ଡ ପର୍ଯ୍ୟନ୍ତ ଆଜିଭଳି ରାସ୍ତା ନଥିଲା, ଥିଲା ଖାଲୁଆ ଦଣ୍ଡା ବା ପାଟ ଭୂମି । ବର୍ଷାଦିନେ ସେଥିରେ ଜଙ୍ଘେ, ପେଟେ ପର୍ଯ୍ୟନ୍ତ ପାଣି ରହୁଥିଲା । ଭାଦ୍ର ଆଶ୍ୱିନ ବେଳକୁ ସେଥିରେ ଅଗଣିତ କଇଁଫୁଲ ଫୁଟୁଥିଲା । ଉପରେ କୁଆଁର ପୁନେଇଁ ଜହ୍ନ, ତଳେ ଅଗଣିତ କଇଁଫୁଲଙ୍କର ହସ, ମୁଁ ହାଟପୋଖରୀ ହୁଡାରେ ଠିଆ ହୋଇ ସେହି ମନୋରମ ଦୃଶ୍ୟକୁ ଉପଭୋଗ କରୁଥିଲି । ହାୟ ! ଆଜି ସେଠି 'ଦଣ୍ଡା' ନାହିଁ କି କଇଁ ଫୁଲଟିଏ ନାହିଁ, ଗୋଡିପଥର ବିଛା ରାସ୍ତା ଓ ଘର !

(ଟ) ମୁଁ ଭଦ୍ରକ କଲେଜରେ ତିନି ବର୍ଷ ଅଧ୍ୟାପକ ଥିଲି । ଶ୍ରୀଯୁକ୍ତ ତ୍ରିଲୋଚନ ମିଶ୍ର ଅଧ୍ୟକ୍ଷ ଥିଲେ । ସେ ଜଣେ ଉତ୍ତମ ଗୁଣଗ୍ରାହୀ ଲୋକ । ଡକ୍‌ଟର ଜଗନ୍ନାଥ ପଟ୍ଟନାୟକ, ଶ୍ରୀ ସୁଧାଂଶୁ ଶେଖର ରାୟ, ଶ୍ରୀ ସନାତନ ମହାନ୍ତି ପ୍ରମୁଖ ସ୍ନେହୀ ଗୁଣୀ ଅଧ୍ୟାପକମାନେ ସେତେବେଳେ ସେଠାରେ ଥିଲେ । ଅଧ୍ୟକ୍ଷ ମୋତେ କନିକା ହଷ୍ଟେଲର ପରିଚାଳକ ଦାୟିତ୍ୱ ଦେଇଥିଲେ । ସେହି ବାବଦରେ ମୁଁ କ୍ୱାର୍ଟରଟିଏ ପାଇଥିଲି । କ୍ୱାର୍ଟରଟି ସାଳନ୍ଦୀ ନଦୀ କୂଳକୁ ଲାଗିଥିଲା । ଖରାଦିନେ ନଦୀରେ ଅଳ୍ପ ପାଣି ରହୁଥିଲା ଏବଂ ଆମେ ନଦୀରେ ଗାଧୋଉଥିଲୁ । କଲେଜର ସମଗ୍ରପରିସର ଆମ୍ବତୋଟାରେ ପରିପୂର୍ଣ୍ଣ ଥିଲା । ବସନ୍ତ ଆସିଲେ ଆମ୍ବବଉଳ ଓ କୋଇଲିକୁହୁତାନରେ ପରିସର ପୂରି ଉଠୁଥିଲା । ସେତେବେଳେ କନିକା ଛାତ୍ରାବାସରେ ରବିନାରାୟଣ ସେନାପତି, କମଳାକାନ୍ତ ସ୍ୱାଇଁ, ବ୍ରଜକିଶୋର ପରିଡା ପ୍ରମୁଖ ଉତ୍ତମ ଛାତ୍ରମାନେ ରହୁଥିଲେ । ରବି ଖୁବ୍ ଗରିବ ଘରର ପିଲା ହେଲେ ମଧ୍ୟ ନିଜ ମେଧାବଳରେ ଆଇ.ଏ.ଏସ୍. ହୋଇପାରିଲେ । ତାଙ୍କ ମାଆ ଜଣେ ଭକ୍ତି ପରାୟଣା ମହୀୟସୀ ଜନନୀ । ଛାତ୍ରାବାସର ପିଅନ 'ବାଇଧର' କଥା ମୁଁ ଓ ମୋ ପତ୍ନୀ କେବେ ଭୁଲିପାରିବୁଁନାହିଁ । ଭାରି ଉପକାରୀ ଓ ସ୍ନେହୀ ଲୋକଟିଏ ଥିଲା ସେ । ଭଦ୍ରକ କଲେଜରେ ତିନି ବର୍ଷ ରହିବା ଭିତରେ ମୁଁ ସୁଖ ଶାନ୍ତି ଆନନ୍ଦ ଅନୁଭବ କରିଥିଲି ।

ପ୍ରାୟ ୩୫ ବର୍ଷ ପରେ ମୁଁ ଥରେ ଭଦ୍ରକ କଲେଜ ଯାଇଥିଲି କଲେଜ ପ୍ରତିଷ୍ଠାତା ନରେନ୍ଦ୍ର କୁମାର ଦାସ ସ୍ମାରକୀ ବକ୍ତୃତା ଦେବା ପାଇଁ । ଦେଖିଲି, ସେ ଆମ୍ବତୋଟା ନାହିଁ କି ପ୍ରାକୃତିକ ପରିବେଶ ଆଦୌ ନାହିଁ । ଖାଲି କୋଠା ଓ ରାସ୍ତା, ପ୍ରଚଣ୍ଡ ରୁକ୍ଷ ଖରା । ମନଟା ହାହାକାର କରିଉଠିଲା ।

ଭଦ୍ରକ କଲେଜରେ ତିନିବର୍ଷମାତ୍ର ରହିବା ପରେ ମୁଁ ଭୁବନେଶ୍ୱର ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାକୁ ବଦଳି ହୋଇ ଆସିଥିଲି । ଜିନିଷପତ୍ର ଗାଡିରେ ଲଦି ସପରିବାର ସେହି ତୋଟାମାଳ ହତା ଛାଡି ଆସିବାବେଳେ ମୋ ଆଖିରେ ଲୁହ ଆସିଯାଇଥିଲା ।

(ଠ) ଭୁବନେଶ୍ୱର ଟେକ୍‌ଷ୍ଟବୁକ୍ ବ୍ୟୁରୋରେ ଭାଷାବିଶେଷଜ୍ଞ ଭାବେ ମୁଁ ପ୍ରାୟ ଚାରିବର୍ଷ ଥିଲି । ମୋ ସମୟରେ ଡାଇରେକ୍ଟର ଥିଲେ ଡକ୍ଟର ଶ୍ରୀନିବାସ ସାହୁ ଓ ତାଂକ ପରେ ଡକ୍ଟର ଗଦାଧର ମିଶ୍ର । ସେକ୍ରେଟେରି ଥିଲେ ନୀଳକଂଠ ପଟ୍ଟନାୟକ । ସେଠାରେ ପରିଭାଷାପ୍ରସ୍ତୁତି କ୍ଷେତ୍ରରେ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଡକ୍ଟର ବସନ୍ତକୁମାର ବେହୁରା, ଡକ୍ଟର ବିଦ୍ୟାଧର ପାଢୀ, ଡାକ୍ତର ଗୋପାଳକୃଷ୍ଣ ପଟ୍ଟନାୟକ, ଡାକ୍ତର ଘନଶ୍ୟାମ ମହାପାତ୍ର, କବିରାଜ ବନମାଳୀ ଦାସ ଓ ବନ୍ଧୁ ପରେ ଡାକ୍ତର ବାସୁଦେବ କର, ଡକ୍ଟର କୁଳମଣି ସାମଲ ପ୍ରମୁଖଙ୍କ ସଂଗେ କାର୍ଯ୍ୟ କରି ଆନନ୍ଦ ଅନୁଭବ କରିଥିଲି । ଡାକ୍ତର କରଂକର ସଂସ୍କୃତଜ୍ଞାନ ଓ ସଂସ୍କୃତ ଅନୁରାଗରେ ମୁଁ ମୁଗ୍ଧ ହେଉଥିଲି ।

(ଡ) ୨/୩ଟି ପତ୍ରିକାରେ ମୁଁ 'ଓଡିଆଙ୍କ ବ୍ୟାଘ୍ରପୂଜା' 'ରେଭେନ୍‌ସା ସାହେବ ଓ ନ'ଅଙ୍କ ଦୁର୍ଭିକ୍ଷ' ଏଭଳି ନାମ ଦେଇ ପ୍ରବଂଧ ଲେଖିଥିଲି । ପ୍ରବଂଧର ମର୍ମ ଥିଲା ରେଭେନ୍‌ସା ବିଶ୍ୱବିଦ୍ୟାଳୟର ନାମ ବଦଳି ଜୟୀ ରାଜଗୁରୁ ବିଶ୍ୱବିଦ୍ୟାଳୟ କିମ୍ବା କଟକ ବିଶ୍ୱବିଦ୍ୟାଳୟ ହେଉ । ମୋ ଲେଖାଟି ଆଲୋଚନାରେ ବାଦବିବାଦ ସୃଷ୍ଟି କରିଥିଲା । ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି ହେଉ, ଏହି ଲକ୍ଷ୍ୟ ନେଇ ମୁଁ ଅନେକ ଲେଖା ଲେଖିଛି । ମୋର ଭାଷା ବିଚାର ବହୁଭାବେ କାର୍ଯ୍ୟକାରୀ ହୋଇଛି । ଯେପରି- 'ଶିକ୍ଷାମଣ୍ଡଳାଧୀଶ' ହେଲା ଶିକ୍ଷାମଣ୍ଡଳ ଅଧିକାରୀ, ଅନୁସ୍ୱାରଦିଆ ଲେଖା ଶିକ୍ଷାରେ ସ୍ୱୀକୃତି ପାଇଲା, ଇତ୍ୟାଦି ।

(ଢ) ରାଜାବଗିଚ୍ଛ ସିଟି କଲେଜରେ ମୁଁ ପ୍ରାୟ ନଅ ବର୍ଷ ରହିଥିଲି । ଶୂନରୁ ଆରମ୍ଭ କରି ଅନେକ ବିକାଶ କରାଇଥିଲି । ମୁଁ ଚାହିଁଥିଲେ ଗୋଟିଏ ଭଲ ଗଦି ଚେୟାର କିଣି ତା'ଉପରେ ବସିପାରିଥାଆନ୍ତି ଏବଂ ମୋ ସମ୍ମୁଖରେ ଗୋଟିଏ ଭଲ ଟେବୁଲ୍ ପକାଇପାରିଥାନ୍ତି । କିଂତୁ ମୁଁ ତାହା ନ କରି, ପ୍ରଥମ ଦିନ ଯାଇ ଯେଉଁ ସାଦା କାଠଚେୟାରଟିରେ ବସିଥିଲି, ସେହି ଚେୟାରଟିରେ ସେଠୁ ଆସିବା ଦିନ ପର୍ଯ୍ୟନ୍ତ ବସୁଥିଲି ଏବଂ ସେହି ଟେବୁଲଟିରେ ହିଁ ଅଫିସ୍ କାମ କରୁଥିଲି ।

ଦିନେ ମୋର ସେହି ପ୍ରିୟ ଚେୟାରଟି ଉପରେ ମୁଁ ବସିଥାଏ । ଆଉ ସାତ ଆଠ ଦିନ ମାତ୍ର ଥାଏ ସେଠୁ ବିଦାୟ ନେଇ ଆସିବା ପାଇଁ । ଗଭର୍ଣ୍ଣିଂ ବଡିର ଜଣେ ସଭ୍ୟ

ଖୁବ୍ ଉତ୍‌କ୍ଷିପ୍ତ ଭାବରେ ପଶି ଆସିଲେ ଏବଂ ମୋ ଆଗରେ ଚେୟାରଟାରେ ବସିପଡି ସେଇ ମୁହୂର୍ତ୍ତରେ ହିଁ ଜଣେ ଅଧାପିକାଂକୁ ବରଖାସ୍ତ କରିବାକୁ ଚଢା ଗଳାରେ କହିଲେ । ମୁଁ ଧୀର ଭାବରେ କହିଲି - "କାହାକୁ ବରଖାସ୍ତ କରିବାକୁ ହେଲେ ଗଭର୍ଣ୍ଣିଂ ବଡିର ସିଦ୍ଧାନ୍ତ ଦରକାର । ବରଖାସ୍ତ କରିବାର କ୍ଷମତା ଅଧକ୍ଷଙ୍କର ନାହିଁ ।" କିନ୍ତୁ ସେ ଆହୁରି ଉତ୍ତ୍ୟକ୍ତ ହୋଇ କହିଲେ - "ଗଭର୍ଣ୍ଣିଂ ବଡି କଥା ମୁଁ ବୁଝିବି । ଆପଣ ଏଇ ବର୍ତ୍ତମାନ ତାକୁ ବରଖାସ୍ତ ଅର୍ଡର ଦିଅନ୍ତୁ ।" ମୁଁ ଭୟଭୀତ ହୋଇଯାଇ କହିଲି - "ହେଉ, ମୁଁ ଏଇ ବର୍ତ୍ତମାନ ବରଖାସ୍ତ ଅର୍ଡର ଲେଖୁଛି ।" ସଂଗେ ସଂଗେ ସର୍ଭିସ୍ ଟର୍ମିନେସନ୍ ଅର୍ଡର ଲେଖାଇ, ଟାଇପ୍ କରାଇ ଉକ୍ତ ଅଧାପିକାଂକ ନିକଟକୁ ପଠାଇଦେଲି । କିଂତୁ ମୁଁ ଜାଣିଥିଲି, ଏହା ବେନିୟମ କାର୍ଯ୍ୟ ଏବଂ ଅଧାପିକା ମୋ ବିରୁଦ୍ଧରେ କେଶ୍ କରିବେ ଏବଂ ମୋର ଖୁବ୍ ଦୁର୍ନାମ ହେବ । ତେଣୁ ନୂଆ ଅଧକ୍ଷ ଆସି ଜଏନ୍ କରିବାର ପୂର୍ବଦିନ ଅତ୍ୟନ୍ତ ଗୋପନରେ ସେହି ଅଧାପିକାଙ୍କ ନିକଟକୁ ବରଖାସ୍ତ ଅର୍ଡରକୁ ରଦ୍ଦ କରାଗଲା ବୋଲି ଚିଠି ପଠାଇଦେଲି । ନୂଆ ଅଧକ୍ଷଂକୁ ଚାର୍ଜ ଦେଇ ମୁଁ ସଂଗେ ସଂଗେ ଲୁଚି ପଳାଇଆସିଲା ଭଳି ପଳାଇ ଆସିଲି । ନଅ ବର୍ଷ କାଳ ଯେଉଁମାନଂକୁ ନେଇ କାର୍ଯ୍ୟ କରିଥିଲି, ଆସିବା ଦିନ ସେମାନଙ୍କ ସଂଗରେ ଚାହା କପେ ପିଇବାର ସୌଭାଗ୍ୟ ମଧ ପାଇପାରିଲି ନାହିଁ ।

(ଣ) ଥରେ କଟକ ସିଟି କଲେଜରେ ଯୁକ୍ତଦୁଇ ପରୀକ୍ଷା ଚାଲିଥାଏ । କଲେଜ ପରିସର ବାହାରେ ଶାନ୍ତି ଶୃଂଖଳା ରକ୍ଷା କରିବାପାଇଁ ମୁଁ ପୁରୀଘାଟ ଥାନାକୁ ଜଣାଇଥାଏ, ଜଣେ ପୁଲିସ ସବ୍‌ଇନିସ୍‌ପେକ୍ଟର ଓ ଦୁଇଜଣ କନେଷ୍ଟବଳ ଆସିଥାଆନ୍ତି । ସବ୍ ଇନିସ୍‌ପେକ୍ଟର ମୋତେ ଆସି ଦେଖା କଲେ । ମୁଁ ତାଂକୁ ବସିବାକୁ ଅନୁରୋଧ କରିବାରୁ ସେ ବସିଲେ । ବୟସ ୪୦ ପର୍ଯ୍ୟନ୍ତ ହେବ । ମୋତେ ଖୁବ୍ ଭଲ ବୋଧ ହେଲେ । ତାଂକ ସଂଗରେ କିଛି ସମୟ ଆଳାପ କରିବାରେ ଲାଗିଲି । ଆଳାପ ଭିତରେ ତାଂକର ବିମର୍ଷଭାବ ଲକ୍ଷ୍ୟ କରି ପଚାରିଦେଲି - "ଦୟା କରି ଆପଣ କିଛି ଭାବିବେ ନାହିଁ, ମୁଁ ଆପଣଂକୁ ଗୋଟିଏ କଥା ପଚାରିବି ।" ସେ ନମ୍ର ଭାବରେ କହିଲେ - "ସାର୍, ପଚାରନ୍ତୁ ।" ମୁଁ କହିଲି- "ମୁଁ ଆପଣଂକ କଥାବାର୍ତ୍ତାରୁ ଓ ମୁହଁରୁ ବିମର୍ଷଭାବ ଲକ୍ଷ୍ୟ କରୁଛି । ମୋ ଧାରଣା କ'ଣ ଠିକ୍ ?" ଏସ୍.ଆଇ. କହିଲେ - "ସାର୍, ଆପଣ ଠିକ୍ ଲକ୍ଷ୍ୟ କରିଛନ୍ତି । ଆପଣ ମୋର ଗୁରୁଜନ । ନିଷ୍ଚୟ କହିବି । ଏସ୍.ଆଇ. ଚାକିରୀରେ ଯେ ମୋଠାରୁ ଜୁନିଅର ଥିଲେ, ସେ ଇନିସ୍‌ପେକ୍ଟର ହୋଇ ଆସିଛନ୍ତି, ମୋତେ ତାଂକୁ ସାଲ୍ୟୁଟ୍ ମାରିବାକୁ ପଡୁଛି । ସେ ସିଡୁଲ୍ କାଷ୍ଟ ହୋଇଥିବାରୁ ଆଗେ ପ୍ରମୋଶନ

ପାଇଛନ୍ତି । ସାଲ୍ୟୁଟ୍ ମାରିଲାବେଳେ ମୋତେ ବହୁତ ବାଧୁଛି । ଚାକିରୀ ଛାଡି ଦେବା ପାଇଁ ଭାବୁଛି, କିନ୍ତୁ ପରିବାର କଥା ଚିନ୍ତା କଲାବେଳକୁ ସାହସ ଆସୁନାହିଁ । "ମୁଁ ତାଂକର ଦୁଃଖ ଉପଲବ୍ଧି କଲି, କିଂତୁ ଆଉ କଥାରେ ନଆଗେଇ କହିଲି- "ହଉ, ଆସନ୍ତୁ, ବାହାରେ ଟିକିଏ ବୁଲି ଆସିବା ।"

(ତ) ମହିମା ଧର୍ମର ମହାନ୍ ସନ୍ନ୍ୟାସୀ ବିଶ୍ୱନାଥ ବାବାଂକ ପ୍ରଣୀତ 'ଅଲେଖ ପରଂବ୍ରହ୍ମ ଦର୍ଶନମ୍' ନାମକ ଗ୍ରଂଥଟିକୁ ପ୍ରକାଶ କରିବାପାଇଁ ବାବା ଉତ୍କଳ ବିଶ୍ୱବିଦ୍ୟାଳୟକୁ ଅନୁରୋଧ କରିଥିଲେ । ବିଶ୍ୱବିଦ୍ୟାଳୟ ପ୍ରଫେସର ରତ୍ନାକର ପତିଙ୍କୁ ସମୀକ୍ଷା କରିବାକୁ ଏବଂ ମୋତେ ଉକ୍ତ କାର୍ଯ୍ୟରେ ପ୍ରଫେସର ପତିଂକ ସହାୟକ ଭାବେ ନିଯୋଜିତ କରିଥିଲେ । ଆମେ ଦୁହେଁ ଉକ୍ତ ଗ୍ରଂଥଟିକୁ ପଢି ପ୍ରକାଶ କରିବାପାଇଁ ବିଶ୍ୱବିଦ୍ୟାଳୟକୁ ସୁପାରିଶ୍ କରିଥିଲୁଁ । ପ୍ରଥମେ ତାହା ଓଡିଆରେ ଛପା ହୋଇଥିଲା ଏବଂ ପରେ ଇଂରାଜି ଅନୁବାଦ କରାଯାଇ ଛପା ହୋଇଥିଲା । ଛପାକାର୍ଯ୍ୟ ବୁଝିବା ଦାୟିତ୍ୱରେ ମହିମା ଧର୍ମସଂସ୍ଥା ପକ୍ଷରୁ ଦୁଇ ଜଣ ତରୁଣ ବୟସର ସାଧୁଂକୁ ନିଯୋଜିତ କରାଯାଇଥିଲା । ଦୁହେଁ ତରୁଣ ହେଲେ ମଧ ନିର୍ଲୋଭ ଓ ଅନାସକ୍ତ ଥିଲେ । ମୋର ବିଶ୍ୱାସ ଓ ଅନୁଭୂତି, ମହିମା ଧର୍ମର ସାଧୁସଂଥମାନେ ନିର୍ଲୋଭ ଓ ଅନାସକ୍ତ ଅଟନ୍ତି । ଭାରତରେ ପ୍ରାଚୀନ କାଳରେ ଯେଉଁ ଅବଧୂତ ଧର୍ମ ବା ଯତିଧର୍ମ ଥିଲା, ଅର୍ଥାତ୍ ସାଂସାରିକ ବିଷୟବାସନା ପ୍ରତି ସଂପୂର୍ଣ୍ଣ ବିମୁଖତା, ତାହା ବର୍ତ୍ତମାନ ମହିମାଧର୍ମ ରୂପେ ରହିଛି ।

ସେହି ତରୁଣ ସନ୍ନ୍ୟାସୀ ଦୁଇଜଣ ମୋତେ ଗୋଟିଏ ମହିମା ଟୁଙ୍ଗି ଉତ୍ସବକୁ ଯିବାପାଇଁ ଅନୁରୋଧ କରିଥିଲେ । ନୟାଗଡର ଏକ ମଫସଲ ଗାଁରେ ଗୋଟିଏ ମହିମା ଟୁଙ୍ଗି ସ୍ଥାପନ ହେବାର ଥାଏ । ପୁଣ୍ୟାତ୍ମା ବିଶ୍ୱନାଥ ବାବାଙ୍କର ସେଠାକୁ ଯିବାର ଥାଏ । ମୁଁ ଆଗ୍ରହରେ ସେଠାକୁ ଯିବାକୁ ରାଜି ହେଲି ।

ଅପରାହ୍ନ ପ୍ରାୟ ଚାରିଟା ବେଳକୁ ଆମେ ଗୋଟିଏ ଜିପ୍‌ରେ ବାହାରିଲୁଁ । ବାବାମାନଂକୁ ମିଶାଇ ଜିପ୍‌ରେ ଛଅ ସାତ ଜଣ ଲୋକ ଥିଲୁଁ । ନିର୍ଦ୍ଦିଷ୍ଟ ଗ୍ରାମରେ ଆମେ ସଂଧ୍ୟାରେ ପହଂଚିଲୁଁ । ନିତାନ୍ତ ମଫସଲ ଗାଁଟିଏ । ଗୋଟିଏ ଛୋଟ ଚାଳଘର ନୂଆ ତିଆରି ହୋଇଥାଏ । ସେହି ଗାଁରୁ ତଥା ପାଖଆଖ ଗାଁମାନଂକରୁ ହଜାରେ ସରିକି ଲୋକ ଆସିଥାଆନ୍ତି । ସେମାନଂକ ମଧ୍ୟରେ ଅନେକେ ଗୈରିକବସ୍ତ୍ର ପିନ୍ଧିଥାଆନ୍ତି । ସେମାନେ ଖଂଜଣି ବଜାଇ ଭଜନ ଗାଉଥାଆନ୍ତି । ସରଳ, ସୁନ୍ଦର, ପ୍ରାକୃତିକ ପରିବେଶ । ଶେଷକୁ ବିଶ୍ୱନାଥ ବାବା ସଂକ୍ଷେପରେ ଉପଦେଶାତ୍ମକ ଭାଷଣଟିଏ ଦେଲେ । ତା'ପରେ

ଆମେମାନେ କଟକ ଫେରିଲୁଁ । ସେହି ଆନନ୍ଦଦାୟକ ସ୍ମୃତିଟି ଆଜିପର୍ଯ୍ୟନ୍ତ ମୋ ମନରେ ସଜୀବ ହୋଇ ରହିଛି ।

(ଥ) ଆମ ପିଲାଦିନେ ଆମ ଗାଁ ପାଖ 'ଭୋଗରା' ଗାଁରେ ହାଡି ପଇଡା (ହାଡିବନ୍ଧୁ ପରିଡା) ନାମରେ ଜଣେ ଲୋକ ଥିଲେ । ସେ ପ୍ରତିଦିନ ରାତିରେ ଶୋଇବାକୁ ଯିବା ପୂର୍ବରୁ ଦାଣ୍ଡରେ ଠିଆ ହୋଇ, ଉପରକୁ ହାତ ଟେକି, ଖୁବ୍ ଉଚ୍ଚସ୍ୱରରେ ତିନିଥର 'ହରିବୋଲ' ଡାକ ଦେଉଥିଲେ । ତାହା ପାଖ ଆଖ ଦଶ ଖଣ୍ଡ ଗାଁକୁ ଶୁଭୁଥିଲା । ଲୋକେ ଖାଇବା ପିଇବା ସାରି ଶୋଇବାକୁ ଯାଉଥିଲେ । ସେତେବେଳେ ଚରିଆଡେ ବହୁତ କିଆବଣ ଥିଲା ଏବଂ କିଆ ବଣ ମାନଙ୍କରେ ଶିଆଳପଲ ରହୁଥିଲେ । ଶିଆଳପଲ ରାତିର ପ୍ରତ୍ୟେକ ପହର ଶେଷରେ ଭୁକି ଉଠୁଥିଲେ । ଶିଆଳ ଭୁକାରୁ ଲୋକମାନେ ରାତିର ସମୟ କଳନା କରୁଥିଲେ ।

(ଦ) ମୁଁ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲା ବେଳେ ଶ୍ରୀମାନ୍ ସମରବଲ୍ଲଭ ମହାପାତ୍ର, ଆଇ.ଏ.ଏସ୍, ଭାରତ ସରକାରଂକ ବହିର୍ବାଣିଜ୍ୟ ବିଭାଗର ସେକ୍ରେଟାରି, ସେହି ସ୍କୁଲରେ ପଢୁଥିଲେ ଏବଂ ଛାତ୍ରବାସରେ ରହୁଥିଲେ । ମୁଁ ଛାତ୍ରାବାସର ସହକାରୀ ପରିଚାଳକ ଥିଲି । ସମର ମେଧାବୀ ପିଲା ଥିଲେ, କିଂତୁ ଦେହ ଅସୁସ୍ଥ ହେତୁ ଆନୁଆଲ ମାଟ୍ରିକ ପରୀକ୍ଷା ଦେଇପାରି ନଥିଲେ, ସପ୍ଲିମେଣ୍ଟାରି ପରୀକ୍ଷା ଦେଇଥିଲେ ଏବଂ ପ୍ରଥମ ହୋଇଥିଲେ । ସେ ମୋତେ ଦେଖିବାକୁ ମୋ ଘରକୁ ଆସିଥିଲେ ଏବଂ ଗୋଟିଏ ମୂଲ୍ୟବାନ୍ ଶାଲ୍, ଧୋତି, ଫଳ ଓ ୫ ହଜାର ଟଂକା ମୋର ନିତାନ୍ତ ଅନିଚ୍ଛା ସତ୍ତ୍ୱେ ମୋତେ ଦେଇଗଲେ । ତାଂକ ବାଳକ ସମୟର କଥା ମନେ ପକାଇ ମୁଁ ଆବେଗରେ ଅଭିଭୂତ ହୋଇଗଲି ।

(ଧ) ଶ୍ରୀମାନ୍ ଅରିଜିତ୍ ପଶାୟତ, ସୁପ୍ରିମ କୋର୍ଟ ବିଚାରପତି, ରେଭେନ୍ସା କଲିଜିଏଟ୍ ସ୍କୁଲରେ ମୋର ଛାତ୍ର ଥିଲେ । ତାଙ୍କ ପିତା ବିଶ୍ୱନାଥ ପଶାୟତ ସାମ୍ୟବାଦୀ ଥିଲେ ଏବଂ ରୁଷିଆ (U.S.S.R) ପରିଭ୍ରମଣରେ ଯାଇଥିଲେ । ଅରିଜିତ୍ କଟକ ଶହୀଦ୍ ଭବନରେ ଅନୁଷ୍ଠିତ ଜଷ୍ଟିସ୍ ରାଜକିଶୋର ଦାସ ସ୍ମୃତି ସଂସଦ ସଭାରେ ମୋ ପ୍ରତି ଏପରି ସମ୍ମାନ ପ୍ରଦର୍ଶନ କରିଥିଲେ ଯେ ସଭାର ସମସ୍ତ ଲୋକ ମୁଗ୍ଧ ହୋଇଯାଇଥିଲେ । ସେ ଯେଉଁ ଦିନ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନ ସୂଚକ ଡ଼କ୍ଟରେଟ୍ ଡ଼ିଗ୍ରୀ ପାଇଲେ, ମୋର ଅନନ୍ଦର ସୀମା ରହିନଥିଲା । ସେ ମୋତେ ଦେଖିବାପାଇଁ ମୋ ଘରକୁ ଆସିଥିଲେ ଏବଂ ଏକ ମୂଲ୍ୟବାନ୍ ଶାଲ୍ ଓ ଫଳ ପ୍ରଦାନ କରିଥିଲେ । ତାଂକ ବାଳକ ସମୟର କଥା ମୋର ସ୍ମୃତିପଥରେ ଆସି ମୋତେ ଆବେଗରେ ଅଭିଭୂତ କରିଦେଲା ।

(ନ) କଲିଜିଏଟ୍ ସ୍କୁଲରେ ଯେତେ ପିଲା ପଢୁଥିଲେ, ସମସ୍ତେ ମେଧାବୀ ଥିଲେ ଏବଂ ପାଠପଢ଼ାରେ ଆଗ୍ରହୀ ଥିଲେ । ସେମାନେ ବିଭିନ୍ନ ବିଷୟରେ ଉଚ୍ଚ ଶିକ୍ଷା ଲାଭ କରି କୃତୀତ୍ୱ ଅର୍ଜନ କରିଛନ୍ତି ।

ସେହି ସମୟର ଶ୍ରୀମାନ୍ କଲ୍ୟାଣୀୟ ପିଲାମାନେ-

ସୁବୋଧଚନ୍ଦ୍ର ପ୍ରହରାଜ, ଅରିଜିତ୍ ପଶାୟତ, ସମରବଲ୍ଲଭ ମହାପାତ୍ର, ଦେବଦାସ ଛୋଟରାୟ, ପ୍ରଶାନ୍ତ କୁମାର ନନ୍ଦ, ବ୍ରହ୍ମାନନ୍ଦ ପଣ୍ଡା, ଜ୍ଞାନରଂଜନ କର, ଗୋପାଳଚନ୍ଦ୍ର କର, କୃଷ୍ଣଚରଣ ରାଉତ, ହର ପ୍ରସାଦ ମିଶ୍ର, ନୃସିଂହ ପ୍ରସାଦ ମିଶ୍ର, ପଞ୍ଚାନନ ମିଶ୍ର, ପ୍ରଭାତ କୁମାର ନନ୍ଦ, ପ୍ରଭାସରଂଜନ ଚୌଧୁରୀ, ପ୍ରମୋଦକୁମାର ଜ୍ୟୋଷୀ, ଲୋକନାଥ ଶାହା, ବିଶ୍ୱନାଥ ଶାହା, ଜ୍ଞାନ ରଂଜନ ମହାନ୍ତି, ସୂର୍ଯ୍ୟନାରାୟଣ ଦାଶ, ବିପିନବିହାରୀ ପଟ୍ଟନାୟକ, ଚିତ୍ତରଂଜନ ପଟ୍ଟନାୟକ, ଶ୍ରୀକାନ୍ତ ଜେନା, ଦୋଳଗୋବିନ୍ଦ ନାୟକ, ଅବୋଧ କୁମାର ମହାପାତ୍ର, ଅଭୟ କୁମାର ମହାପାତ୍ର, ବିବେକାନନ୍ଦ ମହାନ୍ତି, ପ୍ରଦୀପ ରାଓ, ପ୍ରବୀର ସରକାର, ରାଧେଶ୍ୟାମ ଅଗ୍ରୱାଲ, ସାଗରଲାଲ ଅଗ୍ରୱାଲ, ଭୋଳାନାଥ ବେହେରା, ବିମଳାନନ୍ଦନ ମହାପାତ୍ର, ବ୍ରଜକିଶୋର ତ୍ରିପାଠୀ, ବିଜୟ ଚନ୍ଦ୍ର ଜେନା, ମନୋରଂଜନ ମହାନ୍ତି, ଚିତ୍ତରଂଜନ ମହାନ୍ତି, ସୁଧାକର ମିଶ୍ର, ଚିତ୍ତ ରଂଜନ ବେହେରା, ଯାଦବାନନ୍ଦ ଷାଠିଆ, ବେଣୁଧର ପାଣିଗ୍ରାହୀ, ଲକ୍ଷ୍ମୀକାନ୍ତ ମିଶ୍ର, ନାରାୟଣ ପ୍ରସାଦ ରଥ, ସୁଭଦ୍ର କୁମାର କର, ସୁଗତ କୁମାର କର, ରବୀନ୍ଦ୍ର କୁମାର ରଥ, ରାଜେନ୍ଦ୍ର କୁମାର ରଥ, ଅତ୍ରି କୁମାର ଗାଙ୍ଗୁଲି, ଜ୍ୟୋତି ପ୍ରକାଶ ଗାଙ୍ଗୁଲି, ସଦାନନ୍ଦ ବାରିକ, ପ୍ରଭାକର ମହାପାତ୍ର, ସଂଗ୍ରାମ କେଶରୀ ଜେନା, ବିବେକାନନ୍ଦ ତ୍ରିପାଠୀ, ବଳରାମ ମିଶ୍ର, ସରୋଜ କୁମାର ସିଂହ, ଦୀପ୍ତି ପଟ୍ଟନାୟକ, କସ୍ତୁରୀ ଛୋଟରାୟ, ଦିଲୀପ କୁମାର ପଟ୍ଟନାୟକ, ଦେବାନନ୍ଦ ମିଶ୍ର, ସଚ୍ଚିଦାନନ୍ଦ ମିଶ୍ର(ଫେଲା), ନିର୍ମଳ ଚନ୍ଦ୍ର ଗରାବଡୁ, ଶ୍ରୀବତ୍ସ କୁମାର ମିଶ୍ର, ଶିଶିର କୁମାର ମିଶ୍ର, ପରମାନନ୍ଦ ମହାନ୍ତି, ରାଧାମୋହନ ଜେନା, ରାଧାମୋହନ ନନ୍ଦ, ସୁବାସ ଚନ୍ଦ୍ର ମହାପାତ୍ର, କିଶୋର ଚନ୍ଦ୍ର ମହାପାତ୍ର, ମାନସରଂଜନ ବିଶ୍ୱାଳ, ଅମ୍ବିକା ପ୍ରସାଦ ମିଶ୍ର, କ୍ଷିତୀଶ ଚନ୍ଦ୍ର ମହାନ୍ତି, ଦେବଦତ୍ତ ମିଶ୍ର, ଦେବପ୍ରିୟ ମିଶ୍ର, ଦେବପ୍ରିୟା ମିଶ୍ର, ଶ୍ରୀକାନ୍ତ ମହାନ୍ତି, ଶୈଳଜାନନ୍ଦନ ପରିଡା, ଗଗନଚନ୍ଦ୍ର ସାମଲ ପ୍ରମୁଖ ପିଲାମାନଂକର ବାଳକ ସମୟର ରୂପ ମୋ ଆଖି ଆଗରେ ନାଚି ଯାଉଛି ଏବଂ କେହି ଦେଖା ହେଲେ ମୁଁ ଭାବବିହ୍ୱଳ ହୋଇଉଠୁଛି । ଯଦିଓ ମୁଁ କ୍ଷୁଦ୍ର ଶିକ୍ଷକଟିଏ (ଦ୍ୱିତୀୟ ସଂସ୍କୃତ ପଣ୍ଡିତ) ମାତ୍ର ଥିଲି, ତଥାପି ପିଲାମାନଙ୍କୁ ପଢାଇ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଥିଲି । କଲିଜିଏଟ୍ ସ୍କୁଲରେ ଶିକ୍ଷକତା ହିଁ ମୋ ଜୀବନର ଶ୍ରେଷ୍ଠ ସ୍ମୃତି ହୋଇ ରହିଛି ।

(ପ) ମୁଁ ରାଜାବଗିଚ୍ଚ କଟକ ସିଟି କଲେଜରେ ଅଧ୍ୟକ୍ଷ ଥିଲାବେଳେ ଦିନେ +୨ ବିଜ୍ଞାନ ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ରଛାତ୍ରୀଙ୍କର ଉପସ୍ଥାନ ଖାତା ମଗାଇ ଦେଖିଲି । ଦେଖିଲି ଗୋଟିଏ ପିଲାର ୧୭ ଦିନର ଅନୁପସ୍ଥିତି ଚିହ୍ନ ପଡିଛି । ଅଧ୍ୟାପକମାନଂକୁ ଡକାଇ ପଚାରିଲି "ଏହି ପିଲାଟିର ଅନୁପସ୍ଥିତିର କାରଣ କଅଣ ?" କେହି କହିପାରିଲେ ନାହିଁ, କେବଳ କହିଲେ, ପିଲାଟି ୧୭ ଦିନ ହେଲା କଲେଜକୁ ଆସୁନାହିଁ । ମୁଁ ଅଫିସ୍‌ରୁ ଆଡମିଶନ ରେଜିଷ୍ଟର ବାହାର କରାଇ ଦେଖିଲି, ପିଲାଟି କଟକର ଜଣେ ଇଲେକ୍ଟ୍ରିକାଲ ଏକ୍‌ଜିକିଉଟିଭ୍ ଇଂଜିନିଅରଙ୍କ ପୁଅ । ତାଂକ ପାଖକୁ ଡାକରେ ଚିଠି ପଠାଇଲି "ଦୟା କରି ମୋ ପାଖକୁ ଆସିବେ । ଆପଣଂକ ପୁଅ ସଂବନ୍ଧରେ କିଛି କଥାବାର୍ତ୍ତା ହେବାର ଅଛି ।" ସେ ଚିଠି ପାଇ ଆସିଲେ । ତାଙ୍କ ପୁଅ କାହିଁକି କଲେଜ ଆସୁନାହିଁ ବୋଲି ମୁଁ ପଚାରିଲି । ସେ ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ- "ସେ ତ ପ୍ରତିଦିନ କଲେଜ ଆସୁଛି ।" ମୁଁ ତାଙ୍କୁ ଉପସ୍ଥାନ ଖାତା ଦେଖାଇଲି । କହିଲି- "ସେ କଲେଜ ଆସୁନାହିଁ । ମୋର ଅନୁରୋଧ, ଆପଣ ତାକୁ ସାଙ୍ଗରେ ଧରି କାଲି ମୋ ପାଖକୁ ଆସନ୍ତୁ ।"

ସେହି ପଦସ୍ଥ ଅଫିସର ପୁଅକୁ ଘେନି ତା ପରଦିନ ଆସିଲେ । ମୁଁ ଚଡ଼ା ଗଳାରେ ପିଲାଟିକୁ ପଚାରିଲି- "କହ, କଲେଜକୁ ଆସିବାପାଇଁ କେତେବେଳେ ଘରୁ ବାହାରୁ ?" (ସେତେବେଳେ କଲେଜ ଦୁଇଟା ସିଫ୍‌ଟରେ ହେଉଥିଲା । ସକାଳ ୭ଟାରୁ ୧୧ଟା ପର୍ଯ୍ୟନ୍ତ କଳା ଓ ବାଣିଜ୍ୟ କ୍ଲାସ୍ ଏବଂ ୧୧ଟାଠାରୁ ୫ଟା ପର୍ଯ୍ୟନ୍ତ ବିଜ୍ଞାନ କ୍ଲାସ୍) । ପଚାରିଲି- "କାହିଁରେ ଆସୁ ?" କହିଲା- "ସାଇକଲରେ" । ମୁଁ ଚେୟାରରୁ ଉଠିପଡି ତା'ପିଠିରେ ଗୋଟାଏ ଚାପୁଡା ମାରି କାନ ଧରି ପଚାରିଲି - "ସତ କହ, କୁଆଡେ ଯାଉ ?" ୧୫/୧୬ ବର୍ଷର ପିଲାଟି, ଡରିଗଲା । ପାଖରେ ବାପା ବସିଛନ୍ତି, ମିଛ କହିବାକୁ ସାହସ କଲାନାହିଁ । ଥରଥର ଗଳାରେ କହିଲା- ସାଙ୍ଗପିଲାଙ୍କ ସାଙ୍ଗରେ ମହାନଦୀକୂଳ ଆଡକୁ ଯାଏଁ ।" ତା'ପରେ ସେ ମୋର ବିଭିନ୍ନ ପ୍ରକାର ପ୍ରଶ୍ନର ଉତ୍ତର ଦେଲା । ସେଥିରୁ ଜଣା ପଡିଲା, ପିଲାଟି ଅନ୍ୟାନ୍ୟ କଲେଜର ତଥା ନିଜ କଲେଜର କେତେକ ଖରାପ ପିଲାଙ୍କ ସାଙ୍ଗରେ ପଡିଯାଇଛି । ସେ ପ୍ରତିଦିନ ମାଆଠାରୁ କିଛି କିଛି ପଇସା ଆଣୁଛି । ଗୋଟିଏ ପୁଅ ବୋଲି ମାଆ ଦିଅନ୍ତି । ସେହି ଟଂକାରେ ସେମାନେ ବିଭିନ୍ନ ଜିନିଷ କିଣି ଖାଆନ୍ତି ଏବଂ ଆଉ ଅଧିକ ଟଂକା ଆଣିବାକୁ ତାକୁ ଶିଖାନ୍ତି । ପିଲାଟି ସେମାନଂକ ସାଙ୍ଗରେ ବୁଲାବୁଲି କରି ଅପରାହ୍ଣ ୪/୫ଟା ବେଳକୁ ଯାଏ । ମାଆ ପଚାରିଲେ କହେ "ଅମୁକ ଅମୁକ କ୍ଲାସ୍ ହେଲା, ଅମୁକ ଅମୁକ ସାର୍ ପଢାଇଲେ" ଇତ୍ୟାଦି ।

ବାପା ତାର ସ୍ତବ୍ଧ ହୋଇ ବସିଥିଲେ । ତାଙ୍କୁ ପଚାରିଲି "ପୁଅର ପାଠପଢ଼ା କଥା ଆପଣ ନିଜେ କିଛି ବୁଝନ୍ତି ?" ସେ କହିଲେ "ଆଜ୍ଞା, ମୋର ବହୁତ କାମ, ବହୁତ ଦାୟିତ୍ୱ । ବିଭିନ୍ନ ସ୍ଥାନକୁ ଯିବାକୁ ପଡେ । ସମୟର ଘୋର ଅଭାବ ।"

ମୁଁ କହିଲି- "ଦୟା କରି କୁହନ୍ତୁ, ଆପଣଂକର ଚାକିରୀ ବଡ ସଂପଦ, ନା ବିଭିନ୍ନ ସ୍ଥାନକୁ ଯିବା ବଡ ସଂପଦ,ନା ଦାୟିତ୍ୱ ବଡ ସଂପଦ, ନା ପୁଅ ବଡ ସଂପଦ ?" ସେ ଆବେଗ ପ୍ରବଣ ଭାବରେ କହିଲେ "ପୁଅ ବଡ ସଂପଦ ।" ମୁଁ କହିଲି " ତେବେ ଆପଣ ସବୁ କଥା ପାଇଁ ସମୟ ଦେଇପାରୁଛନ୍ତି, ପୁଅ ପାଇଁ କିଛି ସମୟ ଦେଇପାରୁନାହାନ୍ତି କାହିଁକି ?ଆପଣ ଏଣିକି ପୁଅ ପାଇଁ ପ୍ରତିଦିନ ଘଣ୍ଟାଏ ଅଧଘଣ୍ଟାଏ ସମୟ ଦେବେ । ଆପଣ ନିଜେ ବିଜ୍ଞାନ ପଢିଛନ୍ତି, ପୁଅ ପାଖରେ ଅଧଘଣ୍ଟା ବସିବେ, କଅଣ ପଢା ହୋଇଛି, ପଚାରି ବୁଝିବେ, ଲେଖୁଛି କି ନାହିଁ ଦେଖିବେ । ଯଦିବା ଟ୍ୟୁସନ କରାଉଥିବେ, ତଥାପି ଆପଣ ନିଜେ ଅନ୍ତତଃ ଅଧଘଣ୍ଟା ତଦାରଖ କରିବେ ।" ସେ ନମ୍ର ସ୍ୱରରେ କହିଲେ " ଆଜ୍ଞା, ତାହା କରିବି ।" ତା ପରେ ମୁଁ ବ୍ୟବସ୍ଥା କରିଦେଲି, ପିଲାଟି ପ୍ରତିଦିନ ଆସି ମୋତେ ଦେଖା କରିବ ଏବଂ ଗୋଟିଏ ଖାତାରେ ଦସ୍ତଖତ କରିଦେଇ ଯିବ । ତାହା ହିଁ ହେଲା । ପିଲାଟି ପ୍ରଥମ ବର୍ଷ ଶ୍ରେଣୀ ପରୀକ୍ଷାରେ ପ୍ରଥମ ଶ୍ରେଣୀ ପାଇଲା ଏବଂ ଦ୍ୱିତୀୟ ବର୍ଷ +୨ ପରିଷଦ ପରୀକ୍ଷାରେ ପ୍ରଥମଶ୍ରେଣୀ ପାଇଲା ।

(ଫ) ଅଧ୍ୟାପକ ଡକ୍ଟର ରବୀନ୍ଦ୍ର କୁମାର ପ୍ରହରାଜ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ସେ ଓ ମୁଁ ସଙ୍ଗ ହୋଇ ଓଡିଆ ଏମ୍.ଏ. ପରୀକ୍ଷା ଦେଇଥିଲୁଁ । ତାଙ୍କ ତେଲେଙ୍ଗାବଜାର ସ୍ଥିତ ଘରେ ମୁଁ ପ୍ରାୟ ଏକମାସ ଥିଲି । ମାଉସୀ (ତାଙ୍କ ବୋଉ) ଆମକୁ ରନ୍ଧାବଢା କରି ଦେଉଥିଲେ । ମାଉସୀଙ୍କ ସ୍ନେହମମତା ମୁଁ ଭୁଲି ପାରିବି ନାହିଁ । ସେ ଆଦରରେ କେତେ ଠାଆ ପରି ଓ ପିଠାପଣା କରି ଆମକୁ ଦେଉଥିଲେ ।

(ବ) ରେଭେନ୍ସା କଲେଜରେ ଆଗେ ସଂସ୍କୃତ ଓ ଓଡିଆ ବିଭାଗ ମିଶି ଗୋଟିଏ ବିଭାଗ ଥିଲା ଏବଂ ଉକ୍ତ ଯୁଗ୍ମ ବିଭାଗର ମୁଖ୍ୟ ଜଣେ ଥିଲେ । ମୋ ସମୟରେ ଏହା ଅଲଗା ଅଲଗା ଦୁଇଟି ବିଭାଗ ହେଲା ଏବଂ ଦୁଇ ଜଣ ମୁଖ୍ୟ ହେଲେ । ମୁଁ ସଂସ୍କୃତ ଏବଂ ଓଡିଆ ଉଭୟରେ ଏମ୍.ଏ. ଥିବାରୁ ମୋତେ ପଚରାଯାଇଥିଲା(ଅପ୍ସନ ମଗାଯାଇଥିଲା) ମୁଁ ଓଡିଆରେ ରହିବି କିମ୍ବା ସଂସ୍କୃତରେ ରହିବି । ମୁଁ ଓଡିଆରେ ରହିବି ବୋଲି ଇଚ୍ଛା ଜଣାଇଥିଲି, ତେଣୁ ଓଡିଆରେ ରହିଲି । ତା ପୂର୍ବରୁ ମୁଁ ସଂସ୍କୃତ ଓ ଓଡିଆ ଉଭୟ ଶ୍ରେଣୀମାନଂକରେ ପଢାଉଥିଲି । ଏବେ ମୁଁ ଅନୁଭବ କରୁଛି, ଓଡିଆରେ ରହିବାକୁ ଇଚ୍ଛା ଜଣାଇ ମୁଁ ଭୁଲ୍ କରିଥିଲି । କାରଣ ମୁଁ ଯଦି ସଂସ୍କୃତରେ ରହିଥାନ୍ତି, ତେବେ

ଶାନ୍ତିରେ ଋକିରୀ କରିଥାଆନ୍ତି, ସଂକୀର୍ଣ୍ଣମନା ଓଡିଆ ଅଧ୍ୟାପକମାନଙ୍କ ଦାଉରେ ପଡିନଥାନ୍ତି । ମୋର ସଂସ୍କୃତରେ ଗଭୀର ଜ୍ଞାନ ଥିଲା, ତାହାର ଉପଯୋଗ ମଧ୍ଯ ହୋଇପାରିଲା ନାହିଁ । ମୋର ଅନୁଭବ, ଓଡିଆ ଅଧ୍ୟାପକମାନେ ଅନେକେ ସଂକୀର୍ଣ୍ଣମନା । ସାଧାରଣତଃ ଯେଉଁ କଥାଟିଏ ଅଛି "ଓଡିଆ କଂକଡା ଜାତି" ତାହା ପ୍ରାୟ ସବୁ କଲେଜରେ ଓଡିଆ ବିଭାଗରେ ଅଧିକ ପରିଦୃଷ୍ଟ ହୁଏ । ବିଶ୍ୱବିଦ୍ୟାଳୟମାନଂକରେ ଓଡିଆ ବିଭାଗରେ ଏହା ଆହୁରି ଅଧିକ । ଯେଉଁ ଉଚ୍ଚମନା ଓଡିଆ ଅଧ୍ୟାପକମାନଙ୍କ କଥା ଶୁଣାଯାଏ, ସେମାନେ ଥିଲେ ଓଡିଆ ଏବଂ ସଂସ୍କୃତ ମିଶି ଗୋଟିଏ ବିଭାଗ ଥିଲାବେଳେ । ସାଧାରଣ ଭାବେ ଓଡିଆମାନଂକର ଜାତୀୟ ଚରିତ୍ର ଏପରି କାହିଁକି, ମୁଁ ଭାବେ । ଆର୍ଯ୍ୟ, ଦ୍ରାବିଡ ଓ ଆଦିବାସୀ ଏ ତିନି ଗୋଷ୍ଠୀର ସଂପର୍କରୁ ଓଡିଆ ଜାତିର ଉତ୍ପତ୍ତି । ଏ ତିନି ଜାତିର ସଂସ୍କୃତିର ସମ୍ମିଶ୍ରଣରୁ ଓଡିଆ ସଂସ୍କୃତିର ମଧ୍ୟ ଉତ୍ପତ୍ତି । ତେଣୁ ଏଠାରେ ଆତ୍ମମର୍ଯ୍ୟାଦାମୂଳକ ଜାତୀୟତା ଏପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇପାରିନାହିଁ । ପ୍ରତିଷ୍ଠିତ ଯେ ହୋଇପାରିବନାହିଁ,ତା ନୁହେଁ । "କାଳୋ ହ୍ୟୟଂ ନିରବଧିଃ" ।

(ଭ) ଇନ୍ଦିରା ଗାନ୍ଧୀଙ୍କ ବିରୋଧରେ ଆଲାହାବାଦ ହାଇକୋର୍ଟ ରାୟ ଦେବାରୁ ଇନ୍ଦିରା ଗାନ୍ଧୀ ଦେଶରେ ଜରୁରୀ ପରିସ୍ଥିତି ଜାରି କରିଥିଲେ । ସେହି ସମୟରେ ପ୍ରଫେସର ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ବାଣୀବିହାର ରାଜନୀତି ବିଭାଗର ମୁଖ୍ୟ ପ୍ରଫେସର ଥିଲେ । ତାଙ୍କୁ ଅକାରଣରେ ଋକିରୀରୁ ବହିଷ୍କାର କରାଯାଇଥିଲା । ମୁଁ ଅତ୍ୟନ୍ତ ଦୁଃଖ ଅନୁଭବ କରି ତାଂକୁ ସମବେଦନା ଜଣାଇବା ପାଇଁ ତାଂକ କଟକ କୁକୁରିଆପଡା ବାସଗୃହକୁ ଯାଇଥିଲି । ସେ ତାଂକ ବଡ ଆରାମ ଚେୟାରଟିରେ ବସିଥିଲେ । କେହି ଜଣେ ହେଲେ ଲୋକ ତାଂକ ପାଖରେ ନଥିଲେ । ଆଗରୁ ତାଂକ ପାଖରେ ସବୁବେଳେ ଲୋକ ଭିଡ ଜମାଉଥିଲେ । କାରଣ ସେ ଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ଖ୍ୟାତନାମା ପ୍ରଫେସର ଏବଂ ସିଣ୍ଡିକେଟ୍‌ର ଜଣେ ପ୍ରଭାବଶାଳୀ ସଭ୍ୟ । ତେଣୁ ତାଂକ ପାଖକୁ ପ୍ରୟୋଜନ ସାଧନ ପାଇଁ ଅନେକ ଲୋକ ଆସୁଥିଲେ । କିନ୍ତୁ ବର୍ତ୍ତମାନ ସେ ବସିଥିଲେ ସଂପୂର୍ଣ୍ଣ ଏକାକୀ । କୁହାଯାଏ "ସଂପଦ ବେଳେ ସର୍ବେ ସଖା, ବିପଦେ ନ ଦିଅନ୍ତି ଦେଖା ।" ମୁଁ ନମସ୍କାର ଜଣାଇ ଦୁଃଖ ପ୍ରକାଶ କରନ୍ତେ ସେ ମୋତେ ବସିବାକୁ ଇସାରା ଦେଇ କହିଲେ, "ବୁଝିଲ ପଣ୍ଡିତ ମହାଶୟ, ମୋତେ ମୋ ଋକିରୀରୁ ବହିଷ୍କାର କଲେ ସତ, କିନ୍ତୁ ଏହି ଚେୟାରରୁ ମୋତେ କେହି ବହିଷ୍କାର କରିପାରିବେ ନାହିଁ । ଏହି ଚେୟାର ମୋ ସାମ୍ରାଜ୍ୟ ।" ତାଙ୍କ କଥାର ମର୍ମ ବୁଝି ମୋର ଚକ୍ଷୁ ସଜଳ ହୋଇଉଠିଲା ।

(ମ) ପ୍ରଫେସର ରତ୍ନାକର ପତିଙ୍କ ସଙ୍ଗରେ ମୁଁ ଗୋଟିଏ ବିଷୟରେ କାର୍ଯ୍ୟ କରିଥିଲି । ମହିମା ଧର୍ମର ଅବଧୂତ ସନ୍ନ୍ୟାସୀ ପୂଜ୍ୟ ବିଶ୍ୱନାଥ ବାବା 'ଅଲେଖ ପରଂବ୍ରହ୍ମ ଦର୍ଶନମ୍' ନାମକ ଏକ ଗ୍ରଂଥ ରଚନା କରିଥିଲେ । ତାହାକୁ ଛପାଇବା ପାଇଁ ସେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆବେଦନ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଫେସର ପତିଙ୍କୁ ଏବଂ ମୋତେ ଅନୁରୋଧ କରିଥିଲେ ଉକ୍ତ ପାଣ୍ଡୁଲିପିଟିକୁ ପଢ଼ି ପ୍ରକାଶନ ଯୋଗ୍ୟ କି ନା, ମତାମତ ଦେବାପାଇଁ । ପ୍ରଫେସର ପତି ପ୍ରଫେସର ପଡାସ୍ଥିତ ତାଙ୍କ କ୍ଷୁଦ୍ର ବାସଗୃହଟିରେ ରହୁଥାଆନ୍ତି । ମୁଁ ପ୍ରତିଦିନ ତାଙ୍କ ପାଖକୁ ଯାଇ ପାଣ୍ଡୁଲିପି ପଢେଁ, ସେ ଶୁଣନ୍ତି । ମୁଁ ସଂସ୍କୃତଜ୍ଞ ଥିବାରୁ ସେ ଆଲୋଚନା କରିବାକୁ ଭଲ ପାଉଥିଲେ । ଥରେ ଆଲୋଚନା ପ୍ରସଂଗରେ 'ଲକ୍ଷ୍ମୀ' ଶବ୍ଦ ଉପରେ ତାଙ୍କ କୋପ ଦେଖି ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ସେ ରୁକ୍ଷ କଣ୍ଠରେ କହିଲେ "ଲକ୍ଷ୍ମୀକୁ ମୁଁ ଘୃଣା କରେଁ ।" ଏହା କହି ଏପରି ଭାବରେ ଡାହାଣ ଗୋଡକୁ ଉଠାଇ ଦେଲେ ଯେ ଲକ୍ଷ୍ମୀ ଯଦି ପାଖରେ ଥାଆନ୍ତେ, ତାଂକୁ ଗୋଇଠାଏ ମାରି ଥାଆନ୍ତେ । ଲକ୍ଷ୍ମୀ(ଧନସଂପତ୍ତି) ପ୍ରତି ତାଂକର ଘୃଣା ମୁଁ ଅନୁଭବ କରିପାରିଥିଲି । ପ୍ରଫେସର ପତି ଥିଲେ ଉତ୍କଳମଣି ଗୋପବଂଧୁଙ୍କର ଜାମାତା । ରେଭେନ୍ସା କଲେଜର ଦର୍ଶନ ବିଭାଗ ପ୍ରଫେସର ପଦରୁ ଅବସର ଗ୍ରହଣ କରିଥିଲେ । ସେତେବେଳେ କଲେଜରେ ସଂସ୍କୃତ ଓ ଦର୍ଶନ , ଏ ଦୁଇଟି ଥିଲା 'ରୟାଲ୍ ସବ୍‌ଜେକ୍‌ଟସ୍' । ଜ୍ଞାନୀ ଗୁଣୀ ହେବାପାଇଁ ଆଗ୍ରହୀ ଛାତ୍ର ଛାତ୍ରୀମାନେ ଏହି ଦୁଇଟିକୁ ବେଶୀ ପସନ୍ଦ କରୁଥିଲେ । ମୁଁ ରେଭେନ୍ସା କଲେଜ ପି.ଜି ହଷ୍ଟେଲର ସହକାରୀ ପରିଚ୍ଛଳକ ଥିଲାବେଳେ ଥରେ ହଷ୍ଟେଲର ବାର୍ଷିକ ଉତ୍ସବକୁ ପ୍ରଫେସର ପତିଙ୍କୁ ମୁଖ୍ୟ ଅତିଥି କରି ଆଣିଥିଲି । ସେ ନୈତିକତା ଓ କର୍ତ୍ତବ୍ୟ ସଂବନ୍ଧରେ ହୃଦୟସ୍ପର୍ଶୀ ଉପଦେଶ ଦେଇଥିଲେ ।

(ଯ) ମୁଁ ଓ.ଏମ୍.ପି.ଛକ ପି.ଜି.ହଷ୍ଟେଲର ସହକାରୀ ପରିଚ୍ଛଳକ ଥିଲାବେଳେ ପରିଚ୍ଛଳକ ଥିଲେ ପ୍ରଫେସର ଡକ୍ଟର ପତିତପାବନ ମିଶ୍ର ଏବଂ ତା'ପରେ ପରିଚ୍ଛଳକ ହେଲେ ପ୍ରଫେସର ଡକ୍ଟର ବ୍ରଜସୁନ୍ଦର ମହାନ୍ତି । ପତିତପାବନ ବାବୁଙ୍କର ପତ୍ନୀ ମାମିବୋଉ ଓ ବ୍ରଜ ବାବୁଙ୍କର ପତ୍ନୀ ଡଲୁବୋଉ ମୋ ପତ୍ନୀଙ୍କର ଖୁବ୍ ପ୍ରିୟ ଥିଲେ । ସେମାନଙ୍କ ଆଦର ମମତା କଥା ମନେ ପଡିଲେ ପ୍ରାଣ ଆକୁଳ ହୋଇ ଉଠେ ।

(ୟ) ମୁଁ ଭଦ୍ରକ କଲେଜରେ ଥିଲାବେଳେ ଅଧ୍ୟକ୍ଷ ଥିଲେ ପ୍ରଫେସର ତ୍ରିଲୋଚନ ମିଶ୍ର । ସେ ଜଣେ ଜ୍ଞାନୀ, ଛାତ୍ରବତ୍ସଳ ଅଧ୍ୟକ୍ଷ । ସେ ମୋ ପ୍ରତି ଅତ୍ୟନ୍ତ ସଦୟ ଥିଲେ । ମୋତେ କନିକା ହଷ୍ଟେଲର ପରିଚ୍ଛଳକ କରାଇ କ୍ୱାର୍ଟରଟିଏ ଦେଇଥିଲେ ।

ମୁଁ ପରିବାର ଧରି ସେହି କ୍ୱାର୍ଟରରେ ରହୁଥିଲି । ତାଙ୍କ ପତ୍ନୀ କନକବୋଉ ଅତ୍ୟନ୍ତ ସ୍ନେହୀ, ମିଷ୍ଟଭାଷିଣୀ, ଦୟାଶୀଳା । ତାଙ୍କର ଆଦର, ଉଦାରତା ଆମେ ଭୁଲିପାରିବୁଁ ନାହିଁ ।

(ର) ୧୯୮୪ ମସିହା । ମୁଁ ପ୍ରାୟ ଏକ ବର୍ଷ 'ସମାଜ'ରେ ଥିଲି । ଦିନେ ସଂପାଦକ (ଶ୍ରୀଯୁକ୍ତ ରାଧାନାଥ ରଥ) ମୋତେ ଡକାଇ କହିଲେ "ବିଜୁ ବାବୁ ଟେଲିଫୋନ କରି କହିଛନ୍ତି 'ସମାଜ'ରେ ଡକ୍ଟର ଧନେଶ୍ୱର ମହାପାତ୍ର ନାମରେ କେହି ଜଣେ ଅଛନ୍ତି । ସେ କନିକାର ଲୋକ । କନିକାରେ ତାଂକର ଭଲ ନାମ ଅଛି ବୋଲି ଶୁଣିଲି । ତାଂକୁ ଆମ ପାଇଁ କନିକା ପଠାନ୍ତୁ । ସେ ପ୍ରଚାରରେ ସାହାଯ୍ୟ କରିବେ ।" ଏହା କହି ବାବୁଜୀ(ରାଧାନାଥ ବାବୁ) ମୋର ସମ୍ମତି ଲୋଡିଲେ । ମୁଁ ଯିବାପାଇଁ ସମ୍ମତି ଦେଲି ।

ସେତେବେଳେ କେନ୍ଦ୍ରାପଡା ଲୋକସଭା ଆସନ ପାଇଁ ଉପନିର୍ବାଚନ ଅନୁଷ୍ଠିତ ହେଉଥାଏ । ହୋଇସାରିଥିବା ଲୋକସଭା ନିର୍ବାଚନରେ କଂଗ୍ରେସ ଦଳ ଓଡିଶାର ୨୧ଟି ଆସନରୁ ୨୦ଟିରେ ଜିଣିଥାଆନ୍ତି, କେବଳ କେନ୍ଦ୍ରାପଡା ଆସନରୁ ବିଜୁବାବୁ ଜନତା ଦଳ ପକ୍ଷରୁ ଜିଣିଥାଆନ୍ତି । ସେ ତତ୍‌ସଂଗେ ହୋଇଥିବା ବିଧାନସଭା ନିର୍ବାଚନରେ ମଧ କୌଣସି ଏକ ନିର୍ବାଚନ ମଣ୍ଡଳୀରୁ (ବୋଧହୁଏ ରାଜନଗର ନିର୍ବାଚନ ମଣ୍ଡଳୀରୁ) ଜିଣିଥାଆନ୍ତି । ସେ ଲୋକସଭା ଆସନରୁ ଇସ୍ତଫା ଦେଇ ବିଧାନସଭା ଆସନ ରଖିଲେ । ତେଣୁ କେନ୍ଦ୍ରାପଡା ଲୋକସଭା ଆସନ ପାଇଁ ଉପନିର୍ବାଚନ ଆରମ୍ଭ ହେଲା । ସେହି ଉପନିର୍ବାଚନରେ ବିଜୁବାବୁ ପ୍ରାର୍ଥୀ କଲେ ଆଳିର ଶ୍ରୀଯୁକ୍ତ ଶରତ ଦେଓଙ୍କୁ ଏବଂ କଂଗ୍ରେସ ଦଳ ପକ୍ଷରୁ ପ୍ରାର୍ଥୀ ହେଲେ ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ । ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଚାଲିଲା । ରାଧାନାଥ ରଥ ବିଜୁ ବାବୁଙ୍କ ସପକ୍ଷରେ ଥିଲେ । ବିଜୁ ବାବୁ ପ୍ରାଣମୂର୍ଚ୍ଛା ଚେଷ୍ଟା କରୁଥିଲେ ଶରତ ଦେଓଙ୍କୁ ଜିଣାଇବାପାଇଁ । ବୋଧହୁଏ ସେ କାହାଠାରୁ ମୋ ବିଷୟରେ ଶୁଣି ମୋତେ କନିକା ପଠାଇବାପାଇଁ ରାଧାନାଥ ବାବୁଙ୍କୁ ଅନୁରୋଧ କଲେ ।

ରାଧାନାଥ ରଥଙ୍କ ଅନୁରୋଧରେ ମୁଁ କନିକା ଗଲି । ମୋତେ ଗୋଟିଏ ପ୍ରଚାରଗାଡି ଓ ୪/୫ ଜଣ ଯୁବକଙ୍କୁ ସହକର୍ମୀ ଭାବେ ଦିଆଯାଇଥିଲା । ଆମ କନିକା ଅଂଚଳରେ ମୁଁ ଅନେକ ଗ୍ରାମରେ ବୁଲି ଶରତ ଦେଓଙ୍କ ସପକ୍ଷରେ ପ୍ରଚାର କଲି । ବିଜୁ ବାବୁ ସେ ସମୟରେ ହାଫ୍ ପ୍ୟାଣ୍ଟ ପିନ୍ଧି , ମଟର ସାଇକେଲ ପଛରେ ବସି ଘୂର୍ଣ୍ଣିବାତ୍ୟା ଭଳି ସମଗ୍ର ନିର୍ବାଚନ ମଣ୍ଡଳୀରେ ବୁଲୁଥିଲେ । ଦିନେ ସେ କନିକାର ଭିତର ଅଂଚଳ ବୁଲିସାରି ଫେରୁଥିଲେ । ସଂଜ ବେଳେ ମୁଁ ଏବଂ ବହୁ ଲୋକ ତାଙ୍କୁ ଭେଟିବାକୁ କାଳିକାପୁରଠାରେ ଅପେକ୍ଷା କରିଥିଲୁଁ । ସେ ମଟର ସାଇକେଲରେ ଆସି ପହଂଚି ଯାଆନ୍ତେ

ଲୋକମାନେ "ବିଜୁ ପଟ୍ଟନାୟକ ଜିନ୍ଦାବାଦ୍" ଧ୍ୱନି କରି ସ୍ଥାନ ପ୍ରକଂପିତ କଲେ । ସେଠାରେ ମୁଁ ତାଂକୁ ମୋର ପରିଚୟ ଦେଇ 'ସମାଜ' ସଂପାଦକ ରାଧନାଥ ରଥ ପଠାଇଛନ୍ତି ବୋଲି କହିଲି ଏବଂ ଦୃଢତାର ସହିତ କହିଲି ଯେ ଶରତ ଦେଓ କନିକାରୁ ବିପୁଳ ଭୋଟ ପାଇବେ ଏବଂ କେନ୍ଦ୍ରାପଡା ଉପନିର୍ବାଚନରେ ନିଶ୍ଚୟ ଜିଣିବେ । ସେ ଖୁସି ହୋଇ ମୋର କରମର୍ଦ୍ଦନ କଲେ ଏବଂ କହିଲେ "ତୁମେ ନିଶ୍ଚୟ ଦିନେ ରିୱାର୍ଡ ପାଇବ ।" ୫/୭ ମିନିଟ୍ ମଧ୍ୟରେ ସେ ଲୋକଙ୍କଠାରୁ ବିଦାୟ ନେଇ ଚାଲିଗଲେ ।

ଖୁବ୍ ଉତ୍ତେଜନା ଓ ପ୍ରତିଦ୍ୱନ୍ଦ୍ୱିତା ଭିତରେ ନିର୍ବାଚନ ଶେଷ ହେଲା, କିଂତୁ କେଉଁଠି ଅପ୍ରୀତିକର ଘଟଣା ଘଟି ନଥିଲା । ଶରତ ଦେଓ ବିପୁଳ ଭୋଟ ପାଇ ବିଜୟ ଲାଭ କଲେ । ତାହାର ପାଂଚ ବର୍ଷ ପରେ ଓଡିଶା ବିଧାନସଭାପାଇଁ ନିର୍ବାଚନ ହେଲା । ସେଥିରେ ବିଜୁବାବୁଙ୍କ ନେତୃତ୍ୱରେ ଜନତା ଦଳ ସଂଖ୍ୟାଗରିଷ୍ଠ ହେଲା ଏବଂ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲେ । ମୋର ସ୍ମରଣରେ ଆସିଲା "ତୁମେ ନିଶ୍ଚୟ ଦିନେ ରିୱାର୍ଡ ପାଇବ" । କିନ୍ତୁ କିଛି ଆଶାରେ କାହା ପାଖକୁ ଯିବା ମୋର ପ୍ରକୃତି ବିରୁଦ୍ଧ ଥିଲା ।

(ଳ) ମୋର ପିତାଙ୍କ ନାମ ରତ୍ନାକର ମହାପାତ୍ର, ଯେ କି ୩୨ ବର୍ଷ ମାତ୍ର ବୟସରେ ଇହଧାମରୁ ବିଦାୟ ନେଇଥିଲେ । ମୋର ମାତା କମଳା ଦେବୀ । ତାଙ୍କ ଭଳି ମାତା ଜଗତରେ ବିରଳ । ସେ ୭୧ ବର୍ଷ ବୟସରେ ଇହଧାମରୁ ବିଦାୟ ନେଇଥିଲେ । ମୋର ପିତାମହ ଭାଗୀରଥି ମହାପାତ୍ର ୧୯୨୨ କନିକା ପ୍ରଜା ଆନ୍ଦୋଳନରେ ଯୋଗ ଦେଇ ପୁଲିସ ଫଉଜଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇ ଅଳ୍ପ ଦିନ ପରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କୁ ମାଡ଼ ମାରି ସାତବେଣ୍ଟିଆ କରି ବୁଲାଯାଇଥିଲା । ରତ୍ନାକର ମହାପାତ୍ରଙ୍କର ଦୁଇ ପୁଅ ଓ ଗୋଟିଏ ଝିଅ- ଘନଶ୍ୟାମ, ଧନେଶ୍ୱର ଓ ପାର୍ବତୀ । ଘନଶ୍ୟାମ ୫୪ ବର୍ଷ ବୟସରେ କର୍କଟ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରିଥିଲେ । ତାଙ୍କର ପତ୍ନୀ ସତ୍ୟଭାମା, ଚାରିପୁଅ ଓ ଦୁଇ ଝିଅ । ଚାରିପୁଅ - ସତ୍ୟବ୍ରତ, ଦେବବ୍ରତ, ଶୁଭବ୍ରତ ଓ ସୁଧାବ୍ରତ । ଦୁଇ ଝିଅ- ସବିତା ଓ ସୁନୀତା । ଧନେଶ୍ୱର ମହାପାତ୍ରଙ୍କର ପତ୍ନୀ ଜୀବନ କୁମାରୀ, ଚାରି ଝିଅ ଓ ଗୋଟିଏ ପୁଅ । ଚାରି ଝିଅ- କବିତା, ବିନୀତା, ଅନୀତା ଓ ମମତା । ପୁଅ ଧର୍ମବ୍ରତ । ଘନଶ୍ୟାମ ମହାପାତ୍ରଂକର ଦୁଇ ଜାମାତା- ଶ୍ରୀ ବ୍ରଜବନ୍ଧୁ ଆଚାର୍ଯ୍ୟ (ଗଂଜାମ ଜିଲ୍ଲା ଖଲିକୋଟ) ଏବଂ ଶ୍ରୀ ମିହିର କୁମାର ଦାଶ (ବାଲେଶ୍ୱର ଜିଲ୍ଲା କରଂଜଆଡିଆ) । ଧନେଶ୍ୱର ମହାପାତ୍ରଙ୍କର ଚାରି ଜାମାତା- ପ୍ରଫେସର ଡକ୍ଟର ବିଜୟ କୁମାର ଶତପଥୀ (ଯାଜପୁର ଜିଲ୍ଲା ଶୁଳିଆ ଗ୍ରାମ), ଶ୍ରୀ ପ୍ରଫୁଲ୍ଲ କୁମାର ନନ୍ଦ (କେନ୍ଦ୍ରାପଡା ଜିଲ୍ଲା ପଟ୍ଟାମୁଣ୍ଡାଇ), ଶ୍ରୀମାନସ କୁମାର କବି

(ଭୁବନେଶ୍ୱର ବରମୁଣ୍ଡା) ଏବଂ ଡାକ୍ତର ଅଜିତ କୁମାର ତ୍ରିପାଠୀ (ଜଗତ୍‌ସିଂହପୁର ଜିଲ୍ଲା ବିଳାସପୁର ଗ୍ରାମ) । ପାର୍ବତୀ ଆଳି ପଦନୀପାଳ ନିକଟବର୍ତ୍ତୀ କଳମୋଡା ଶାସନ ଗ୍ରାମରେ ବିଭା ହୋଇଥିଲା । ସ୍ୱାମୀ- ପଣ୍ଡିତ ମହେଶ୍ୱର ନନ୍ଦ । ଆମ ଦୁଇ ଭାଇଙ୍କର ମିଳିତ ପରିବାରରେ କବିତା ସବୁଠାରୁ ବଡ ସନ୍ତାନ ଏବଂ ମମତା ସବୁଠାରୁ ସାନ । ସବୁ ପିଲାଙ୍କୁ ମୁଁ ସମାନ ଦୃଷ୍ଟିରେ ଦେଖିଛି, କାହାରି ଶିକ୍ଷାପାଇଁ ସ୍ୱତଂତ୍ର ଭାବରେ କିଛି ବ୍ୟବସ୍ଥା ବା ଖର୍ଚ୍ଚ କରିନାହିଁ, ଖର୍ଚ୍ଚ କରିବାର ସାମର୍ଥ୍ୟ ମଧ୍ୟ ମୋର ନଥିଲା । ସେମାନେ ନିଜ ଗୁଣକର୍ମ ଅନୁସାରେ ଯେ ଯେପରି ହୋଇଛନ୍ତି । ସବୁ ଜାମାତାମାନେ ମୋ ପ୍ରତି ଖୁବ୍ ସମ୍ମାନ ପ୍ରଦର୍ଶନ କରନ୍ତି । ପୁଅମାନେ ଓ ବୋହୂମାନେ ସମସ୍ତେ ମୋତେ ମାନନ୍ତି । ବୋହୂ ସଂଜୁର ଭକ୍ତିଭରା ସେବାଯତ୍ନରେ ଆମେ ଦୁହେଁ (ବୁଢାବୁଢୀ) ଆନନ୍ଦରେ ଅଛୁଁ ।

(ଳ) ମୋତେ ୨୧ ବର୍ଷ ହୋଇଥାଏ । ବରୀ ରାମଚନ୍ଦ୍ର ପୁରରେ ଗୋଟିଏ ନୂଆ ହାଇସ୍କୁଲ ଖୋଲା ହେଉଥିବା କଥା ମୋତେ କେହି ଜଣେ କହିଲେ । ମୁଁ ଗାଁରେ ଋଷ କରୁଥିଲି, ସଂସ୍କୃତରେ 'ଶାସ୍ତ୍ରୀ' ପରୀକ୍ଷା ପାଶ୍ କରିଥିଲି । ସେ ସମୟରେ ନୂଆ ଖୋଲୁଥିବା ହାଇସ୍କୁଲମାନଂକରେ 'ଶାସ୍ତ୍ରୀ' ଡିଗ୍ରୀଧାରୀ ପଣ୍ଡିତ ମଧ୍ୟ ରହିପାରୁଥିଲେ । ମୁଁ ଡାକରେ ଦରଖାସ୍ତଟିଏ ପଠାଇଲି । ପ୍ରାୟ ଏକ ମାସ ଭିତରେ ନିଯୁକ୍ତି ପତ୍ର ଆସିଲା । ସେଥିରେ ଲେଖାଥିଲା- ଯୋଗ ଦେଲାପରେ ଦରମା ସ୍ଥିର କରାଯିବ, ରହିବା ଓ ଖାଇବାପିଇବାର ସୁବନ୍ଦୋବସ୍ତ କରାଯିବ । ମୁଁ ସେଠାରେ ଯୋଗ ଦେବାକୁ ଗଲି ସେଇ ଟିଣ ସୁଟ୍‌କେଶଟି କାନ୍ଧରେ ଧରି, ଯେଉଁଟିକୁ ମୁଁ କୁଜଙ୍ଗ ମଦନମୋହନ ଟୋଲକୁ ଗଲାବେଳକୁ ନେଇଥିଲି । ଆଷାଢ ମାସ, ବର୍ଷାପାଣି ଆରମ୍ଭ ହୋଇଯାଇଥାଏ । ବିଲେ ବିଲେ ଡାଳିକାଏନ୍ଦା ଗ୍ରାମ ବାଟେ ଯାଇ, ଘାଟଡଙ୍ଗାରେ ଖରସୁଆ ନଈ ଛନ୍ଦାଘାଟ ପାର ହୋଇ, ଋଲି ଋଲି ଆଳି ଅତିକ୍ରମ କରି, ଘାଟ ଡଙ୍ଗାରେ ବ୍ରାହ୍ମଣୀ ନଈ ପାର ହୋଇ, ବିଲେ ବିଲେ ଯାଇ ପଟାମୁଣ୍ଡାଇ କେନାଲ ବଂଧ ଉପରକୁ ଉଠିଲି ଏବଂ କେନାଲ ବଂଧେ ବଂଧେ ଇନ୍ଦୁପୁର ପର୍ଯ୍ୟନ୍ତ ଯାଇ, ସେଠାରେ ଘାଟ ଡଙ୍ଗାରେ ବିରୂପା ନଈ ପାର ହୋଇ, ପ୍ରାୟ ୪ ମାଇଲ୍ ବିଲେ ବିଲେ ଗଲା ପରେ ମୁହଁ ଅଂଧାର ସଂଜବେଳକୁ ରାମଚନ୍ଦ୍ରପୁରରେ ପହଂଚିଲି । ସେ ଦିନ ତଅପୋଇ ଓଷା ଆରମ୍ଭ ହେଉଥାଏ । ସ୍କୁଲ ସେକ୍ରେଟାରିଙ୍କ ଝିଅ ତଅପୋଇ ଓଷା କରିଥାଏ । ସେଥିପାଇଁ ତାଙ୍କ ଘର ଆଗର ଦାଣ୍ଡରେ ଗହଳିଚହଳି ଲାଗିଥାଏ । ଦାଣ୍ଡରେ ଲୋକେ ଧାଡି ଧାଡି ବସି ଖାଉଥାନ୍ତି । ମୁଁ ଯାଇ ସେକ୍ରେଟାରିଙ୍କୁ ପରିଚୟ ଦିଅନ୍ତେ ସେ ଖୁସି ହୋଇ ସଂଗେ ସଂଗେ ଖାଇବାର ଓ ଶୋଇବାର ସୁବନ୍ଦୋବସ୍ତ କରିଦେଲେ । ମୁଁ ଖାଇସାରି ଯେତେବେଳେ ବିଶ୍ରାମ ନେଲି, ଯଦିଓ ମୁଁ

ଦିନ ତମାମ୍ ଚାଲିଚାଲି କ୍ଳାନ୍ତ ହୋଇପଡିଥିଲି, ତଥାପି ଆଖିକୁ ନିଦ ଆସିଲା ନାହିଁ । ଖାଲି ମୋ ବୋଉ କଥା ମନେ ପଡିଲା । ତା' ପୂର୍ବଦିନ ବୋଉ ଓ ମୁଁ ଆମ ବାୟାଗଂଙ୍କ ଧାନବିଲରେ ଘାସ ବାଛୁଥିଲୁଁ । ବିଲରେ ଭାରି ଘାସ ହୋଇଥିଲା । ବୋଉ ଏକାକୀ ସବୁ କିପରି ବାଛିବ, ଭାବି ଚିନ୍ତିତ ହୋଇ ପଡିଲି । ପୁଣି ବାୟାଗଂଙ୍କ ପାଖ ଆମ୍ବତୋଟା କଥା ମନେ ପଡିଲା । ମନ ବ୍ୟାକୁଳ ହୋଇ ଉଠିଲା । ସେକ୍ରେଟାରି ମଝିରେ ଆସି ମୋ ସହିତ ଆଳାପ କରିଗଲେ ଏବଂ ତା' ପରଦିନ ସ୍କୁଲରେ ଜଏନ୍ କରାଇବେ ଏବଂ ରହିବା, ଖାଇବା ପ୍ରଭୃତିର ସୁବ୍ୟବସ୍ଥା କରିବେ ବୋଲି କହିଗଲେ । ତଥାପି ମୋର ବ୍ୟାକୁଳତା ଅନୁଭବ ଦୂର ହେଲା ନାହିଁ । କୌଣସି ପ୍ରକାରେ ରାତିଟା ବିତାଇ ସକାଳୁ ସକାଳୁ ସେକ୍ରେଟାରିଙ୍କୁ ଜଣାଇ ଏବଂ ତାଂକର ବହୁତ ଅନୁରୋଧ ସତ୍ତ୍ୱେ ନମ୍ରତାର ସହିତ ବିଦାୟ ନେଇ ଫେରିଆସିଲି । ପୁଣି ମୁହଁ ଅଂଧାର ବେଳକୁ ଘରେ ଆସି ହାଜର । ବୋଉ ଆଶ୍ଚର୍ଯ୍ୟ ହୋଇଗଲା, କିଂତୁ ମନଦୁଃଖରୁ ରକ୍ଷା ପାଇଲା ।

(୯) ମୁଁ ପ୍ରତିବର୍ଷ ବାରମ୍ବାର ଗାଁକୁ ଯାଉଥିଲି ଏବଂ ଗାଁରେ ୧୫/୨୦ ଦିନ ଲେଖାଏଁ ରହୁଥିଲି । ଆଖ ପାଖ ଗାଁ ମାନଂକରେ ବୁଲୁଥିଲି । ଗାଁର ଗଛଲତା, ଖରସୁଆ ନଈକୂଳ, ଲୋକମାନେ, ପିଲାଛୁଆମାନେ, ପୋଖରୀ, ଜହ୍ନରାତି, କିଆବଣ, ଶିଆଳ ଭୁକା, ଅନ୍ଧାର ରାତିର ତାରାପୂର୍ଣ୍ଣ ଆକାଶ, ଭାଦ୍ରବ ମାସର କଇଁଫୁଲଭରା ଦଣ୍ଡାପାଟ, ଭାଗବତ ଘର, ହରିହାଟ, ସବୁ କିଛି ମୋର ଆକର୍ଷଣୀୟ ଥିଲା । ୭୦ ବର୍ଷ ବୟସରେ ଥରେ ଗାଁରେ ଥିଲାବେଳେ ଆମାଶୟ(ନାଳଝାଡା) ରୋଗରେ ପଡିଲି । ସେ ସମୟକୁ ଆମ ଗାଁର ଡାକ୍ତର ଶ୍ରୀରାମଚନ୍ଦ୍ର ସୂତାର ପରପୂରକୁ ଚାଲିଗଲେଣି । ରାମ ବାବୁ ଏଲ୍.ଏମ୍.ପି. ଡାକ୍ତର ଥିଲେ । (ତାଙ୍କ ସମୟରେ ଏମ୍.ବି.ବି.ଏସ୍ ନଥିଲା) ରାମ ବାବୁ ସରକାରୀ ଡାକ୍ତର ଚାକିରୀ ଛାଡି ନିଜ ଅଂଚଳର ଜନସାଧାରଣଙ୍କ ଚିକିତ୍ସାସେବା ଉଦ୍ଦେଶ୍ୟରେ ଗ୍ରାମରେ ଡାକ୍ତରଖାନାଟିଏ ଖୋଲି ଚିକିତ୍ସା କରୁଥିଲେ । ଧୀର, ସ୍ଥିର, ଶାନ୍ତ, ସରଳ, ଉଚ୍ଚମନା, ଉଦାର ବ୍ୟକ୍ତିଟିଏ । ସେ ଥିବା ପର୍ଯ୍ୟନ୍ତ ମୁଁ ନିଶ୍ଚିନ୍ତରେ ଗାଁରେ ରହିପାରୁଥିଲି । କାରଣ ଥଣ୍ଡା, କାଶ, ଜ୍ୱର, ଝାଡା, ଏମିତିକା କିଛି ହେଲା ମାତ୍ରେ ତାଙ୍କଠାରୁ ଔଷଧ ସେବନ କରି ଭଲ ହୋଇଯାଉଥିଲି । କିନ୍ତୁ ତାଙ୍କର ଦେହାନ୍ତ ପରେ ସମଗ୍ର ଅଂଚଳରେ ଆଉ କେହି ଜଣେ ହେଲେ ଶିକ୍ଷାପ୍ରାପ୍ତ ଡାକ୍ତର ନଥିଲେ, ଏବେ ମଧ୍ୟ କେହି ନାହାନ୍ତି । ଯେଉଁ ଡାକ୍ତରମାନେ ଅଛନ୍ତି, କେହି ଡାକ୍ତରି ଶିକ୍ଷା ପାଇନାହାନ୍ତି । ମୋର ଆମାଶୟ ବଢିବାରୁ ଜଣେ ଅଣଶିକ୍ଷାପ୍ରାପ୍ତ ଡାକ୍ତରଂକୁ ଡାକିବାକୁ ପଡିଲା । ସେ ଆସି ଆଗେ ମୋ ଦେହରେ (ସର୍ବରୋଗହର ?) ପେନିସିଲିନ୍

ଇଂଜେକ୍‌ସନଟିଏ ଫୋଡିଦେଲେ । ସଂଗେ ସଂଗେ ପ୍ରଚଣ୍ଡ କଂପ ଆସି ସର୍ବାଙ୍ଗ ଏପରି ଥରିଲା ଯେ ମୁଁ ଚିତ୍କାର କରିବାରେ ଲାଗିଲି । ଛାତି ଫାଟିଗଲା ପରି ବୋଧ ହେଲା । ମୋ ଚିତ୍କାର ଶୁଣି ଲୋକମାନେ ଦଉଡିଆସିଲେ । ୭/୮ ଜଣ ଲୋକ ମୋତେ ଶୁଆଇ ଦେଇ ମାଡିବସି ଧରିଲେ । ଶେଷ ମୁହୂର୍ତ୍ତ ଆସିଗଲା ଭଳି ଅଚେତ ହୋଇ ପଡିରହିଲି । ଯାହା ହେଉ, ବଂଚିବାର ସୌଭାଗ୍ୟ ଥିଲା, କିଛି ସମୟ ପରେ କଂପ କମିଲା, ମୁଁ ଆଖି ଖୋଲିଲି । ସେହିଦିନଠାରୁ ମୁଁ ଏମିତି ଡରିଗଲି ଯେ ଆଉ ଗାଁରେ ରହିବାକୁ ଇଛା କଲିନାହିଁ । ଗଲେ ଦିନେ ଦିଦିନ ରହି ଫେରିଆସିଲି । ମୋର ଏକାନ୍ତ ଇଛା ଥିଲା ଶେଷ ଜୀବନ ଗାଁରେ କଟାଇବି । ମୋର ଶେଷ ପ୍ରାଣବାୟୁ ଗାଁର ସ୍ୱଚ୍ଛ ବାୟୁମଣ୍ଡଳରେ ମିଶିଯିବ । କିଂତୁ ତାହା ହୋଇପାରୁ ନାହିଁ । ଆମ ଗାଁଠାରୁ ୭/୮ କି.ମି. ଦୂରରେ ବ୍ଲକ୍ ଡାକ୍ତରଖାନାଟିଏ ଅଛି । କିନ୍ତୁ ସେଠି ଅଧିକାଂଶ ସମୟରେ ଡାକ୍ତର ନଥାନ୍ତି । ଉଚ୍ଚ ରକ୍ତଚାପ ରୋଗୀଙ୍କୁ ମଧ୍ୟ କଟକ ଆଣିବାକୁ ପଡେ । ବାଟରେ କେତେକଙ୍କର ପ୍ରାଣବାୟୁ ଉଡିଯାଏ । ତେଣୁ ଗାଁରେ ରହିବାକୁ ମୋର ଏ ବୃଦ୍ଧ ବୟସରେ ଆଉ ସାହସ ହେଉ ନାହିଁ । କବିମାନଙ୍କର ଗାଁମମତାଭରା କବିତା ଗୁଡିକ ଏବଂ ଟି.ଭି. ଦୃଶ୍ୟ ମୋତେ ଆବେଗରେ ଅଭିଭୂତ କରିଦିଏ, ସହରର ଧୂଆଁଧୂଳିମୟ ପ୍ରଦୂଷିତ ବାୟୁମଣ୍ଡଳରେ ମୁଁ ଅତିଷ୍ଠ ହୋଇଉଠେ, ତଥାପି ସହରରେ ଶେଷ ଜୀବନ ବିତାଇବା ଛଡା ଅନ୍ୟ ଗତି ନାହିଁ ।

(ଶ) ମୋର ବାଳକ ବୟସବେଳେ, ବୋଧହୁଏ ୧୩/୧୪ ବର୍ଷ ବେଳେ, ମୁଁ ସଂସ୍କୃତ ପଢିବା ନିମନ୍ତେ ବାଲେଶ୍ୱରକୁ ଯାଇଥିଲି । ବାଲେଶ୍ୱରରେ ଶ୍ରୀରାମଚନ୍ଦ୍ର ଭଂଜ ଟୋଲ ନାମରେ ଏକ ସଂସ୍କୃତ ଟୋଲ ଥିଲା । ଶୁଣିଲି, ସେଠାରେ ଗରିବ ପିଲାଙ୍କ ପାଇଁ ଖାଇବା ଓ ରହିବାର ବ୍ୟବସ୍ଥା କରାଯାଏ । ସେଇଠିକି ଯାଇ ଖାଇବାକୁ ପାଇ ସଂସ୍କୃତ ଶିକ୍ଷା କରିପାରିବି ବୋଲି ଭାବିଲି । ତା' ପୂର୍ବରୁ ତହସିଲଦାର କୁଂଜ ବାବୁ ମୋତେ ସଂସ୍କୃତ ପଢାଇବା ନିମନ୍ତେ ପୁରୀ ନେଇଯାଇଥିଲେ, ମୁଁ କିନ୍ତୁ ପ୍ରବଳ ବାତଜ୍ୱରରେ ଆକ୍ରାନ୍ତ ହୋଇ ଫେରି ଆସିଥିଲି । ତାହା ପରେ ବାଲେଶ୍ୱର ଟୋଲ କଥା ଶୁଣି ସେଠାକୁ ପଢିବା ଆଶାରେ ଗଲି । ଶ୍ରୀରାମଚନ୍ଦ୍ର ଭଂଜ ଟୋଲର ଜଣେ ପଣ୍ଡିତଙ୍କ କଥା ମୋର ମନେ ପଡୁଛି-ପଣ୍ଡିତ ରମାକାନ୍ତ ମିଶ୍ର । ଜ୍ଞାନୀ, ଧୀରସ୍ଥିର, ଉଦାରହୃଦୟ, ପ୍ରତିଭାବନ୍ତ ପଣ୍ଡିତ । ସେ ମୋତେ ପୁତ୍ରତୁଲ୍ୟ ଆଦର କଲେ ଏବଂ ଗୋଟିଏ ମଠରେ ମୋର ଦିଓଳି ଖାଇବାର ଓ ଟୋଲଘରେ ଶୋଇବାର ବ୍ୟବସ୍ଥା କରିଦେଲେ । ମଠଟି, ମୋର ଯାହା ମନେ ପଡୁଛି, ଶ୍ରୀଚୈତନ୍ୟପୂଜା ମଠ ଥିଲା । ସହରରୁ ଏକ ରାସ୍ତା ପଡିଥିଲା ସୁବର୍ଣ୍ଣରେଖା ନଦୀଘାଟ ପର୍ଯ୍ୟନ୍ତ । ସହରଠାରୁ କିଛି ଦୂର ପରେ ରାସ୍ତା କଚ୍ଚା ଥିଲା । ସେହି କଚ୍ଚା

ରାସ୍ତାର ଶେଷ ଆଡକୁ ଅର୍ଥାତ୍ ନଦୀ ପାଖାପାଖି ଏକ ବଡ ଶ୍ମଶାନପଡିଆ ଥିଲା । ଶ୍ମଶାନ ପଡିଆ ପୂର୍ବରୁ ବାମ ପଟକୁ ଏକ ଗଳି ରାସ୍ତା ପଡିଥିଲା ମଠ ଆଡକୁ । କୌଣସି ରାସ୍ତାରେ ବିଜୁଳି ଆଲୁଅ ନଥିଲା, ଥିଲା ଖୁଣ୍ଟି ମାନଙ୍କରେ ଲଣ୍ଠନ ଆଲୁଅ ବ୍ୟବସ୍ଥା । ମୋତେ ଦିନ ବେଳା ଟୋଲରୁ ଆସି ମଠରେ ପ୍ରସାଦ ସେବନ କରି ଟୋଲକୁ ଫେରିଯିବାରେ ଅସୁବିଧା ହେଲା ନାହିଁ । ଅସୁବିଧା ହେଲା ରାତିବେଳା । କାରଣ ମଠରେ ପ୍ରାୟ ରାତି ନଅଟାକୁ ପ୍ରସାଦ ସେବନ ହେଉଥିଲା । ମୁଁ ପ୍ରସାଦ ସେବନ କରିସାରି ଟୋଲକୁ ଫେରିଲାବେଳକୁ ରାତି ଦଶଟା ଉପରକୁ ହୋଇଯାଉଥିଲା । ତେଣୁ ଶ୍ମଶାନ ପାଖ ଦେଇ ଗଲାବେଳେ ମୋତେ ଭୟ ଲାଗୁଥିଲା । ଦିନେ ତିନି ଚାରିଟା ଶିଆଳ ମୋ ପାଖ ଦେଇ ଦଉଡି ଗଲେ । ମୁଁ ଖୁବ୍ ଭୟଭୀତ ହୋଇଗଲି ଏବଂ ଦଉଡିଲି । ଦଉଡିବା ମଧ୍ୟ ନିରାପଦ ନଥିଲା । କାରଣ ମାଟି ଉପରେ ବହୁତ ଗେଣ୍ଡା ଚାଲୁଥିଲେ । ସେତେବେଳେ ବାଲେଶ୍ୱର ସହରର ସନ୍ତସନ୍ତିଆ ଅଂଚଳମାନଂକରେ ବହୁତ ଗେଣ୍ଡା ବାହାରୁଥିଲେ । ମୋ ଗୋଡରେ ଜୋତା କି ଚପଲ ନଥିଲା । ଦୈବାତ୍ ଗୋଟାଏ ଗେଣ୍ଡା ଉପରେ ମୋ ଡାହାଣ ପାଦ ଗୋଇଠି ପଡିଗଲା । ଗେଣ୍ଡାଟା ମୋ ଗୋଇଠି କାଟିଦେଲା । ଗୋଇଠି ଟାଣ ଅଂଶ ହୋଇଥିବାରୁ, ଯାହା ହେଉ, ବେଶୀ କଟିନଥିଲା । କୌଣସି ପ୍ରକାରେ ଟୋଲକୁ ଆସି ଗୋଡରେ ପଟି ବାନ୍ଧି ଶୋଇଲି । ଭଲ ଲାଗିଲା ନାହିଁ । ତାହାର ଦୁଇ ଦିନ ମାତ୍ର ପରେ ପଣ୍ଡିତ ମହାଶୟଙ୍କୁ ବିନୟର ସହିତ ପ୍ରଣାମ ଜଣାଇ ଆସି ବାଲେଶ୍ୱର ରେଳ ଷ୍ଟେସନରେ ଟିକେଟ କାଟି ଭଦ୍ରକକୁ ଟ୍ରେନ୍ ଧରିଲି ଏବଂ ବଡ କଷ୍ଟରେ ଘରେ ପହଂଚିଲି ।

(ଷ) ମନରେ ମୋର ଦୁଇଟି ଅବଶୋଷ ରହିଗଲା, ଯାହାକୁ ମୁଁ କରିବାକୁ ଆଶା ରଖିଥିଲି, କରିପାରିଥାନ୍ତି, କିନ୍ତୁ କରିପାରିଲି ନାହିଁ । ଗୋଟିଏ ହେଉଛି ମୋ ଗାଁରେ ଗୋଟିଏ +୨ ବିଜ୍ଞାନ ବାଳିକା କଲେଜ କରିବା ଏବଂ ଅନ୍ୟଟି ହେଉଛି ଗୋଟିଏ ଉତ୍ତମ ଶବ୍ଦତାତ୍ତ୍ୱିକ ଅଭିଧାନ କରିବା । +୨ ବିଜ୍ଞାନ କଲେଜ ଉଦ୍ଦେଶ୍ୟରେ ହିଁ ବାଳିକା ବିଦ୍ୟାଳୟଟିକୁ ମୂଳରୁ ପ୍ରଶସ୍ତ ଢାଂଚାର କରିଥିଲି । କିନ୍ତୁ ତାହା କେତୋଟି ଅବୋଧ ଲୋକଂକଦ୍ୱାରା ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇ ଅଗ୍ରଗତି କରିପାରିଲା ନାହିଁ । ତେବେ ମୋ ଗାଁରେ ବିଳମ୍ବରେ ହେଲେ ମଧ୍ୟ ନିଶ୍ଚୟ ଗୋଟିଏ +୨ ବିଜ୍ଞାନ କଲେଜ ହେବ, ଏ ଆଶା ମୋର ରହିଛି । କେବଳ ମୋ ଗାଁରେ ନୁହେଁ, ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ହେବ । ଦ୍ୱିତୀୟ ଆଶାଟି ଥିଲା ଶବ୍ଦତାତ୍ତ୍ୱିକ ଅଭିଧାନ । ମୋର ଅନୁଭବ, ମୁଁ ସଂସ୍କୃତ ଭାଷାରେ ଗଭୀର ବ୍ୟୁତ୍ପତ୍ତି ଲାଭ କରିଥିଲି । ପାଳି, ପ୍ରାକୃତ, ଅପଭ୍ରଂଶ, ଓଡିଆ,

ହିନ୍ଦୀ ଓ ବଂଗଳା ଭାଷାରେ ମଧ୍ୟ ମୋର ପ୍ରବୀଣତା ଥିଲା । ସାହିତ୍ୟ ଅପେକ୍ଷା ଭାଷାତତ୍ତ୍ୱ ଓ ବ୍ୟାକରଣ ପ୍ରତି ମୋର ଅଧିକ ରୁଚି ହୋଇଥିଲା, କିନ୍ତୁ ଶବ୍ଦତାତ୍ତ୍ୱିକ ଅଭିଧାନ ନିମନ୍ତେ ମୁଁ ସୁବିଧାସୁଯୋଗ ପାଇ ପାରିଲି ନାହିଁ । ତେବେ ପରେ କେହି ବିଦ୍ୱାନ୍ ବା ବିଦ୍ୱାନ୍‌ମଣ୍ଡଳି ଏହା ନିଶ୍ଚୟ ସଂପାଦନ କରିବେ, ଏ ଆଶା ମୋର ରହିଛି ।

(ସ) ମୋର ଯେ ଅନେକ ଦୁର୍ଗୁଣ ନଥିଲା, ତା ନୁହେଁ । ମୁଖ୍ୟ ଦୁର୍ଗୁଣ ଥିଲା ତିନିଗୋଟି - (୧) ଅପମାନକୁ ସହିନେବା ଶକ୍ତିର ଅଭାବ, (୨) ନିଜ ସ୍ୱାର୍ଥ ପାଇଁ କାହାଠାରୁ ଅନୁଗ୍ରହ ଲାଭ କରିବାକୁ ଅନିଚ୍ଛା ଏବଂ (୩) ଯେଉଁ କର୍ମ ମୋପକ୍ଷରେ ଦୁଃସାଧ୍ୟ ବା ଅସାଧ୍ୟ, ସେପରି କର୍ମରେ ପ୍ରବେଶ କରିବାକୁ ଆଗ୍ରହ । ଏହି ତିନୋଟି ଦୁର୍ଗୁଣ ତଥା ଅନ୍ୟାନ୍ୟ ସାମୟିକ ଦୁର୍ଗୁଣ ମୋ ଜୀବନର ଅଧିକ ବିକାଶ କରାଇଦେଲା ନାହିଁ ଏବଂ ଅନେକ ଦୁଃଖକଷ୍ଟର କାରଣ ମଧ୍ୟ ହେଲା । ତେବେ ମୋର ଦୁର୍ଗୁଣଗୁଡ଼ିକ ପାଇଁ ମୁଁ ନିଜକୁ ଧିକ୍କାର କରିନାହିଁ କି କରୁନାହିଁ । କାରଣ, ସେଗୁଡ଼ିକ ଥିଲା ମୋର ସହଜାତ ଦୁର୍ଗୁଣ । ସହଜାତ ଦୁର୍ଗୁଣକୁ ଦମନ କରିବା ଭାରି କଷ୍ଟକର, ଏପରିକି ଅସମ୍ଭବ ମଧ୍ୟ ।

(ହ) ମୁଁ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲାବେଳେ ଥରେ ସାହିତ୍ୟିକମାନଙ୍କ ମଧ୍ୟରେ ପ୍ରବଳ ଯୁକ୍ତିତର୍କ ଲାଗିଥିଲା । (୧୯୬୦ ପୂର୍ବର କଥା) ସେତେବେଳେ 'ସମାଜ'ର ସାପ୍ତାହିକ ସାହିତ୍ୟ ଆଲୋଚନା ପୃଷ୍ଠାରେ ବିଦ୍ୱାନ୍‌ମାନେ ଉଚ୍ଚକୋଟୀର ପ୍ରବନ୍ଧମାନ ଲେଖୁଥିଲେ ଏବଂ ବହୁ ପାଠକ ତାହା ପଢୁଥିଲେ । ସାହିତ୍ୟର ଖୁବ୍ ଆଦର ଥିଲା । ଥରେ ଶ୍ରୀ ଜଗଦ୍‌ବନ୍ଧୁ ମହାପାତ୍ର, ଆଇ.ଏ.ଏସ୍. ସେଥିରେ ବୈଦେହୀଶ ବିଳାସ କାବ୍ୟର 'ବିତଳକୁ ଆଲିଙ୍ଗନ' ଛାନ୍ଦର ଆଲୋଚନା କରି ଭଂଜଙ୍କର ଦୋଷ ଦର୍ଶାଇଲେ । ସେ ଦର୍ଶାଇଲେ ଯେ ଭଂଜଙ୍କର ଅନେକ ଉପମା ମନଇଚ୍ଛା କଳ୍ପିତ, ତେଣୁ ମୂଲ୍ୟହୀନ । ଉଦାହରଣ ସ୍ୱରୂପ - "ବହେ ମକର କେତନ ଉଚ୍ଛନ୍ନରତି ସମାନ" । ଏଥିରେ ଉପମାଟି ହେଉଛି- ଉଚ୍ଛନ୍ନରତି ଲୋକ (ରତି ସମ୍ଭୋଗ କରିବାକୁ ବ୍ୟଗ୍ର ହୋଇପଡ଼ିଥିବା ଲୋକ) ଯେପରି ମକରକେତନ (କନ୍ଦର୍ପଲକ୍ଷଣ) ବହନ କରେ, ଗଙ୍ଗା ସେହିପରି ମକରକେତନ (କୁମ୍ଭୀରଲକ୍ଷଣ) ବହନ କରେ । ଏଭଳି ଉପମାକୁ ଜଗଦ୍‌ବଂଧୁ ବାବୁ ମୂଲ୍ୟହୀନ ବୋଲି ମତ ଦେଲେ । ତାଙ୍କର ମତ ଥିଲା - ଏଭଳି ଅର୍ଥଗତ ସାମ୍ୟ ନଥିବା ଉପମାକୁ ଗ୍ରହଣ କରାହେଲେ ମନଇଚ୍ଛା ଉପମା ପ୍ରୟୋଗ କରିହେବ । ତାଙ୍କ ସମାଲୋଚନାର ପ୍ରତିସମାଲୋଚନା କଲେ ଶ୍ରୀ ରଜତକୁମାର କର, ଡାକ୍ତର ଶୈଳେଶ୍ୱର ନନ୍ଦ, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ପ୍ରମୁଖ । ସେତେବେଳେ ବିଚ୍ଛନ୍ଦ ଚରଣ

ପଟ୍ଟନାୟକଙ୍କ ପ୍ରତିଷ୍ଠିତ 'କଳିଙ୍ଗ ଭାରତୀ' ଖୁବ୍ ପ୍ରସିଦ୍ଧି ଲାଭ କରିଥାଏ ଏବଂ ଉକ୍ତ ଅନୁଷ୍ଠାନଦ୍ୱାରା ଭଂଜସାହିତ୍ୟର ବିସ୍ତୃତ ଆଲୋଚନା ହେଉଥାଏ, ବିଶେଷତଃ ଭଂଜଜୟନ୍ତୀ ଅବସରରେ । ଶୈଳେଶ୍ୱର ବାବୁ ପ୍ରମୁଖ ଭଂଜପ୍ରେମୀ ପ୍ରତିପକ୍ଷମାନେ ଜଗଦ୍‌ବଂଧୁ ବାବୁଙ୍କର ବକ୍ତବ୍ୟର ଲକ୍ଷ୍ୟକୁ ବୁଝିନପାରି ଅନ୍ୟାନ୍ୟ ପ୍ରସଙ୍ଗକୁ ଗତି କଲେ ଏବଂ ଉକ୍ତ ଉପମାରେ ଅର୍ଥସାମ୍ୟ ଅଛି ବୋଲି ମଧ ଜବରଦସ୍ତି ଦର୍ଶାଇଲେ । ଉଭୟପକ୍ଷଙ୍କର ସଂସ୍କୃତ ଅଳଂକାର ଶାସ୍ତ୍ରରେ ବିଶେଷ ପାଣ୍ଡିତ୍ୟ ନଥିବାର ମୋର ଅନୁଭବ ହେଲା । ତେଣୁ 'ସମାଜ'ର ସାହିତ୍ୟପୃଷ୍ଠାରେ "ଭଂଜକାବ୍ୟରେ ଶାସ୍ତ୍ରାନୁସାରିତା" ଶୀର୍ଷକ ଏକ ପ୍ରବନ୍ଧ ଲେଖିଲି । ସେଥିରେ ପ୍ରତିପାଦନ କଲି ଯେ "ବନ୍ଦେ ମକରକେତନ ଉଚ୍ଛନ୍ନରତି ସମାନ" ଅଂଶଟିରେ ସଂସ୍କୃତ ଅଳଂକାର ଶାସ୍ତ୍ର ଅନୁଯାୟୀ ଶ୍ଳେଷମୂଳକ 'ପରିସଂଖ୍ୟା' ଅଳଂକାର ହୋଇଛି । ପରିସଂଖ୍ୟା ଅଳଂକାରରେ ଶବ୍ଦସାମ୍ୟ ମଧ ଗ୍ରହଣୀୟ, ଏହି ତଥ୍ୟକୁ ମୁଁ ସାହିତ୍ୟ ଦର୍ପଣ, କାଦମ୍ବରୀ, ଦଶକୁମାର ଚରିତ ଆଦି ଗ୍ରନ୍ଥରୁ ଉଦାହରଣ ଦେଇ ସମସ୍ତଙ୍କର ହୃଦ୍‌ବୋଧ କରାଇଥିଲି । ସେହି ଉପାଦେୟ ଲେଖାଟି ଦୁର୍ଭାଗ୍ୟତଃ ନଷ୍ଟ ହୋଇଯାଇଛି ।

(କ୍ଷ) ବର୍ତ୍ତମାନ ଶରୀରଯାତ୍ରା ବ୍ୟତୀତ ମୋର ମନରେ ଆଉ କୌଣସି କର୍ମସ୍ପୃହା ନାହିଁ କି କୌଣସି କାମନା ନାହିଁ । କେବଳ ଗୋଟିଏ କାମନା ପୋଷଣ କରୁଛି- ମୋ ଦେଶରେ ଗଣତଂତ୍ର ସ୍ୱଚ୍ଛ ହେଉ, ନୈତିକତା ପ୍ରତିଷ୍ଠିତ ହେଉ ଏବଂ ସମାଜବାଦ ସ୍ଥାୟୀ ହେଉ । ଗୋଟିଏ କ୍ଷୁଦ୍ର ଲୋକ ହିସାବରେ ମୋର ଲେଶମାତ୍ର ମୂଲ୍ୟ ନଥିଲା କି ନାହିଁ । କିନ୍ତୁ ମୁଁ ପତ୍ରପତ୍ରିକାମାନଙ୍କରେ ବିଭିନ୍ନ ବିଷୟରେ ଯେତିକି ଚିନ୍ତା ପ୍ରକାଶ କରିଛି ଏବଂ ଭାଷା ତଥା ସାହିତ୍ୟରେ ଯେତିକି କାମ କରିଛି ଓ ଦିଗ୍‌ଦର୍ଶନ ଦେଇଛି, ତାହାର କିଛି ମୂଲ୍ୟ ଅଛି ବୋଲି ମୁଁ ଭାବୁଛି । ଓଡିଶାରେ ୨୦୧୨ ଗ୍ରାମପଂଚାୟତ ନିର୍ବାଚନରେ ନିର୍ବାଚନ କମିଶନର ଯେଉଁ କଟକଣା ଜାରିକଲେ, ସେଥିରେ ମୁଁ ଅତ୍ୟନ୍ତ ଆନନ୍ଦ ଅନୁଭବ କଲି । କାରଣ, ସଂବିଧାନ ଅନୁସାରେ ପଂଚାୟତ ନିର୍ଦ୍ଦଳୀୟ ହେଲେ ଗ୍ରାମାଂଚଳ କିପରି ସୁଖଶାନ୍ତିପୂର୍ଣ୍ଣ ହୋଇପାରିବ, ଏ ବିଷୟରେ ମୁଁ ଅନେକ ଗୁଡିଏ ଲେଖା ପତ୍ରପତ୍ରିକାମାନଙ୍କରେ ଲେଖିଥିଲି । ବହୁ ବର୍ଷତଳେ ମୁଁ ନାରୀନିର୍ଯ୍ୟାତନା ବିଷୟରେ ଲେଖାମାନ ଲେଖିଥିଲି, ଯାହାକି ସେ ସମୟରେ ସେ ବିଷୟରେ ଥିଲା ପ୍ରଥମ ଲେଖା । ନାରୀମାନଙ୍କର ଧର୍ମଗତ ଅଧିକାର ଆଦି ବିଷୟରେ ମଧ ଲେଖିଥିଲି । ବର୍ତ୍ତମାନ ସେମାନଙ୍କର ଉନ୍ନତି ହେଉଥିବାର ଦେଖି ମୁଁ ଆନନ୍ଦ ଅନୁଭବ କରୁଛି । କିନ୍ତୁ ବର୍ତ୍ତମାନ ପ୍ରଚଣ୍ଡ ଅନୀତି, ଦୁର୍ନୀତି, ଦୁରାଚାର, ବିଶୃଂଖଳା, ଉପଦ୍ରବ ତଥା ହିଂସାକାଣ୍ଡ ଆଦି

ଘଟୁଥିବାର ଦେଖି ମନରେ ଦାରୁଣ ଦୁଃଖ ଓ ହତାଶାଭାବ ସୃଷ୍ଟି ହେଉଛି । ମୁଁ ଜୀବନର ପୂର୍ବାର୍ଦ୍ଧରେ ଯେଉଁ ସୁନ୍ଦର ମୂଲ୍ୟବୋଧ ଅନୁଭବ କରିଥିଲି, ତାହା ବର୍ତ୍ତମାନ ଆଉ ନାହିଁ । ସମୟ ବହୁତ ବଦଳିଯାଇଛି । ତଥାପି ମୋର ବିଶ୍ୱାସ ଅଛି, ଦେଶବାସୀମାନେ ବିବେକୀ ହେବେ ଏବଂ ଦେଶରେ ସୁଖଶାନ୍ତି ଆସିବ । ମୋ ଦେଶ ବୃକ୍ଷଲତା ପରିପୂର୍ଣ୍ଣ ହେଉ, ବିଭିନ୍ନ ଫସଲରେ ଧରଣୀ ସର୍ବଦା ସବୁଜ ସୁନ୍ଦର ଦିଶୁ, ପିଲାମାନେ ବିନା ଦୁଃଖ କଷ୍ଟରେ ସୁବିଧାରେ ଶିକ୍ଷା ପାଆନ୍ତୁ, ଆବାଳବୃଦ୍ଧବନିତା ସୁବିଧାରେ ସ୍ୱାସ୍ଥ୍ୟସେବା ପାଆନ୍ତୁ, ଦେଶରୁ ଇଂରାଜୀ ଭାଷାର ପ୍ରାଧାନ୍ୟ ହଟୁ, ଏହିପରି ସ୍ୱପ୍ନମାନ ଦେଖି ଦେଖି ମୁଁ ଜୀବନର ଅନ୍ତିମ ପର୍ଯ୍ୟାୟ ଅତିବାହିତ କରୁଛି । ମୁଁ ମନେ କରେଁ, ଜୀବନ ଗୋଟିଏ ପ୍ରଦୀପ ତୁଲ୍ୟ । ପ୍ରଦୀପଟି ଲିଭିଗଲେ ତାହାର ଅସ୍ତିତ୍ୱ ଯେପରି ଲୋପ ପାଏ, ଜୀବନ ସରିଗଲେ ତାହାର ଅସ୍ତିତ୍ୱ ସେହିପରି ଲୋପ ପାଏ । ପ୍ରଦୀପ ଆଲୋକ କୁଆଡେ ଗଲା, ଭାବିବା ଯେପରି ନିରର୍ଥକ, ସେହିପରି ଜୀବନ କୁଆଡେ ଗଲା, ଭାବିବା ନିରର୍ଥକ । ତେଣୁ ଶାନ୍ତିରେ ଶେଷ ନିଃଶ୍ୱାସ ତ୍ୟାଗ କରିବା ହିଁ ଜୀବନର ଲକ୍ଷ୍ୟ ବୋଲି ମୁଁ ମନେ କରେଁ । ମୁଁ ଯାହା ଯାହା ଭଲ କରିଛି, ଯାହା ଯାହା ବା ମନ୍ଦ କରିଛି, ସେସବୁ ବିଷୟରେ ମୁଁ ଆଉ ଭାବୁନାହିଁ । ସେସବୁ ବିଷୟ ମୋ ସ୍ମୃତିରୁ କ୍ରମଶଃ ଲିଭିଲିଭିଯାଉଛି । ମୋର ଜନ୍ମ ତାରିଖ ୫.୮.୧୯୩୨ । କିନ୍ତୁ ମୋ ଚାକିରି କାଗଜପତ୍ରରେ ଜନ୍ମତାରିଖ ରହିଛି ତା୨୫.୯.୧୯୩୧, କାହିଁକି ଏପରି ହୋଇଛି, ମୁଁ ସ୍ମରଣ କରିପାରୁନାହିଁ । ମୋ ପିତାଙ୍କ ମୃତ୍ୟୁ ବେଳକୁ ମୁଁ ଚାରିବର୍ଷର ହୋଇଥିଲି । ଯଦିବା ମୃତ୍ୟୁପରେ ପୁନର୍ଜନ୍ମ ଥାଏ ଓ ମୁଁ ପୁଣି ମନୁଷ୍ୟଜନ୍ମ ପାଏଁ, ତେବେ ସେହି ମନୁଷ୍ୟ ଜନ୍ମରେ ମୋତେ ଶିକ୍ଷକ ଜୀବନଟିଏ ମିଳୁ, ଏହା ମୋର କାମନା ।

●●●

# ଏକ ସୁନ୍ଦର ସଂସ୍କୃତିର ଅବସାନ

ମୋ ପିଲାଦିନେ ତଥା ତରୁଣ ସମୟରେ ଲୋକମାନେ ନିଜ ନିଜର କୌଳିକ ଜୀବିକାରେ ଚଳୁଥିଲେ । ଆମ ଗାଁରେ ବଢ଼େଇ ଚାରିଘର ଥିଲେ । ସେମାନେ ଲଙ୍ଗଳ ତିଆରି କରୁଥିଲେ । ବଢ଼େଇସାହି ଦାଣ୍ଡ କଡ଼କୁ ଏକ ପ୍ରକାଣ୍ଡ ବରଗଛ ଥିଲା । ବରଗଛର ଘଞ୍ଚ ଛାଇତଳେ ବଢ଼େଇମାନେ କାମ କରୁଥିଲେ । ଚାଷୀମାନେ ଖଣ୍ଡେ ଖଣ୍ଡେ ବନିକାଠ ବା ସୁନ୍ଦରୀ କାଠ ଆଣି ଲଙ୍ଗଳ କରିବା ପାଇଁ ରଖିଦେଇ ଯାଉଥିଲେ । ଈଷ କରିବା ପାଇଁ ଖଣ୍ଡେ ଖଣ୍ଡେ ଲମ୍ବା କାଠ ମଧ୍ୟ ରଖିଦେଇ ଯାଉଥିଲେ । ଚାଷ ପାଇଁ ଯେତେ କାଠ ଉପକରଣ ଯଥା ଲଙ୍ଗଳ, ଈଷ, କଣ୍ଡି, ମଇ, ବିଦା ପ୍ରଭୃତି, ସେସବୁ ପାଇଁ ଆବଶ୍ୟକ କାଠ ଚାଷୀମାନେ କନିକା ଜଙ୍ଗଲରୁ ଆଣୁଥିଲେ ।

କନିକାର ସମୁଦ୍ର ଉପକୂଳ ଘଞ୍ଚ ଜଙ୍ଗଲ ଥିଲା । ରାଜାଙ୍କ ବିନା ଅନୁମତିରେ କେହି ଜଙ୍ଗଲରୁ ଖଣ୍ଡିଏ ମଧ୍ୟ କାଠ ଆଣିପାରୁ ନ ଥିଲେ । ଚାଷ ପାଇଁ ହେଉ ବା ଘର ତିଆରି ପାଇଁ ହେଉ ବା ଜାଳେଣି ପାଇଁ ହେଉ, ଆଗେ କଚେରିରେ ଧାର୍ଯ୍ୟ ପାଉଣା ଦେଇ ପାଉତି ହାସଲ କରିବାକୁ ପଡୁଥିଲା । ଲୋକମାନେ ପାଉତି ହାସଲ କରି ଡଙ୍ଗାଯୋଗେ ନଦୀପଥରେ ଯାଇ, ଜଙ୍ଗଲରୁ କାଠ ହାଣି ଆଣୁଥିଲେ, ବଢ଼େଇମାନେ ସେସବୁକୁ ହାଣି ଲଙ୍ଗଳ ପ୍ରସ୍ତୁତ କରୁଥିଲେ । ସେହି ସ୍ଥାନକୁ ବଢ଼େଇଶାଳ କୁହାଯାଉଥିଲା । ଖରାଦିନେ ଗଛଛାଇରେ ବଢ଼େଇଶାଳ ଖୁବ୍ ଜମୁଥିଲା । ବହୁଲୋକ ବସି ନିଜ ଲଙ୍ଗଳ କାମ କରାଉଥିଲେ । ଆମ ଗାଁ ବଢ଼େଇମାନଙ୍କ ମଧ୍ୟରେ ମହନି ସୂତାର ଲଙ୍ଗଳ ତିଆରି କରିବାରେ ବେଶୀ ଦକ୍ଷ ଥିଲେ । ଲଙ୍ଗଳ କାମ ଛଡ଼ା ବଢ଼େଇମାନେ ଲୋକଙ୍କର ଘର

ତିଆରିରେ ଛାତକାମ ଏବଂ କବାଟ, ଝରକା କାମ ମଧ୍ୟ କରୁଥିଲେ । ସବୁ ଲୋକଙ୍କର ଘର ମାଟିକାନ୍ଥ ଓ ଚାଳ ଛାତ ଥିଲା । ଘର ତିଆରି କାମରେ ଆମ ଗାଁର ଦଣ୍ଡଧରି ସୂତାର, ଅପର୍ତ୍ତି ସୂତାର, ବିପ୍ର ଚରଣ ସୂତାର, କପିଳ ସୂତାର, କାଳିନ୍ଦୀ ସୂତାର ଆଦିଙ୍କର ନାମ ବେଶ୍ ଜଣାଶୁଣା ଥିଲା ।

ଆମ ଗାଁରେ କମାରଶାଳ ଥିଲା । ମାଗୁଣି ଓଝା ଓ ତାଙ୍କ ପୁଅ ଚକ୍ରଧର ଓଝା କମାର କାମ କରୁଥିଲେ । କମାରଶାଳରୁ ଲୋକମାନେ ଲଙ୍ଗଳଫାଳ, ଦାଆ, କଣ୍ଡା, କୁଗୁଲି, କଟୁରି, କାଙ୍କ, କୋଦାଳ, କୁରାଢ଼ି ଆଦି ତିଆରି କରାଇ ନେଉଥିଲେ । କମାରଶାଳରେ ଲୁହାକୁ ଭାତିରେ ତତାଇ ବିଭିନ୍ନ ସରଞ୍ଜାମ ଗଢ଼ା ହେବାର ଦୃଶ୍ୟ ଚମତ୍କାର ବୋଧ ହେଉଥିଲା । ପାଚିଲା ଲୁହାକୁ ବାଡ଼େଇଲେ ସେଥିରୁ ଚକ୍‌ମକ୍ ଛିଟିକାମାନ ବାହାରୁଥିଲା । ଆମେ ପିଲାମାନେ ଆଶ୍ଚର୍ଯ୍ୟ ହୋଇ ତାହା ଦେଖୁଥିଲୁ ।

ତେଲିସାହିରେ ଘଣା ପଡୁଥିଲା । ଆମ ଗାଁରେ ଦୁଇଘର ତେଲିଙ୍କର ଘଣା ଥିଲା ଏବଂ ପାଖ 'ଭୋଗରା' ଗାଁରେ ତେଲିଙ୍କର ଘଣା ଥିଲା । ଲୋକମାନେ ସୋରିଷ, ଖସା, ଜଡ଼ା, ପୋଲାଙ୍ଗଫଳ ପ୍ରଭୃତି ଘଣାରେ ପେଷାଇ ତେଲ କରି ନେଉଥିଲେ । ସେଥିପାଇଁ ଏହିସବୁ ତୈଳବୀଜ ବହୁ ପରିମାଣରେ ଚାଷ କରାଯାଉଥିଲା । ଦୁଇଟି ବଳଦ କିମ୍ବା ଗୋଟିଏ ବଳଦ ଘଣାଗଣ୍ଡି ଚାରିପଟେ ବୁଲି ଘଣାକୁ ଟାଣୁଥିଲେ । ତେଣୁ ଘଣାରୁ କେଁକଟର ଶବ୍ଦ ଶୁଭୁଥିଲା । ଚଇତ ମାସ ପୁନେଇଁରେ ତେଲିମାନେ ଘଣା ପୂଜା କରୁଥିଲେ, ଘୋଡ଼ାନାଚ କରାଉଥିଲେ ଏବଂ ଗାଁରେ ଭୋଗ ବାଣ୍ଟୁଥିଲେ ।

ଆମ ଗାଁରେ ଦୁଇ ଘର ଧୋବା ଥିଲେ - ମଙ୍ଗୁଳି ସେଠି ଓ ଭଜନି ସେଠି । ଧୋବା ଓ ଧୋବଣୀମାନେ ଘରୁ ଘରୁ ଲୁଗା ନେଇ ସଫା କରି ଦେଇ ଆସୁଥିଲେ । କଦଳୀଗଛରୁ କଦଳୀ କାନ୍ଧି କାଟି ନିଆଗଲା ପରେ ଧୋବା ଧୋବଣୀମାନେ ସେହି କଟାଗଛକୁ ଚିରି, ପଟକା କରି ଖରାରେ ଶୁଖାଇ ଯାଉଥିଲେ ଏବଂ ତାହା ଶୁଖିଗଲା ପରେ ଜାଳି 'ଖାର' (ପାଉଁଶ) କରୁଥିଲେ । ସେହି ଖାରକୁ ପାଣିରେ ଗୋଳାଇ ଲୁଗା ସିଝାଉଥିଲେ ଏବଂ ଚିକ୍କଣ କାଠଗଣ୍ଡି ଉପରେ ଧୀରେ ଧୀରେ ବାଡ଼େଇ ସଫା ହୋଇ ଆସିଥିବା ଲୁଗାକୁ ଶୁଦ୍ଧ ମନେ କରାଯାଉଥିଲା । ଏହି କାମ ପାଇଁ ଧୋବାଘର ଅନ୍ୟମାନଙ୍କ ଘରୁ ବାର୍ଷିକ 'ବର୍ତ୍ତନ' (ଧାନଚାଉଳ କିମ୍ବା ଟଙ୍କା ପଇସା) ନେଉଥିଲେ ।

ଆମ ଗାଁରେ ଗୋଟିଏ ମାଳୀଘର ଥିଲା । ମାଳୀ ଥିଲେ ବୃନ୍ଦାବନ ରଣା । ସେ ଫୁଲ ସଂଗ୍ରହ କରି, ମାଳ ଗୁନ୍ଥି କେତେଖଣ୍ଡି ଗାଁର ଦେବତାଙ୍କ ଆସ୍ଥାନରେ ଦେଇ

ଆସୁଥିଲେ । ଦିଅଁ ଦେବତାଙ୍କୁ ସ୍ଥାପନା କରିଥିବା ଲୋକଙ୍କଠାରୁ ସେଥିପାଇଁ 'ବର୍ତ୍ତନ' ପାଉଥିଲେ କିମ୍ବା ଦିଅଁ ଦେବତାଙ୍କ ନାମରେ ଥିବା ଜମି ଚାଷ କରୁଥିଲେ ।

ଦୁଇଟି ଘର ଥିଲେ ଧୀବର । ସେମାନଙ୍କୁ କୈବର୍ତ୍ତ ମଧ୍ୟ କୁହାଯାଉଥିଲା । ଧୀବରଙ୍କର ଜୀବିକା ଥିଲା ଡଙ୍ଗା ତିଆରି କରିବା ଏବଂ ନଈରେ ଡଙ୍ଗା ବାହିନେବା । ଡଙ୍ଗା ତିଆରି କରିବାକୁ ଚାହୁଁଥିବା ଲୋକମାନେ ଧୀବରଙ୍କ ଦ୍ୱାରା ତିଆରି କରାଉଥିଲେ । ଆମ ଗାଁର ବନ୍ଧୁ ବାରିକ ଓ ତାଙ୍କ ପୁଅ ଶ୍ରୀଧର ବାରିକ, ଆଉ ମଧ୍ୟ ପାଖ ପଡ଼ାଗାଁ 'ମାଣ୍ଡିଆବାଲି"ର ମାଧବ ବେହେରା ଡଙ୍ଗା ତିଆରି କରିବାରେ ଦକ୍ଷ ଥିଲେ ।

ଆମ ଗାଁର ପଡ଼ୋଶୀ ଗାଁ 'ସିକୋ' । ସିକୋରେ କେତେକ ନିଆରି ଘର ଥିଲେ । ନିଆରିମାନଙ୍କର ପ୍ରଧାନ ଜୀବିକା ଥିଲା ଚୂଡ଼ାକୁଟି ବିକିବା । ନିଆରି ଘରର ସ୍ତ୍ରୀ ଲୋକମାନେ ରାତି ପାହାନ୍ତାରୁ ଉଠି ଚୂଡ଼ା କୁଟୁଥିଲେ ଏବଂ ତାହା ବିକିବା ପାଇଁ ପାଖ ଆଖ ଗାଁମାନଙ୍କୁ ଯାଉଥିଲେ । ଢିଙ୍କିକୁଟା ଚୂଡ଼ା ଖାଇବାକୁ ଖୁବ୍ ଭଲ ଲାଗୁଥିଲା । 'ସିକୋ'ରୁ ଚୂଡ଼ାକୁଟା ପାହାର ଶୁଭିଲେ ଆମେ ରାତି ପାହିଆସିଲାଣି ବୋଲି ଜାଣୁଥିଲୁ । ନିଆରି ଘରର ପୁରୁଷମାନେ ଜାଲବୁଣା, ଚାଷକାମ ଆଦି କରୁଥିଲେ ।

ପାଖ ଗାଁ 'ଖଣ୍ଡେଇତା'ରେ ଦୁଇ ତିନିଘର ତନ୍ତୀ ଥିଲେ । ଖଣ୍ଡେଇତାରେ ମୋ ମାମୁ ଘର । ମୁଁ ମାମୁ ଘରକୁ ଗଲେ ତନ୍ତୀ ଘରକୁ ଯାଉଥିଲି ଏବଂ ଲୁଗାବୁଣା ଦେଖୁଥିଲି । ମୋତେ ବଡ଼ କୌତୂହଳ ବୋଧ ହେଉଥିଲା । କାଠରେ ତିଆରି ତନ୍ତକୁ ଗୋଡ଼ରେ କାଠଖଣ୍ଡିଏ ଦ୍ୱାରା ମାଡ଼ି, ତଳ ଉପର କରି, ତା' ଭିତରେ କଣ୍ଡା ଚଳାଇ, ପୁଣି ତନ୍ତକୁ ଚାପିଦେଇ ଲୁଗା ବୁଣିବାରେ ତନ୍ତୀମାନେ ନିପୁଣ ଥିଲେ ।

'କୋରନ୍ଦ' ଗ୍ରାମ ପ୍ରସିଦ୍ଧ ଥିଲା କୁମ୍ଭାରମାନଙ୍କ ପାଇଁ । କୁମ୍ଭାରମାନେ ମାଟିରେ ହାଣ୍ଡି, ମାଠିଆ, ଠେକି, ଜାହାଲା, ଶରା ଆଦି ତିଆରି କରୁଥିଲେ । ସେମାନେ ବାହୁଙ୍ଗାର ଦୁଇ ପାଖରେ ମାଟିପାତ୍ର ସବୁକୁ ସୁନ୍ଦର ଭାବରେ ଛନ୍ଦି ବିକିବାକୁ ନେଉଥିଲେ । ସେତେବେଳେ ରୋଷେଇ'କାମ କେବଳ ମାଟିପାତ୍ରରେ ହେଉଥିଲା ।

'ମେଘପୁର' ଓ 'ଭୋଗରା' ଗ୍ରାମରେ ଦୁଇ ତିନିଘର ବାରିକ (ଭଣ୍ଡାରି) ଥିଲେ । ସେମାନେ ଲୋକମାନଙ୍କର ବାଳକଟା ଓ ନିଶଦାଢ଼ି ଖିଅର କରୁଥିଲେ । ସେଥିପାଇଁ ସେମାନେ ବାର୍ଷିକ ବର୍ତ୍ତନ ପାଉଥିଲେ । ବିବାହ, ବ୍ରତ ଆଦି ଶୁଭ କାମରେ ମଧ୍ୟ ସେମାନଙ୍କର ଆବଶ୍ୟକତା ଥିଲା । ସେ କାର୍ଯ୍ୟ ପାଇଁ ସେମାନେ ସ୍ୱତନ୍ତ୍ର ପାଉଣା ନେଉଥିଲେ ।

ବ୍ରାହ୍ମଣ ଜାତିର ଲୋକ ଦିଅଁଦେବତାଙ୍କ ପୂଜା ଓ ପୁରୋହିତ କାମ କରୁଥିଲେ । ପୁରୋହିତ କାମରେ ଦକ୍ଷିଣା ସ୍ୱରୂପ ଚାଉଳ ପାଉଥିଲେ । ସବୁ ଗାଁରେ ସବୁ ଲୋକ ଆଶ୍ୱିନ ମାସରେ ପୟାଶ୍ରାଦ୍ଧ (ପାର୍ବଣ ଶ୍ରାଦ୍ଧ) କରୁଥିଲେ । ଶ୍ରାଦ୍ଧରୁ ପୁରୋହିତଙ୍କୁ ବହୁତ ପରିମାଣରେ ଚାଉଳ ମିଳୁଥିଲା । ଶ୍ରାଦ୍ଧ, ମେଳା, ସତ୍ୟନାରାୟଣ ପୂଜା, ବିଭା, ବ୍ରତ ପ୍ରଭୃତିରୁ ମଧ୍ୟ ଚାଉଳ ମିଳୁଥିଲା । କେହି କେହି ଚାଉଳ ପରିବର୍ତ୍ତେ ଅନ୍ୟ ଶସ୍ୟଦ୍ରବ୍ୟ କିମ୍ବା ଟଙ୍କାପଇସା ମଧ୍ୟ ଦେଉଥିଲେ ।

ନାହାକ (ଜ୍ୟୋତିଷୀ) ମାନେ ଶୁଭ କାର୍ଯ୍ୟରେ ପୁରୋହିତମାନଙ୍କ ସଂଗେ ଯୋଗ ଦେଉଥିଲେ । ପ୍ରତ୍ୟେକ ପୁଣ୍ୟ କାର୍ଯ୍ୟରେ ନାହାକମାନଙ୍କର ଆବଶ୍ୟକତା ପଡୁଥିଲା । ସେମାନେ ମଧ୍ୟ ପୁରୋହିତଙ୍କ ପରି ଦକ୍ଷିଣା ପାଉଥିଲେ । ତା'ଛଡ଼ା ସେମାନେ କୋଷ୍ଠୀ ତିଆରି କରି, କୋଷ୍ଠୀ ଦେଖି ଶୁଭାଶୁଭ ଫଳ ଗଣନା କରି, ବିବାହ ମେଳକ, ଘର ତିଆରି ପୂର୍ବରୁ ସୂତା ଧରିବା ପ୍ରଭୃତି କାମ କରି ଜୀବିକାର୍ଜନ କରୁଥିଲେ । ଘର ତିଆରି ପୂର୍ବରୁ ନାହାକ ଶୁଭଦିନ ନିର୍ଣ୍ଣୟ କରି ଆସି ନୂଆ ସୂତା ଦ୍ୱାରା ମାପଚୁପ କରି ନୂଆ ଘର ପାଇଁ ଯୋଜନା ପ୍ରସ୍ତୁତ କରି ଦେଉଥିଲେ । ତାପରେ ଘର ତିଆରି କାମ ଆରମ୍ଭ ହେଉଥିଲା ।

ଆମ ଗାଁରେ ଓ ପାଖ ଗାଁ 'ମହାଦେଇ ଆଡ଼ିଆ'ରେ ତିନି ଚାରିଘର ଗୁଡ଼ିଆ ଥିଲେ । ଗୁଡ଼ିଆ ଘର ନବାତ, ଖୁଦୁମା, ଜିଲିପି, ଉଖୁଡ଼ା, ଖଜା, ସାତପୁରି ପ୍ରଭୃତି ତିଆରି କରି ଗାଁ ଗାଁରେ ବିକୁଥିଲେ । ଯାନିଯାତ୍ରାକୁ ମଧ୍ୟ ନେଇ ବିକୁଥିଲେ । ତା'ଛଡ଼ା ପ୍ରତିଦିନ ମୁଢ଼ି ଭାଜି ଘରେ ଏବଂ ଗାଁ ଗାଁରେ ବୁଲି ବିକୁଥିଲେ ।

ଆମ ଗାଁକୁ ଲାଗିଥିବା 'ମହାଦେଇ ଆଡ଼ିଆ' ଗାଁର ଶେଷ ମୁଣ୍ଡକୁ କଣ୍ଡରା, ପାଣ ଓ ଗୋଖା ଜାତିର ଲୋକମାନେ ବାସ କରୁଥିଲେ । ପାଣମାନେ ବିବାହ, ବ୍ରତ ଆଦି ଶୁଭ କାର୍ଯ୍ୟରେ ଢୋଲ, ମହୁରୀ, ନାଗର, ଝାମ, ତେଲେଙ୍ଗି ବାଜା ଆଦି ବଜାଉଥିଲେ । ବାଦ୍ୟ ଉପକରଣ ତିଆରି ମଧ୍ୟ କରୁଥିଲେ । ମୃଦଙ୍ଗ ଓ ଢୋଲକି (ଛୋଟ ଢୋଲ) ତିଆରି କାର୍ଯ୍ୟରେ ଭ୍ରମରବର ଜେନାଙ୍କର ସୁନାମ ଥିଲା । କୀର୍ତ୍ତନ ଦଳମାନେ ତାଙ୍କଠାରୁ ମୃଦଙ୍ଗ ଏବଂ ଯାତ୍ରାଦଳମାନେ ଢୋଲକି ଓ ମର୍ଦ୍ଦଳବାଜା ତିଆରି କରାଇ ନେଉଥିଲେ । କଣ୍ଡରାମାନଙ୍କର ଜୀବିକା ଥିଲା ବାଉଁଶପାତିଆ, ବେତ, ଝାଙ୍କର ପ୍ରଭୃତିରେ ଝାଙ୍କା, ପାଛିଆ, ଟୋକେଇ, ଗଉଣି, ସିଉରା ପ୍ରଭୃତି ବୁଣିବା । ଗୋଖାମାନଙ୍କର ଜୀବିକା ଥିଲା ମାଛ ଧରିବା । ସେମାନେ ନଈଚଢ଼ାରେ ନେର (ବାଉଁଶକାଠିରେ ବୁଣା ହୋଇଥିବା ଜାଲ) ଘେରାଇ ମାଛ ଧରୁଥିଲେ । ଗୋଖଣ ମାନେ ଗାଁ ଗାଁ ବୁଲି ମାଛ ବିକୁଥିଲେ ।

ଗୋଖା, ପାଣ ଓ କଣ୍ଡରାମାନେ (ଧୋବାମାନେ ମଧ୍ୟ) କାହିଁକି କେଜାଣି ଅଛୁଆଁ ଜାତି ବୋଲି ବିବେଚିତ ହେଉଥିଲେ । କିନ୍ତୁ ମୋ ବାପା ରତ୍ନାକର ମହାପାତ୍ର ଗାନ୍ଧିଜୀଙ୍କ ଆଦର୍ଶ ଗ୍ରହଣ କରି ଗୋଖା, ପାଣ, କଣ୍ଡରା ଆଦି ଜାତିର ଲୋକଙ୍କୁ ଛୁଉଁଥିଲେ ଏବଂ ସଞ୍ଜବେଳେ ସେମାନଙ୍କୁ ଆମ ପୋଖରୀକୂଳ ଆମ୍ବଗଛ ତଳେ ଲଣ୍ଠନ ଆଲୁଅରେ ପଢ଼ାଉଥିଲେ । ମୁଁ 'ମହାଦେଈ ଆଡ଼ିଆ'ର ଇନ୍ଦରା ଭାଇ, ମନ୍ଦରା ଭାଇ, ଭମରା ଭାଇ ଆଦିଙ୍କ ଠାରୁ ଏହା ଶୁଣିଛି । (ଇନ୍ଦ୍ରମଣି ମଳିକ ଓ ମନ୍ଦରଧର ମଳିକ ଜାତିରେ ଗୋଖା ଏବଂ ଭ୍ରମରବର ଜେନା ପାଣ ଥିଲେ ।)

ଗଉଡ଼ ଘରର ଜୀବିକା ଥିଲା ଗାଈ ଓ ମଇଁଷି ପାଳିବା ଏବଂ ଦୁଧ, ଦହି, ଛେନା, ଘିଅ ପ୍ରଭୃତି ଦ୍ରବ୍ୟ ବିକିବା । 'ଭୋଗରା' ଗ୍ରାମ ଏହିସବୁ ଦ୍ରବ୍ୟ ପାଇଁ ପ୍ରସିଦ୍ଧ ଥିଲା । ଗୋପାଳୁଣୀମାନେ ମୁଣ୍ଡରେ ଦହିପସରା ମୁଣ୍ଡେଇ ଗାଁ ମାନଙ୍କରେ ବିକୁଥିଲେ । ଲୋକେ ବରାଦ ଦେଇ ଖାଣ୍ଟି ମଇଁଷି ଦୁଧରେ ବସାଦହି କରାଇ ନେଉଥିଲେ । ଗରିବ ଗୋପାଳମାନେ ଲୋକମାନଙ୍କ ବିବାହଘରେ ବରପାଲିଙ୍କି ଓ କନ୍ୟାସବାର କାନ୍ଧେଇ ନେଉଥିଲେ । ଗରିବ ଗୋପାଳମାନେ ଲୋକମାନଙ୍କ ବିଭାଘରେ ବରପାଲିଙ୍କି ଓ କନ୍ୟାସବାରି କାନ୍ଧେଇ ନେଉଥିଲେ । ଏହା ମଧ୍ୟ ସେମାନଙ୍କର ଏକ ଜୀବିକା ଥିଲା ।

ଆମ ଗାଁ ପାଖ 'ବାଦରଇ' ଗ୍ରାମରେ ଦୁଇଘର ପାଟରା ଥିଲେ । ପାଟରା ଜାତିର ସ୍ତ୍ରୀ ଲୋକମାନେ ପାଟଫୁଲି (ଝିଅ-ବୋହୂଙ୍କ ମୁଣ୍ଡରେ ଘେନା ହେବା ରଙ୍ଗୀନ ସୂତାଫୁଲ), ସିନ୍ଦୂର, ଅଳତା, ଶଙ୍ଖା, କାଠପାନିଆଁ, ହଳଦୀ ଆଦି ବିକୁଥିଲେ । ପୁରୁଷମାନେ ପାଟଯୋଡ଼, ପାଟଶାଢ଼ି, ପାଟଚାଦର ପ୍ରଭୃତିର ବ୍ୟବସାୟ କରୁଥିଲେ ।

ଚଷା ଜାତିର ଲୋକ ଥିଲେ ସର୍ବାଧିକ । ସେମାନଙ୍କ ଜୀବିକା ଥିଲା ଚାଷ । ଅନ୍ୟାନ୍ୟ ଜାତିର ଲୋକ ମଧ୍ୟ ସେମାନଙ୍କର ନିଜ ନିଜ ଜାତିଗତ ଜୀବିକା ସହିତ ଚାଷ କରୁଥିଲେ । ପ୍ରକୃତ ଚଷାମାନଙ୍କୁ 'ଖଣ୍ଡାୟତ' ବା 'ଖଣ୍ଡେଇତ' କୁହାଯାଉଥିଲା । ସେମାନେ ଦଶହରା ମହାଷ୍ଟମୀରେ ଖଣ୍ଡାପୂଜା କରୁଥିଲେ । ଅନ୍ୟାନ୍ୟ ଜାତିର ଲୋକମାନେ ସେହିଦିନ ନିଜ ନିଜ ଜାତିଗତ ଜୀବିକାର ଉପକରଣଗୁଡ଼ିକୁ ପୂଜା କରୁଥିଲେ । ଚଷାମାନେ ଧାନ, ମୁଗ, ବିରି, କୋଳଥ, ହରଡ଼, ଖେସାରି, ଆଖୁ, ଝୋଟ, ଧୂଆଁପତ୍ର, ଖସା, ସୋରିଷ, ଜଡ଼ା ପ୍ରଭୃତି ବିଭିନ୍ନ ପ୍ରକାର ଫସଲ ଚାଷ କରୁଥିଲେ ।

ଏହିପରି ଭାବରେ ବିଭିନ୍ନ ଜାତିପାଟକମାନଙ୍କର ବିଭିନ୍ନ ଜୀବିକା ଥିଲା । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରିଜାତି ବିଭିନ୍ନ ଜୀବିକା ଦୃଷ୍ଟିରୁ ଛତିଶି ପାଟକରେ ବିଭକ୍ତ ଥିଲେ । ବଢ଼େଇ ପୁଅ ତା' ବାପାଭାଇଙ୍କ ଠାରୁ ବଢ଼େଇକାମ ଶିଖୁଥିଲା, କମାର ପୁଅ

ତା' ବାପ ଭାଇଙ୍କଠାରୁ କମାରକାମ ଶିଖୁଥିଲା, କୁମ୍ଭାର ପୁଅ ତା' ବାପ ଭାଇଙ୍କଠାରୁ କୁମ୍ଭାରକାମ ଶିଖୁଥିଲା, ପାଣପୁଅ ତା' ବାପ ଭାଇଙ୍କଠାରୁ ପାଣକାମ ଶିଖୁଥିଲା, ବ୍ରାହ୍ମଣପୁଅ ତା' ବାପ ଭାଇଙ୍କଠାରୁ ବ୍ରାହ୍ମଣ କାମ ଶିଖୁଥିଲା । ଏହିପରି ବିଭିନ୍ନ ଜୀବିକା କୌଳିକ ଥିଲା ଅର୍ଥାତ୍ କୁଳଗତ ଥିଲା, ତେଣୁ ବେକାରି ନ ଥିଲା । 'ବେକାରି' ବୋଲି କାହାରି ଧାରଣା ମଧ୍ୟ ନ ଥିଲା । ମୁଁ ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିବାରୁ ସାତବର୍ଷ ବୟସ ବେଳୁ ଠାକୁରବାଡ଼ିମାନଙ୍କରେ ଠାକୁରପୂଜା କରୁଥିଲି । ସେଥିପାଇଁ ବୋଉ ଆମ ଦୁଇ ଭାଇଙ୍କର ବ୍ରତୋପନୟନ କରି କାନ୍ଧରେ ପଇତା ପକାଇ ଦେଇଥିଲା । କାନ୍ଧରେ ପଇତା ପଡ଼ିଲେ ବ୍ରାହ୍ମଣପିଲା ସମସ୍ତଙ୍କର 'ନନା' ବୋଲାଉଥିଲେ । ମୁଁ ସାତବର୍ଷ ବୟସବେଳୁ 'ଧନୀନନା' ବା 'ଧନିଆନା' ହୋଇଯାଇଥିଲି ।

ପ୍ରତ୍ୟେକ ଘରେ ସ୍ତ୍ରୀଲୋକମାନେ ଧାନ ଉଁସେଇ, ଖରାରେ ଶୁଖେଇ, ଢିଙ୍କିରେ କୁଟି ଚାଉଳ କରୁଥିଲେ । ଗରିବ ଘରର କେତେକ ସ୍ତ୍ରୀଲୋକ, ବିଶେଷତଃ ଗରିବ ବିଧବା ସ୍ତ୍ରୀଲୋକ ଚଳନ୍ତି ଘରର ସ୍ତ୍ରୀଲୋକଙ୍କୁ ଏହିସବୁ କାମରେ ସାହାଯ୍ୟ କରି ପେଟ ପୋଷୁଥିଲେ ଏବଂ ନିଜ ପିଲାପିଲିଙ୍କୁ ମଧ୍ୟ ପୋଷୁଥିଲେ । ଢିଙ୍କିଶାଳରେ ସ୍ତ୍ରୀ ଲୋକମାନଙ୍କର ମେଳ ହେଉଥିଲା ଏବଂ ହସଖୁସି ଗପ ଚାଲୁଥିଲା । ହାୟ ! ବର୍ତ୍ତମାନ ଆଉ ଗାଁରେ କାହାରି ଘରେ ଢିଙ୍କି ନାହିଁ । ଧାନକୁଟା ହେଉଛି କଳରେ, ଚୂଡ଼ାକୁଟା କଳରେ, ମୁଢ଼ିଚୂଡ଼ା ଭଜା ମଧ୍ୟ କଳରେ ହେଉଛି । ଗରିବ ବିଧବା ସ୍ତ୍ରୀଲୋକଙ୍କର ପେଟ ପୋଷିବାର ସେ ରାହାଟି ଆଉ ନାହିଁ ।

ସେ ସମୟରେ ପ୍ରାୟ ସମସ୍ତେ ଏକାନ୍ନବର୍ତ୍ତୀ ପରିବାରର ଥିଲେ । ମୋ ଗାଁର ସୂତାର ଘର, ସାହୁ ଘର, ରାଉତ ଘର, ରାୟ ଘର, ଦାସ ଘର, ନାହାକ ଘର, ଧଳ ଘର, ବେହେରା ଘର, ଏମିତି ଏକାନ୍ନବର୍ତ୍ତୀ ପରିବାରମାନ ଥିଲେ । ସୂତାର ପରିବାର ଥିଲେ ଭଗବାନ ସୂତାର (କନିକା ରାଜାଙ୍କଠାରୁ 'ମହାପାତ୍ର' ଉପାଧି ପାଇଥିଲେ), ସୂର୍ଯ୍ୟମଣି ସୂତାର ଓ କୃଷ୍ଣଚରଣ ସୂତାର ତିନି ଭାଇ । ତିନି ଭାଇଙ୍କର ତିନି ସ୍ତ୍ରୀ ଓ ଏଗାର ବାର ପିଲା । ସମସ୍ତେ ଏକ ପରିବାର ରୂପେ ଚଳୁଥିଲେ । ତିନିଭାଇ ଓ ତିନି ଜାଆଙ୍କ ମଧ୍ୟରେ ଆଦୌ ମନ ଅମେଳ ନ ଥିଲା । ସାହୁଘର ଥିଲେ ଦୁଇଭାଇ - ନେତ୍ରାନନ୍ଦ ସାହୁ ଓ ବଂଶୀଧର ସାହୁ । ଦୁଇ ଭାଇଙ୍କର ଦଶ ଏଗାର ପିଲା । ଦୁଇ ଭାଇ ଏକ ମନ ଏକ ଚିତ୍ତରେ ଚଳୁଥିଲେ । 'ରାଉତ ଘର' ବୋଇଲେ ଦୁଇଟି ରାଉତ ଘରକୁ ବୁଝାଉଥିଲା । ହାଟ ପାଖ କୀର୍ତ୍ତନ ରାଉତଙ୍କ ଘର ଏବଂ ଗାଁ ମଝିରେ ଆନନ୍ଦ ରାଉତଙ୍କ ଘର । କୀର୍ତ୍ତନ ରାଉତଙ୍କର ପାଞ୍ଚ ପୁଅ - କୃଷ୍ଣ, କେଶବ, ହରି, ମାଧବ, ଦଇତାରି ।

ସମସ୍ତେ ଏକ ପରିବାର ରୂପେ ଚଳୁଥିଲେ । ବୃଦ୍ଧ କୀର୍ତ୍ତନ ରାଉତ ଆମ ଗାଁ ପଣ୍ଡାଘର (ଦର୍ଶନି ପଣ୍ଡା ଓ ଭାଗବତ ପଣ୍ଡା)ଙ୍କର ଠାକୁର ପିଣ୍ଡାରେ ପ୍ରତିଦିନ ସଞ୍ଜବେଳେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଆଗରେ ଜଣାଣ ଗାଉଥିଲେ - 'କୃଷ୍ଣ କେଶବ ହରି / ମାଧବ ଦଇତାରି / ହା କୃଷ୍ଣ ବୋଲି ଜୀବ ଯାଉ ହେ ମହାବାହୁ ।' ଠାକୁରଙ୍କ ନାମ ସର୍ବଦା ତୁଣ୍ଡରେ ଧରିବା ଉଦ୍ଦେଶ୍ୟରେ ସେ ନିଜର ପୁଅମାନଙ୍କର ସେପରି ନାମକରଣ କରିଥିଲେ । ଗାଁ ମଝିରେ ରାଉତ ଘର ଥିଲେ - ଆନନ୍ଦ ରାଉତ, ନରି ରାଉତ, ପରି ରାଉତ, ଦରି ରାଉତ, ବ୍ରହ୍ମାନନ୍ଦ ରାଉତ, ଗଜେନ୍ଦ୍ର ରାଉତ ଓ ଅଣାକାର ରାଉତ । ଅଣାକାରଙ୍କୁ ପିଲାଦିନୁ ବାବାଜି କରି ଦିଆଯାଇଥିଲା । ଅନ୍ୟ ସବୁ ଭାଇ ଏକ ପରିବାର ଥିଲେ । (ଅବଶ୍ୟ ବହୁ ପରେ ଚଳିବାର ସୁବିଧା ନିମନ୍ତେ ଦୁଇ ପରିବାରରେ ବିଭକ୍ତ ହୋଇଥିଲେ । ଅଣାକାର ଥିଲା ମୋର ଘନିଷ୍ଠ ସାଙ୍ଗ ।)

ରାୟ ପରିବାର ଥିଲେ - ଜନ୍ମେଜୟ, କୃଷ୍ଣଚନ୍ଦ୍ର, ଯଦୁମଣି, ଜଗଦୀଶ, ଯାଦବାନନ୍ଦ ଓ ଯଶୋବନ୍ତ ଛଅ ଭାଇ । ପିତା - ପରୀକ୍ଷିତ ରାୟ । ସମସ୍ତେ ଏକାନ୍ନବର୍ତ୍ତୀ ପରିବାର ଥିଲେ । ଦାସ ଘରେ ଥିଲେ - ଭକ୍ତ ଚରଣ ଦାସ, ହରିଚରଣ ଦାସ ଓ ବିପ୍ରଚରଣ ଦାସ । ଭକ୍ତଚରଣ ଥିଲେ କବି ଓ ନାଟ୍ୟକାର, ହରିଚରଣ ଥିଲେ କୃଷ୍ଣପ୍ରେମୀ ଭକ୍ତ, ମୃଦଙ୍ଗ ବଜାଇ କୀର୍ତ୍ତନ ଗାଇବାରେ ତନ୍ମୟ ଏବଂ ଭକ୍ତଚରଣ ଥିଲେ ତବଲାବାଦକ ଓ ନାଟ୍ୟ ନିର୍ଦ୍ଦେଶକ । ଏହି ତିନିଭାଇ କେବଳ କନିକାରେ ନୁହନ୍ତି, କନିକା ବାହାରେ ମଧ୍ୟ ସଂଗୀତ, ନାଟ୍ୟ, ବାଦ୍ୟ ଆଦି କଳା ପାଇଁ ପ୍ରସିଦ୍ଧ ଥିଲେ ।

ମୋ ଶ୍ୱଶୁରଘର ପେଗରପଡ଼ା ଗାଁରେ । ଶ୍ୱଶୁର ଥିଲେ ପୂଜ୍ୟପାଦ ଲକ୍ଷ୍ମଣ ଶତପଥୀ । ତାଙ୍କର ତିନିଭାଇ ରଘୁନାଥ, ବୈରାଗୀଚରଣ ଓ ପଞ୍ଚାନନ । ସମସ୍ତଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ମିଶାଇ ପ୍ରାୟ ତିରିଶ ଜଣ କୁଟୁମ୍ବ ଥିଲେ । ତିରିଶଜଣ ଚଳୁଥିଲେ ଏକ ବିସ୍ତୃତ ଡିହରେ ପରସ୍ପର ସଂଲଗ୍ନ ତିନିଟି ଖଞ୍ଜାରେ । ସମସ୍ତଙ୍କୁ ଚଳାଉଥିଲେ ମୋ ଶ୍ୱଶୁର । ସବୁ ସ୍ତ୍ରୀଲୋକ ମିଳିମିଶି ଘରକାମ କରୁଥିଲେ । ଖାଇବା ସମୟରେ ଭାଇମାନେ ସମସ୍ତେ ଏକାଠି ବସି ଖାଉଥିଲେ । ଭାଇମାନଙ୍କ ମଧ୍ୟରେ ବା ସେମାନଙ୍କ ସ୍ତ୍ରୀ ମାନଙ୍କ ମଧ୍ୟରେ କେବେହେଲେ ମନୋମାଳିନ୍ୟ ଘଟୁ ନ ଥିଲା । ସବୁ ସ୍ତ୍ରୀ ସବୁ ପିଲାଙ୍କୁ ନିଜର ପିଲା ଦୃଷ୍ଟିରେ ଦେଖୁଥିଲେ ।

ପ୍ରତ୍ୟେକ ଗାଁରେ ବିଭିନ୍ନ ଜାତିର ଲୋକ ବାସ କରୁଥିଲେ, କିନ୍ତୁ ସମସ୍ତେ ପରସ୍ପରକୁ ପରିବାରଲୋକ ଭଳି ସମ୍ବୋଧନ କରୁଥିଲେ । ଯେପରି - ଇନ୍ଦରା ଭାଇ, ମନ୍ଦରା ଭାଇ, ନରି ଦାଦା, ହରି ମାମୁ, ବୈକୁଣ୍ଠ କକା, ଯାଦବ ନନା ଇତ୍ୟାଦି । ସ୍ତ୍ରୀ

ଲୋକମାନଙ୍କୁ ମଧ୍ୟ କାହାକୁ ଖୁଡ଼ୀ, କାହାକୁ ବଡ଼ବୋଉ, କାହାକୁ ନାନୀ, କାହାକୁ ଅପା, କାହାକୁ ନୂଆବୋଉ, ଏମିତି ପାରିବାରିକ ସମ୍ବନ୍ଧରେ ଡାକୁଥିଲେ । ଅସ୍ପୃଶ୍ୟ ଜାତିର ଲୋକମାନଙ୍କୁ ମଧ୍ୟ ଏହିପରି ସମ୍ବୋଧନ କରାଯାଉଥିଲା ।

ଏହି ସୁନ୍ଦର ସଂସ୍କୃତିର ଧାରା ଅର୍ଥାତ୍ କୌଳିକ ଜୀବିକା ଓ ଏକାନ୍ନବର୍ତ୍ତୀ ପରିବାର ଚଳଣି ଭାରତବର୍ଷରେ ବହୁ କାଳରୁ ଚଳି ଆସୁଥିଲା । ଏହା ଥିଲା କୃଷି ସଭ୍ୟତାର ସଂସ୍କୃତି । ମୋର ଅନୁଭବ, ଏହି ସୁନ୍ଦର ଶାନ୍ତିପ୍ରଦ ସଂସ୍କୃତି ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଭାଙ୍ଗିବାରେ ଲାଗିଲା ଏବଂ କ୍ରମେ କ୍ରମେ ଏହାର ସ୍ଥାନ ନେଲା ପାଶ୍ଚାତ୍ୟ ସଂସ୍କୃତି ।

ବର୍ତ୍ତମାନ ଆଉ ଗାଁରେ କୌଳିକ ଜୀବିକାଗୁଡ଼ିକ ନାହିଁ କି ଏକାନ୍ନବର୍ତ୍ତୀ ପରିବାର ଚଳଣି ନାହିଁ । ସହରକୁ ଯାଇ ଚାକିରି କରିବା ବା ସହରରେ ଜୀବିକା ଅର୍ଜନ କରି ରହିବା ଗାଁ ଯୁବକମାନଙ୍କର ଲକ୍ଷ୍ୟ ହୋଇଛି । ପାଠ ପଢୁଥିବାବେଳୁ ମଧ୍ୟ ପିଲାମାନଙ୍କ ପାଇଁ ଚାକିରି ଚିନ୍ତା ଘାରୁଛି - କ'ଣ ପଢ଼ିବେ, କିପରି ପଢ଼ିବେ ଏବଂ କି ଚାକିରି ପାଇବେ । ଶୈଶବ ସମୟଟି କୌଣସି ପ୍ରକାରେ ଆନନ୍ଦରେ କଟିଯାଉଛି, କିନ୍ତୁ କିଶୋର ବୟସ ହେଲେ ପରୀକ୍ଷା ଓ ପ୍ରତିଯୋଗିତାର ସମ୍ମୁଖୀନ ହୋଇ ଜୀବିକା ଅର୍ଜନର ପନ୍ଥାଟିଏ ଧରିବା ପାଇଁ ସଂଗ୍ରାମ କରିବାକୁ ପଡୁଛି ।

ସରକାରରେ ଆଉ ଜୀବିକା ପ୍ରାୟ ନାହିଁ । ଯାହା ଅଛି ତାହା ପୁଣି ସଂରକ୍ଷଣ ନୀତିରେ । କେବଳ କମ୍ପାନୀମାନଙ୍କରେ ବା କୌଣସି ସଂସ୍ଥା ସଂଗଠନରେ ଜୀବିକା ଖଣ୍ଡେ ଖଣ୍ଡେ ମିଳୁଛି ମାତ୍ର । ତେଣୁ ପିଲାମାନେ ଚାକିରି ଆଶାରେ ସହରକୁ ଯାଇ ଅତ୍ୟନ୍ତ ଦୟନୀୟ ପରିସ୍ଥିତିରେ ମଧ୍ୟ ରହି ଜୀବିକାର୍ଜନର ଚେଷ୍ଟା କରୁଛନ୍ତି । କୌଳିକ ଜୀବିକା ପରମ୍ପରା ଭାଙ୍ଗିଯାଇଥିବା ହେତୁ ଗାଁର ଯୁବକଙ୍କୁ ଜୀବିକା ଖୋଜିବାକୁ ପଡୁଛି । କିନ୍ତୁ ଜୀବିକା ଖୋଜିବା ଗାଁ ପାଇଁ ଥିଲା ସଂପୂର୍ଣ୍ଣ ଅଜଣା । ଯଦିଚ ଏବେ ଗାଁକୁ କଂକ୍ରିଟ୍ ରାସ୍ତା ହୋଇଛି, ବସ୍, ଟ୍ରକ୍, ଟ୍ରାକ୍ଟର, ଅଟୋରିକ୍ସା, ମଟର ସାଇକେଲ, ସ୍କୁଟର ଆଦି ଯାନ୍ତ୍ରିକ ଯାନ ଚାଲୁଛି, ଦେଶୀବିଦେଶୀ କମ୍ପାନୀମାନଙ୍କର ଅଜସ୍ର ପ୍ରକାର ଶିଳ୍ପସାମଗ୍ରୀ ଗାଁକୁ ବୁହାହେଉଛି, କିନ୍ତୁ ଗାଁର ଲୋକ ଜୀବିକା ପାଇଁ ବ୍ୟସ୍ତବିବ୍ରତ ହୋଇ ସହରକୁ ଧାଉଁଛନ୍ତି ।

ଏକାନ୍ନବର୍ତ୍ତୀ ପରିବାର ଚଳଣି ଭାଙ୍ଗି ଯାଇଥିବାରୁ ଗ୍ରାମ୍ୟ ଜୀବନରେ ଆଉ ସରଳତା, ସୌହାର୍ଦ୍ଦ୍ୟ ଓ ମମତାବୋଧ ନାହିଁ । ଏକା ମାଆ ପେଟର ଭାଇମାନେ ମଧ୍ୟ ଏକାଠି ଚଳିବା ଦୂରେ ଥାଉ, ପରସ୍ପର ମଧ୍ୟରେ ଠେଙ୍ଗାବାଡ଼ି ଧରୁଛନ୍ତି ଏବଂ ପରସ୍ପରକୁ ଜବତ କରିବା ପାଇଁ ରାଜନୀତିଆ, ଥାନାବାଲା ବା ଅଦାଲତବାଲାଙ୍କ ଦୁଆରକୁ

ଦଉଡ଼ୁଛନ୍ତି । ରାଜନୀତିଆ, ଥାନାବାଲା ବା ଅଦାଲତବାଲାଏ ଟାକି ବସିଛନ୍ତି । ଏହି କ୍ରୋଧୀ ଭାଇମାନଙ୍କୁ ବା କ୍ରୋଧୀ ପଡ଼ୋଶୀମାନଙ୍କୁ ପାଇଲେ ବୁଢ଼ିଆଣୀ ଭଳି ଜାଲରେ ଛନ୍ଦି ପକାଉଛନ୍ତି । ରାଜନୀତି ଗାଁର ସୁଖଶାନ୍ତିକୁ ଛାରଖାର କରିଦେଲାଣି । ଗୋଟିଏ ଭାଇ ଗୋଟିଏ ଦଳରେ ତ ଅନ୍ୟ ଭାଇ ଅନ୍ୟ ଗୋଟିଏ ଦଳରେ । ଛୋଟ ନେତାଙ୍କଠାରୁ ଆରମ୍ଭ କରି ବଡ଼ ନେତାଙ୍କ ପର୍ଯ୍ୟନ୍ତ ଦଳାଦଳି ହୋଇ କେତେ ଦୁଃଖଜଞ୍ଜାଳର ସମ୍ମୁଖୀନ ହେଉଛନ୍ତି ।

ପୂର୍ବେ ଏକାନ୍ନବର୍ତ୍ତୀ ପରିବାରରେ ମନୋମାଳିନ୍ୟ ପଶି ପାରୁ ନ ଥିଲା । ଯଦିବା କ୍ୱଚିତ୍ କୌଣସି ପରିବାରରେ କିମ୍ବା ଏକ ପରିବାର ସହିତ ଅନ୍ୟ ପରିବାରର ମନୋମାଳିନ୍ୟ ଘଟୁଥିଲା, ତେବେ ଗାଁର ପଞ୍ଚାୟତ ଅର୍ଥାତ୍ ପାଞ୍ଚ ସାତଜଣ ଭଲଲୋକ ବସି ବିଚାର କରି ତାହା ତୁଟାଇ ଦେଉଥିଲେ । ଉଭୟ ପକ୍ଷ ସେମାନଙ୍କର ନିଷ୍ପତ୍ତିକୁ ମାନି ନେଉଥିଲେ । ଏବେ କିନ୍ତୁ ପଞ୍ଚାୟତଙ୍କର ନିଷ୍ପତ୍ତିକୁ ମାନୁ ନାହାନ୍ତି, ଯେହେତୁ ବିଚାରକାରୀ ଲୋକମାନେ ବିଭିନ୍ନ ଦଳର ଅନ୍ତର୍ଭୁକ୍ତ । ତେଣୁ ବିବାଦ ଥାନା ବା ଅଦାଲତକୁ ଯାଉଛି । ସହରରେ ଯେମିତି କେହି କାହାରି ନୁହନ୍ତି, ପଡ଼ୋଶୀ ମଧ୍ୟ ଶତ୍ରୁ, ଗାଁରେ ମଧ୍ୟ ସେହି ଅବସ୍ଥା ସମାନୁପାତିକ ଭାବରେ ଅନୁଭୂତ ହୋଇଆସୁଛି ।

ଆଶ୍ଚର୍ଯ୍ୟର ବିଷୟ, ତେଲି ଆଉ ତେଲ ପେଡ଼ୁନାହାନ୍ତି, କିନ୍ତୁ ଜାତିରେ ତେଲି କୁହାଯାଉଛନ୍ତି, ତନ୍ତୀ ଆଉ ତନ୍ତ ଚଳାଉ ନାହାନ୍ତି, କିନ୍ତୁ ଜାତିରେ ତନ୍ତୀ କୁହାଯାଉଛନ୍ତି, କୁମ୍ଭାର ଆଉ ହାଣ୍ଡି ମାଠିଆ ଗଢ଼ୁନାହାନ୍ତି, କିନ୍ତୁ ଜାତିରେ କୁମ୍ଭାର କୁହାଯାଉଛନ୍ତି, ପାଣ ଆଉ ବାଜା ବଜାଉନାହାନ୍ତି, କିନ୍ତୁ ଜାତିରେ ପାଣ ବୋଲାଉଛନ୍ତି । ଏହିପରି ଜାତିପାଟକମାନେ ନିଜ ନିଜ କୌଳିକ ଧନ୍ଦା ଛାଡ଼ି ଦେଲେଣି, କିନ୍ତୁ ସେମାନଙ୍କର ଜାତିପାଟକ ନାମ ଉଠୁନାହିଁ । ଅଧିକନ୍ତୁ ଏହିସବୁ ନାମ ଯଥା- ବଢ଼େଇ, ତେଲି, ତନ୍ତୀ, କୁମ୍ଭାର, ପାଣ, ମଳିକ, ବ୍ରାହ୍ମଣ, କରଣ ପ୍ରଭୃତି ନାମ ରାଷ୍ଟ୍ରର ଆଇନ ଦ୍ୱାରା ଦୃଢ଼ ହେଉଛି ।

ସ୍ୱାଧୀନତା ଆନ୍ଦୋଳନ କାଳରେ ଯେଉଁ ଅସ୍ପୃଶ୍ୟତା ନିବାରଣ, ଜାତିଭେଦ ଦୂରୀକରଣ ଆଦି ସଂସ୍କାର ଚାଲୁଥିଲା, ତଦ୍ଦ୍ୱାରା ମନେ କରାଯାଉଥିଲା ସ୍ୱାଧୀନ ଭାରତରେ ଜାତିଭେଦ ରହିବ ନାହିଁ, କିନ୍ତୁ ସ୍ୱୟଂ ରାଷ୍ଟ୍ର ହିଁ ଜାତିଭେଦକୁ ଦୃଢ଼ କରିଦେଲା ।

ପୁଣି ଏହି ଜାତିପାଟକମାନଙ୍କ ମଧ୍ୟରେ କିଏ ଉଚ୍ଚବର୍ଗର, କିଏ ନିମ୍ନବର୍ଗର, ତାହା ମଧ୍ୟ ରାଷ୍ଟ୍ର ନିର୍ଦ୍ଧାରଣ କଲା । ଯେଉଁମାନଙ୍କୁ ନିମ୍ନବର୍ଗର ବୋଲି ନିର୍ଦ୍ଧାରଣ କରାଗଲା, ସେମାନେ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ହେଲେ ମଧ୍ୟ ସ୍ୱତନ୍ତ୍ର ସୁବିଧା ସୁଯୋଗ ପାଇଲେ ଏବଂ

ଯେଉଁମାନଙ୍କୁ ଉଚ୍ଚବର୍ଗର ବୋଲି ନିର୍ଦ୍ଧାରଣ କରାଗଲା, ସେମାନେ ଆର୍ଥିକ ଦୃଷ୍ଟିରୁ ଦୁର୍ବଳ ହେଲେ ମଧ୍ୟ ସ୍ୱତନ୍ତ୍ର ସୁବିଧା ସୁଯୋଗରୁ ବଞ୍ଚିତ ହେଲେ । ଜାତିଭେଦରହିତ ରାଷ୍ଟ୍ର ହେବା ଭାରତ ଭାଗ୍ୟରେ ଅଛି କି ନାହିଁ, ଈଶ୍ୱର ଜାଣନ୍ତି ।

ଗାଁରେ ଆଉ ପୂର୍ବର ପ୍ରାକୃତିକ ଶୋଭା ନାହିଁ, କ୍ଷେତରେ ବିଭିନ୍ନ ଋତୁରେ ବିଭିନ୍ନ ଫସଲର ଲହରୀ ଖେଲୁନାହିଁ, 'ବୈକୁଣ୍ଠ ସମାନ ଆହା ଅଟେ ସେହି ଘର / ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର' ଏଭଳି ଘର ନାହିଁ, ନିଶ୍ଚିତ ଜୀବିକା ନାହିଁ, ଦିଅଁଦେବତା ଓ ବୃଦ୍ଧଜନଙ୍କ ପ୍ରତି ଭକ୍ତି ବା ସମ୍ମାନବୋଧ ନାହିଁ, ନଦୀରେ ନୌକାମଙ୍ଗରୁ ନାଉରିଆର ସ୍ୱରଲହର ନାହିଁ, ଯୋଡ଼ିବଳଦ ଲଙ୍ଗଳଚାଷ ନାହିଁ, ଶୀତରାତି ପାହାନ୍ତାରୁ ଖଳାରେ ବଳଦମାନଙ୍କୁ ଯୋଚି ବେଙ୍ଗଳା ପକାଇବା ନାହିଁ, ଆମ୍ବତୋଟା ନାହିଁ କି ନଡ଼ିଆବଗିଚା ନାହିଁ, ବିଭିନ୍ନ ଜାତି ପ୍ରଜାତିର ପଶୁପକ୍ଷୀଙ୍କର କୋଳାହଳ ବା କୂଜନ ନାହିଁ । ଗ୍ରାସି ଆସୁଛି ପ୍ରଚଣ୍ଡ ପାଶ୍ଚାତ୍ୟ ସଂସ୍କୃତି, ଯାହାକି ଗାଁକୁ ଧନକୁବେର କମ୍ପାନିମାନଙ୍କ ପାଇଁ ବଜାରରେ ପରିଣତ କରୁଛି । ସୁନ୍ଦର, ଶାନ୍ତିପ୍ରଦ ଭାରତୀୟ ସଂସ୍କୃତିର ଅବସାନ ଘଟୁଛି ।



# 'ବୌଦ୍ଧିକ ଅନ୍ଧବିଶ୍ୱାସ' ଓ ହେତୁବାଦୀ ସାହିତ୍ୟ

୨୦୦୫ ମସିହା ଜାନୁଆରୀ ମାସରେ ଦିନେ ପୁନାରୁ ଡକ୍ଟର ନୀଳକଣ୍ଠ ରଥ ମୋତେ ଟେଲିଫୋନ କରି କହିଲେ "ଧନେଶ୍ୱର ବାବୁ, ଏ ବର୍ଷ ଆପଣ ମୋ ନନାଙ୍କ ସ୍ମୃତିସଭାରେ ସ୍ମାରକୀ ବକ୍ତୃତା ଦେବେ । ଆପଣଙ୍କ ଇଚ୍ଛାନୁସାରେ ଯେକୌଣସି ବିଷୟରେ କହିବେ ।"

ମୁଁ କ୍ଷଣେ ଚିନ୍ତାକରି ମୋର ସମ୍ମତି ଜଣାଇଲି ।

ମୁଁ ଆଗରୁ ଜାଣିଥିଲି, ନୀଳକଣ୍ଠ ବାବୁ 'ସମାଜ' ସଂପାଦକ ପଦ୍ମଭୂଷଣ ରାଧାନାଥ ରଥଙ୍କ ପୁତ୍ର । ପୁନାରେ ରହନ୍ତି । ଅର୍ଥନୀତିରେ ଜଣେ ବିଶିଷ୍ଟ ବିଦ୍ୱାନ । ପୁନାରେ ଥିବା କେନ୍ଦ୍ରୀୟ ଅର୍ଥନୀତି ଶିକ୍ଷା ଓ ଗବେଷଣା ଅନୁଷ୍ଠାନର ନିର୍ଦ୍ଦେଶକ ପଦରୁ ଅବସର ନେଇଛନ୍ତି । ମରାଠୀ ଭାଷାରେ ଲେଖାଲେଖି କରିବା ସହିତ ଓଡ଼ିଆ ଭାଷାରେ ମଧ୍ୟ ଲେଖାଲେଖି କରନ୍ତି । ତାଙ୍କ ଓଡ଼ିଆ ଭାଷାରେ ଏକ ସୁନ୍ଦର ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ । ତାହା ମରାଠୀ ଭାଷା ସଂପର୍କରୁ ଉତ୍ପନ୍ନ । ମରାଠୀମାନେ ନିଜ ମାତୃଭାଷାକୁ (ମରାଠୀକୁ) ଖୁବ୍ ଆଦର କରନ୍ତି ବୋଲି ତାଙ୍କଠାରୁ ଶୁଣିଥିଲି । ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି ଯେ ଗତ ବିଂଶ ଶତାବ୍ଦୀରେ ବିଶ୍ୱନାଥ କାଶୀନାଥ ରାଜୱାଡ଼େ ନାମକ ଜଣେ ମରାଠୀ ବିଦ୍ୱାନ ଇଂରାଜୀ ଭାଷାରେ ଖୁବ୍ ପ୍ରବୀଣ ଥିଲେ ମଧ୍ୟ ଇଂରାଜୀରେ ନ ଲେଖି ୧୨୮ ଖଣ୍ଡ ଉପାଦେୟ ପୁସ୍ତକ ନିଜ ମାତୃଭାଷା ମରାଠୀରେ ଲେଖି ଯାଇଛନ୍ତି । ସେହି ପୁସ୍ତକଗୁଡ଼ିକୁ ଇଂରାଜୀ ତଥା ଅନ୍ୟାନ୍ୟ ଭାଷାରେ ଅନୁବାଦ କରାଯାଇଛି ଓ କରାଯାଉଛି ।

ନୀଳକଣ୍ଠ ବାବୁ ମଧ୍ୟ କେତେକ ମରାଠୀ ପୁସ୍ତକ ଓଡ଼ିଆରେ ଅନୁବାଦ କରିଛନ୍ତି । ଓଡ଼ିଆ ଲେଖାରେ ସେ ଆଦୌ ଅନୁନାସିକ ଯୁକ୍ତାକ୍ଷର ବ୍ୟବହାର କରନ୍ତି ନାହିଁ, ତା' ପରିବର୍ତ୍ତେ ଅନୁସ୍ୱାର ଦିଆ ପଦ୍ଧତି ବ୍ୟବହାର କରନ୍ତି । ଯେପରି ମଂଚ, ଶଂଖ, ସଂଙ୍ଗ, ପଂଝା, ଗ୍ରଂଥ, ଟଂକା ପ୍ରଭୃତି ।

ଏଠାରେ ଅନୁସ୍ୱାର ଦିଆ ପଦ୍ଧତି ସମ୍ବନ୍ଧରେ କିଛି କହିଲେ ଅପ୍ରାସଙ୍ଗିକ ହେବନାହିଁ । ପ୍ରଥମେ ପଂଡିତ ନୀଳକଂଠ ଦାସ ଓଡ଼ିଆ ଭାଷାରେ ଏହି ପଦ୍ଧତି ଆରମ୍ଭ କରିଥିଲେ । ଆଗରୁ ପ୍ରାକୃତ ଭାଷାରେ ଏହା ବ୍ୟବହୃତ ହେଉଥିଲା । ସଚ୍ଚି ରାଉତରାୟ ପ୍ରମୁଖ କବିଲେଖକମାନେ ଏହାକୁ ଗ୍ରହଣ କରିଥିଲେ । କିନ୍ତୁ ସେତେବେଳେ ଏହାର ଶୁଦ୍ଧତା / ଅଶୁଦ୍ଧତା ନେଇ ବହୁ ତର୍କବିତର୍କ ଚାଲିଥିଲା । ମୋ ପର୍ଯ୍ୟନ୍ତ ମଧ୍ୟ ପ୍ରାୟ ୧୯୬୦ ପର୍ଯ୍ୟନ୍ତ ତର୍କବିତର୍କ ଲାଗି ରହିଥିଲା । ଏହାର ବ୍ୟାକରଣସମ୍ମତ ନିର୍ଣ୍ଣୟ ଦେବା ଉଦ୍ଦେଶ୍ୟରେ ମୁଁ 'ଅନୁସ୍ୱାରଦିଆ ପଦ୍ଧତି ଭୁଲ୍ ନୁହେଁ' ଏହି ମର୍ମରେ ପତ୍ରପତ୍ରିକାମାନଙ୍କରେ କେତୋଟି ଲେଖା ଲେଖିଥିଲି । 'ସମାଜ'ର ସାପ୍ତାହିକ ସାହିତ୍ୟ ଆଲୋଚନା ପୃଷ୍ଠାରେ ମଧ୍ୟ ଲେଖିଥିଲି । ମୁଁ ସଂସ୍କୃତ ସହିତ ପ୍ରାକୃତ ଭାଷାରେ ମଧ୍ୟ ଅଭିଜ୍ଞ । ଓଡ଼ିଆ ଭାଷାର ପୂର୍ବରୂପ ଥିଲା ମାଗଧୀ ଅପଭ୍ରଂଶ ଏବଂ ମାଗଧୀ ଅପଭ୍ରଂଶର ପୂର୍ବରୂପ ମାଗଧୀ ପ୍ରାକୃତ । ମୁଁ ମାଗଧୀ ପ୍ରାକୃତର ଅବଲମ୍ବନରେ ଆଲୋଚନା କରି ଏବଂ ମାଗଧୀ ସାହିତ୍ୟରୁ ପ୍ରୟୋଗ ଦର୍ଶାଇ ଅନୁସ୍ୱାରଦିଆ ପଦ୍ଧତିକୁ ଶୁଦ୍ଧ ବୋଲି ପ୍ରତିପାଦନ କଲି । ସଚ୍ଚି ରାଉତରାୟ ତାଙ୍କର 'ପାଣ୍ଡୁଲିପି' ନାମକ କବିତା ପୁସ୍ତକର ପ୍ରକାଶନ ସମୟରେ ମୋ ସହିତ ଆଲୋଚନା କରିଥିଲେ ଏବଂ ପୁସ୍ତକର ଭୂମିକାରେ ମୋର ମତ ଉଲ୍ଲେଖ କରିଥିଲେ । ପରେ ମୁଁ ଓଡ଼ିଆ ମାଧ୍ୟମିକ ଶିକ୍ଷା ପରିଷଦର ଓଡ଼ିଆ ସିଲାବସ୍ କମିଟିର ମୁଖ୍ୟ ଥିଲାବେଳେ ଓଡ଼ିଆ ବ୍ୟାକରଣରେ ଉକ୍ତ ପଦ୍ଧତିକୁ ସ୍ୱୀକୃତ କରାଇଥିଲି । ତା'ପରେ ମଧ୍ୟ 'ସମ୍ବାଦ' ସଂପାଦକ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକଙ୍କ ଅନୁରୋଧରେ ସ୍କୁଲ ପିଲାମାନଙ୍କ ଉଦ୍ଦେଶ୍ୟରେ ଯେଉଁ ଛୋଟ ଅଭିଧାନଟିଏ (ସରଳ ଓଡ଼ିଆ ଅଭିଧାନ) ପ୍ରସ୍ତୁତ କରିଥିଲି, ସେଥିରେ ଅନୁସ୍ୱାର ଦିଆ ପଦ୍ଧତିକୁ ଆହୁରି ଦୃଢ଼ କରାଇଥିଲି । ନିଜେ ସୌମ୍ୟରଂଜନ ବାବୁ ଏହି ପଦ୍ଧତିର ସମର୍ଥକ ଥିଲେ ଏବଂ ଏହାର ପ୍ରସାର କରାଇଥିଲେ 'ସମ୍ବାଦ' ମାଧ୍ୟମରେ ।

ଡକ୍ଟର ନୀଳକଂଠ ରଥଙ୍କୁ ସମ୍ମତି ଜଣାଇଲା ପରେ ମୁଁ ସଭାରେ ପାଠ କରିବା ପାଇଁ ଗୋଟିଏ ପ୍ରବନ୍ଧ ପ୍ରସ୍ତୁତ କଲି । ପ୍ରବନ୍ଧଟିର ନାମ 'ବୌଦ୍ଧିକ ଅନ୍ଧବିଶ୍ୱାସ ।'

ନୀଳକଂଠ ବାବୁ ତାହାକୁ ୫୦୦ ଖଣ୍ଡ ଛପାଇଲେ ଶ୍ରୋତାମାନଙ୍କ ହାତରେ ଖଣ୍ଡିଏ ଖଣ୍ଡିଏ ଦେବାପାଇଁ । ତା ୧୨.୨.୨୦୦୫ ସଂଧ୍ୟାରେ ଭୁବନେଶ୍ୱର ଇଡ୍‌କୋ ହଲରେ ସଭା ଅନୁଷ୍ଠିତ ହୋଇଥିଲା । ମୁଁ ମଞ୍ଚ ଉପରେ ଉପସ୍ଥିତ ହେଲାବେଳକୁ ଇଡ୍‌କୋ ହଲ୍ ଶ୍ରୋତୃମଣ୍ଡଳୀରେ ପରିପୂର୍ଣ୍ଣ ହୋଇଯାଇଥିଲା, ଏପରିକି ଅନେକ ଲୋକ ଦ୍ୱାରଦେଶରେ ଠିଆ ହୋଇଥିଲେ । ବହୁ ଜ୍ଞାନୀ, ଗୁଣୀ, ବିଶିଷ୍ଟ ବ୍ୟକ୍ତି ଆସିଥିଲେ ।

ନୀଳକଣ୍ଠ ବାବୁ ପ୍ରାରମ୍ଭିକ ସୂଚନା ଦେବା ପରେ ମୋ ହାତରେ ତାଙ୍କ ପ୍ରକାଶିତ ଦୁଇଟି ବହି ଉନ୍ମୋଚନ କରାଇଲେ । ଖଣ୍ଡିଏ ଥିଲା 'ମୁଇଁ ସୁମନୀ କହୁଚେ' ଏବଂ ଅନ୍ୟଟି ଥିଲା 'ଖରସୁଆଁରୁ କୁଲାବିରା ।" ପ୍ରଥମ ବହିଟି କୋରାପୁଟ ଜିଲ୍ଲା ଶିରିଗୁଡ଼ା ଗାଁର ସୁମନୀ ଝୋଡ଼ିଆ ନାମକ ଜଣେ ଆଦିବାସୀ ମହିଳାଙ୍କର ଆତ୍ମଚରିତ ଏବଂ ଦ୍ୱିତୀୟ ବହିଟି ଯାଜପୁର ଜିଲ୍ଲା ସିଂହପୁର ଗାଁର ପାଣଜାତିର ଦିବାକର ଦାସ ନାମକ ଜଣେ ବ୍ୟକ୍ତିଙ୍କର ଆତ୍ମଚରିତ । ଦିବାକର ସିଂହପୁରରୁ ଯାଇ କୋରାପୁଟ ଜିଲ୍ଲାର କୁଲାବିରା ନାମକ ଗାଁର ଅଧିବାସୀ ହୋଇଛନ୍ତି । ସୁମନୀ ଝୋଡ଼ିଆ ଲେଖାପଢ଼ା ଜାଣି ନ ଥିବାରୁ ନୀଳକଣ୍ଠ ବାବୁ ନିଜ ହାତରୁ ଖର୍ଚ୍ଚ କରି ଜଣେ ଲେଖିଲାବାଲାକୁ ଲଗାଇ ସୁମନୀଙ୍କର ଆତ୍ମଚରିତ ଲେଖାଇ ଆଣିଥିଲେ । ଦିବାକର ନିଜ ହାତରେ ନିଜ ଜୀବନ ବୃତ୍ତାନ୍ତ ଲେଖି ଦେଇଥିଲେ । ନୀଳକଣ୍ଠ ବାବୁ ନିଜ ବ୍ୟୟରେ ଦୁଇଟି ପାଣ୍ଡୁଲିପିକୁ ଛପାଇ ଦୁଇଟି ପୁସ୍ତକ କରିଥିଲେ । ପୁସ୍ତକ ଦୁଇଟି ଆକାରରେ ଯଦିଓ ଛୋଟ ଥିଲା, ତଥାପି ପ୍ରଥମକରି ଦରିଦ୍ର, ଦଳିତ ଲୋକଙ୍କର ଆତ୍ମଜୀବନୀ ଦୃଷ୍ଟିରୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା ।

ସାଧାରଣତଃ ବଡ଼ଲୋକମାନେ, ଯେଉଁମାନେ କି କ୍ଷମତା, ପଦପଦବୀ, ଜ୍ଞାନ, ଧନ ପ୍ରଭୃତି ଦୃଷ୍ଟିରୁ ଖ୍ୟାତିଲାଭ କରିଥାନ୍ତି, ସେମାନେ ନିଜର ଆତ୍ମଚରିତ ଲେଖିଥାନ୍ତି । କିନ୍ତୁ ସୁମତୀ ଝୋଡ଼ିଆ ଓ ଦିବାକର ଦାସ ସେଭଳି ଲୋକ ନୁହନ୍ତି । ସେମାନଙ୍କ ଜୀବନର ବୈଶିଷ୍ଟ୍ୟ ହେଉଛି, ସେମାନେ ସତ୍ ଜୀବନଯାପନ କରିଛନ୍ତି । ମୁଁ ଉନ୍ମୋଚନ ଅବସରରେ କହିଥିଲି - "ଛଳ, କପଟ, ଅସତ୍ୟ, କୌଶଳ ଆଦି ଅବଲମ୍ବନ କରି ବଡ଼ ହୋଇଥିବା ଲୋକଙ୍କ ଆତ୍ମଜୀବନୀ ଅପେକ୍ଷା ସତ୍ ଜୀବନଯାପନ କରିଥିବା ଚାଷୀ, ମୂଲିଆ, ଚାକର, ଚାକରାଣୀ, ରିକ୍ସାବାଲା ବା ପଥପ୍ରାନ୍ତ ଦୋକାନୀଙ୍କର ଆତ୍ମଜୀବନୀ ଅଧିକ ମହନୀୟ । ସେମାନଙ୍କର ଆତ୍ମଜୀବନୀ ଗଣତନ୍ତ୍ରରେ ଶ୍ରେଷ୍ଠ ସାହିତ୍ୟ । ଗଣତନ୍ତ୍ରରେ ଯେଉଁମାନଙ୍କର ନିଜର ଜୀବନ ସ୍ୱଚ୍ଛ ନୁହେଁ, ସେମାନେ ଯେତେ ବଡ଼ ଲୋକ ହେଲେ ମଧ୍ୟ କାହାରି ଆଦର୍ଶ ହୋଇ ନ ପାରନ୍ତି ।"

ସଭା ମଞ୍ଚରେ ସୁମନୀ ଝୋଡ଼ିଆ ଓ ଦିବାକର ଦାସ ଉପସ୍ଥିତ ଥିଲେ । ସେମାନେ ସଂକ୍ଷେପରେ ନିଜ ନିଜର ବକ୍ତବ୍ୟ ରଖିଥିଲେ । ନିଜର ଜୀବନ ବୃତ୍ତାନ୍ତ ଭୁବନେଶ୍ୱର ଭଳି ଜାଗାରେ ବିଜ୍ଞ ବ୍ୟକ୍ତିମାନଙ୍କ ସମକ୍ଷରେ ଉପସ୍ଥାପିତ ହୋଇଥିବାରୁ ଦୁହେଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ ।

ପୁସ୍ତକ ଉନ୍ମୋଚନ ପରେ ମୁଁ ମୋର 'ବୌଦ୍ଧିକ ଅନ୍ଧବିଶ୍ୱାସ' ପ୍ରବନ୍ଧ ପାଠ କରିଥିଲି । ପ୍ରାୟ ଘଣ୍ଟାଏ ସମୟ ଲାଗିଥିଲା । ଶ୍ରୋତୃମଣ୍ଡଳୀ ଉତ୍କର୍ଣ୍ଣ ଭାବରେ ଶୁଣିଥିଲେ । ମୁଁ ଅନୁଭବ କରୁଥିଲି, ମୋର ନୂତନ ହେତୁବାଦୀ ଚିନ୍ତାଧାରା ସେମାନଙ୍କର ମନକୁ ସ୍ପର୍ଶ କରୁଥିଲା । ତା' ପରଦିନ ସକାଳେ 'ସମାଜ'ରେ ପ୍ରକାଶିତ 'ବୌଦ୍ଧିକ ଅନ୍ଧବିଶ୍ୱାସ' ପ୍ରବନ୍ଧ ଲେଖାଟି ପାଠକମାନେ ପଢ଼ିବାକୁ ପାଇଲେ । ଲେଖାଟି 'ସମାଜ'ର ପୂର୍ଣ୍ଣ ଦୁଇପୃଷ୍ଠା ବ୍ୟାପି ଛପା ହୋଇଥିଲା । ତାହା ଲୋକଚେତନାକୁ ଏପରି ଭାବେ ଉଦ୍‌ବୋଧିତ କରିଥିଲା ଯେ ଅନେକ ପତ୍ରିକାର ସଂପାଦକ ତାହାକୁ ନିଜ ନିଜ ପତ୍ରିକାରେ ପୁନଃପ୍ରକାଶିତ କରିଥିଲେ । ବହୁ ପାଠକ ମୋତେ ସମର୍ଥନ ଜଣାଇଥିଲେ । ଅବଶ୍ୟ କେତେଜଣ ବିରୋଧ ଉପସ୍ଥାପନ କରିଥିଲେ । କିନ୍ତୁ ଲେଖାକୁ ଗ୍ରହଣ କରିଥିବା ଲୋକଙ୍କ ତୁଳନାରେ ବିରୋଧୀଙ୍କ ସଂଖ୍ୟା ନଗଣ୍ୟ ଥିଲା ।

ମୋ ଘରକୁ ଆସି ମୋତେ ଧନ୍ୟବାଦ ଜଣାଇବାର ପ୍ରଥମ ବ୍ୟକ୍ତି ଥିଲେ ଓଡ଼ିଶା ଆମଫୋଇ ସଂସ୍ଥାର ମୁଖ୍ୟ ବି. ରାମଚନ୍ଦ୍ର (ଭୋଲ୍‌ଟାୟାର ରାମଚନ୍ଦ୍ର) । ତାଙ୍କ ସହିତ ତାଙ୍କର ସହଧର୍ମିଣୀ ସ୍ୱପ୍ନା ମଧ୍ୟ ଆସିଥିଲେ । ଦୁହେଁ ତାଙ୍କ ସଂସ୍ଥାକୁ ମୋତେ ନିମନ୍ତ୍ରଣ କରିଗଲେ । ପୁଣି ଦିନେ ଆସି ମୋତେ ଓ ମୋର ସହଧର୍ମିଣୀଙ୍କୁ ତାଙ୍କ ଘରକୁ ନେଇଥିଲେ । ଆମଫୋଇ ସଂସ୍ଥାଟି ଆମକୁ ଖୁବ୍ ଭଲ ଲାଗିଥିଲା । ଏହାର ମୁଖ୍ୟ କାର୍ଯ୍ୟ ହେଉଛି ଜାତି-ଯୌତୁକ-ବିହୀନ ବିବାହ ସଂପାଦନ କରାଇବା । ଆମ ସମାଜରେ ଭିନ୍ନ ଭିନ୍ନ ଜାତିର ପୁଅଝିଅଙ୍କ ବିବାହ ସାଧାରଣତଃ ନିଷିଦ୍ଧ । ପିତାମାତାମାନେ ନିଜ ପୁଅକୁ ଅନ୍ୟ ଜାତିର ଝିଅ ସହିତ କିମ୍ବା ନିଜ ଝିଅକୁ ଅନ୍ୟ ଜାତିର ପୁଅ ସହିତ ବିବାହ ଦେବାକୁ ରାଜି ହୁଅନ୍ତି ନାହିଁ । ତା'ଛଡ଼ା ପୁଅପକ୍ଷ ଝିଅପକ୍ଷଙ୍କ ଠାରୁ ଯୌତୁକ ଦାବି କରନ୍ତି, ଏପରିକି ପ୍ରଚୁର ପରିମାଣରେ ଦାବି କରନ୍ତି । ଏହି କାରଣରୁ ଅନେକ ସ୍ଥଳରେ ଜାତିଭେଦ ଓ ଯୌତୁକ ଦାବି ବିବାହରେ ପ୍ରତିବନ୍ଧକ ସୃଷ୍ଟି କରେ । ଭିନ୍ନ ଭିନ୍ନ ଜାତିର ତରୁଣ ତରୁଣୀ ପରସ୍ପରକୁ ଭଲପାଇ ବିବାହ କରିବାକୁ ଚାହୁଁଥିଲେ ମଧ୍ୟ ଘୋର ବିରୋଧର ସମ୍ମୁଖୀନ ହୁଅନ୍ତି । ଆମଫୋଇ ସଂସ୍ଥା ସେମାନଙ୍କର ବିବାହ ସଂପାଦନ କରେ । ଥରେ ବି.ରାମଚନ୍ଦ୍ରଙ୍କ ଅନୁରୋଧରେ ମୁଁ ଓ ମୋର ପତ୍ନୀ

ଉକ୍ତ ସଂସ୍ଥାକୁ ଯାଇ ଭିନ୍ନ ଭିନ୍ନ ଜାତିର ଦୁଇଟି ତରୁଣ ତରୁଣୀଙ୍କର ବିବାହ ସଂପନ୍ନ କରାଇଥିଲୁ । ଆମଫୋଇରେ ବିବାହ ଅନେକ ସଦସ୍ୟଙ୍କ ଉପସ୍ଥିତିରେ ଲେଖାପଢ଼ା ଓ ଶପଥପାଠ ପୂର୍ବକ ସଂପାଦିତ ହୁଏ । ଏହି କାର୍ଯ୍ୟ ପାଇଁ ଆମଫୋଇ ସଂସ୍ଥା କିଛି ଅର୍ଥ ଗ୍ରହଣ କରନ୍ତି ନାହିଁ ।

ମନୁଷ୍ୟ ସମାଜରେ ଜାତିଭେଦ ଯେ ଘୃଣ୍ୟ ପ୍ରଥା ତଥା ଯୌତୁକ ଦାବି ମଧ୍ୟ ଘୃଣ୍ୟ ପ୍ରଥା, ଏଥିରେ ସନ୍ଦେହ ନାହିଁ । ଜାତିଭେଦ ଉଠାଇବା ପାଇଁ ଓ ଯୌତୁକ ବିହୀନ ବିବାହ ପାଇଁ ଆମଫୋଇର ପଦକ୍ଷେପ ନିଶ୍ଚିତ ଭାବେ ପ୍ରଶଂସନୀୟ । ତଥାପି ବିବାହ ଭଳି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସାମାଜିକ ବ୍ୟବସ୍ଥାକୁ କେବଳ ତରୁଣ ତରୁଣୀଙ୍କ ଭଲପାଇବା ଦୃଷ୍ଟିରୁ ଦେଖିବା ଏବଂ ତାହାକୁ ଅନୁମୋଦନ କରିବା ଉଚିତ ନୁହେଁ । ତେଣୁ ଆମଫୋଇରେ ଯଥେଷ୍ଟ ସାବଧାନତା ଅବଲମ୍ବନ କରାଯାଏ । ବରକନ୍ୟା ଶପଥ କରନ୍ତି ଯେ ସେମାନେ ଆଜୀବନ ପରସ୍ପରକୁ ଭଲପାଇବେ ଏବଂ କେବେହେଲେ କେହି କାହାରିଠାରୁ ବିଛିନ୍ନ ହେବେ ନାହିଁ । ଆମଫୋଇ ଏକ ପୃଥିବୀବ୍ୟାପୀ ସଂସ୍ଥା । କେବଳ ବିବାହ ବିଷୟରେ ନୁହେଁ, ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଯେଉଁସବୁ ଭେଦଭାବ ବା ଅନ୍ଧବିଶ୍ୱାସ ରହିଛି, ସେ ସବୁକୁ ଦୂର କରିବା ପାଇଁ ଆମଫୋଇ କାର୍ଯ୍ୟ କରୁଛି । ଓଡ଼ିଶାରେ ବି. ରାମଚନ୍ଦ୍ର ଓ ତାଙ୍କ ପତ୍ନୀ ସ୍ୱପ୍ନା ଏ ଦିଗରେ ନିରବଚ୍ଛିନ୍ନ ଉଦ୍ୟମ ଚଳାଇଛନ୍ତି ।

ମୋ ଲେଖା, 'ବୌଦ୍ଧିକ ଅନ୍ଧବିଶ୍ୱାସ'ର ଆତ୍ମପ୍ରକାଶ ଦିନଠାରୁ ଓଡ଼ିଶାରେ ହେତୁବାଦୀ ଚିନ୍ତାର ପ୍ରସାର ଘଟିଲା । ଅବଶ୍ୟ ମୁଁ ଆଗରୁ ହେତୁବାଦ କ'ଣ ଜାଣି ନ ଥିଲି । ଏ ଶବ୍ଦ ସହିତ ମଧ୍ୟ ପରିଚିତ ନ ଥିଲି । କିନ୍ତୁ ଯାହା ଲେଖୁଥିଲି, ଯୁକ୍ତିନିଷ୍ଠ ଭାବରେ ଲେଖୁଥିଲି । ମୋର କୌଣସି ଲେଖାରେ ମୁଁ କାହାରି ଉକ୍ତି ବା ମତ ଉପସ୍ଥାପନ କରିନାହିଁ । ମୋତେ ଯାହା ଯୁକ୍ତିଯୁକ୍ତ ବୋଧ ହେଉଥିଲା, ତାହା ମୁଁ ଲେଖୁଥିଲି । ପରେ ମୋତେ ହେତୁବାଦୀ ଲେଖକ ବୋଲି ଅଭିହିତ କରାଗଲା ।

ହେତୁବାଦୀ ସାହିତ୍ୟର ଅଧିକ ବିକାଶ ପାଇଁ ଭୁବନେଶ୍ୱରରୁ 'ଚର୍ଚ୍ଚା' ନାମକ ଏକ ପତ୍ରିକା ପ୍ରକାଶ ପାଇଲା । ଅଧ୍ୟାପକ ଶ୍ରୀ ଧନେଶ୍ୱର ସାହୁ ଓ ଶ୍ରୀ ଦେବେନ୍ଦ୍ର ସୂତାର ଏହାର ପ୍ରଥମ ଉଦ୍ୟୋକ୍ତା ଥିଲେ । ଧନେଶ୍ୱର ରେଭେନ୍ସା କଲେଜରେ ମୋର ଛାତ୍ର ଥିଲେ । 'ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ', 'ଆବ୍ରାହମ୍ କୋଭୁର', 'ସଂସ୍କୃତି' ଓ 'ସର୍ବୋଦୟ' ପ୍ରଭୃତି କେତେକ ଉପାଦେୟ ଗ୍ରନ୍ଥ ସେ ଲେଖିଛନ୍ତି । 'ଚର୍ଚ୍ଚା'ର ପ୍ରଥମ ପ୍ରବନ୍ଧ ଥିଲା 'ବୌଦ୍ଧିକ ଅନ୍ଧବିଶ୍ୱାସ ।' ଏହି ପତ୍ରିକା ୨୦୦୫ ମସିହା ମେ ମାସରୁ

ଆରମ୍ଭ ହୋଇ ଏ ପର୍ଯ୍ୟନ୍ତ ଏକନିଷ୍ଠ ଭାବରେ ଚାଲୁଅଛି । ଏଥିରେ ବହୁ ହେତୁବାଦୀ ଲେଖା ପ୍ରକାଶ ପାଉଅଛି । ଏକ ହେତୁବାଦୀ ସଂଗଠନ ମଧ୍ୟ ଗଠିତ ହୋଇଛି, ଯହିଁରେ ପ୍ରଗତିଶୀଳ ବିଚାରର ବହୁବ୍ୟକ୍ତି ସଭ୍ୟ ହୋଇଛନ୍ତି । ସଭ୍ୟମାନଙ୍କର ସଂଖ୍ୟା ମଧ୍ୟ ବଢୁଅଛି । ସଂଗଠନ ପକ୍ଷରୁ ପ୍ରତିବର୍ଷ ଏକ ବା ଏକାଧିକ ଲେଖକଙ୍କୁ ପୁରସ୍କୃତ କରାଯାଉଅଛି । ମୁଁ ମଧ୍ୟ ପୁରସ୍କୃତ ହୋଇଛି । ପତ୍ରିକାଟିର ବୈଶିଷ୍ଟ୍ୟ ହେଉଛି, ଏଥିରେ ଆଦୌ ବିଜ୍ଞାପନ ଦିଆଯାଏ ନାହିଁ । କେବଳ ବିକ୍ରିଲବ୍ଧ ଅର୍ଥରେ ଏହା ଚାଲେ । ଏହାର କଳେବର ବୃଦ୍ଧି ପାଉଛି, କିନ୍ତୁ ମୂଲ୍ୟ ବୃଦ୍ଧି ହେଉନାହିଁ, ଯେହେତୁ ପାଠକ ସଂଖ୍ୟା ବଢୁଛନ୍ତି । ଏହି ହେତୁବାଦୀ ସଂଗଠନ ଓଡ଼ିଶାରେ ଚେର ଭିଡ଼ିଥିବା ନାନାପ୍ରକାର ଅନ୍ଧବିଶ୍ୱାସକୁ ଦୂର କରିବା ପାଇଁ ବିଭିନ୍ନ ପ୍ରକାର ଉଦ୍ୟମ କରୁଛନ୍ତି । ଆହୁରି ଅନେକଗୁଡ଼ିଏ ପତ୍ରିକା ହେତୁବାଦୀ ବିଚାରଧାରାରେ ଉଦ୍‌ବୁଦ୍ଧ ହୋଇ ଆତ୍ମପ୍ରକାଶ କରିଛି । ଅନେକ ଲେଖକ ମଧ୍ୟ ଏହି ଧାରାରେ ବାହାରିଛନ୍ତି । ମୋର ଆନନ୍ଦ ଯେ 'ବୌଦ୍ଧିକ ଅନ୍ଧବିଶ୍ୱାସ' ଲେଖାଟି ଓ ବକ୍ତୃତାଟି ସର୍ବସାଧାରଣରେ ପ୍ରଥମକରି ହେତୁବାଦର ଦ୍ୱାର ଉନ୍ମୁକ୍ତ କରିଦେଇଛି ।

•••

# ହାୟ ! ଗାଁର ଗରିବ ରୋଗୀ

ଚାକିରିରେ ଥିବା ସମୟରେ ମୁଁ ଦୁଇ ତିନିମାସରେ ଥରେ ଲେଖାଏଁ ଗାଁକୁ ଯାଉଥିଲି । ଥରେ ଗାଁକୁ ଯାଇ ଦାଣ୍ଡ ପିଣ୍ଡାରେ ବସିଥିଲି, ଆମ ପାଖ ଗାଁ 'ତେନ୍ତୁଳିକୋଳି'ର ଜଣେ ଲୋକ, ନାମ ଶ୍ରୀ ହରିହର ବେହେରା, ମୋତେ ଆସି ନମସ୍କାର କଲେ । ସେ ଭାରି ଜୀର୍ଣ୍ଣଶୀର୍ଣ୍ଣ ଦେଖା ଯାଉଥିଲେ । ମୁଁ ତାଙ୍କୁ ଚିହ୍ନି ଥିଲି । ପାଖ ଚାରି ପାଞ୍ଚ ଖଣ୍ଡ ଗାଁର ପ୍ରାୟ ସମସ୍ତଙ୍କୁ ମୁଁ ଚିହ୍ନି ଥିଲି । ପଚାରିଲି – 'ହରି ଭାଇ, ଏମିତି ଜୀର୍ଣ୍ଣଶୀର୍ଣ୍ଣ ଦିଶୁଛ କାହିଁକି ?'

ସେ କହିଲେ – "ନନା, ଦୁଇମାସ ହେଲା ଦେହରେ ଗୁମୁସିଆ ଜର ରହୁଛି । ଖାଇବାକୁ ଇଚ୍ଛା ହେଉନାହିଁ । ଭାରି ଦୁର୍ବଳ ଲାଗୁଛି । ରାଜକନିକା ଡାକ୍ତରଖାନାରୁ ଔଷଧ ଆଣି ଖାଉଛି, ଭଲ ହେଉନି । ଭାବୁଛି ତମ ସାଙ୍ଗରେ କଟକ ଯାଆନ୍ତି । ତମେ ମତେ ଟିକିଏ ବଡ଼ ମେଡ଼ିକାଲକୁ ନେଇ ଦେଖାନ୍ତ ।"

ମୁଁ ସଂଗେସଂଗେ କହିଲି – "ମୁଁ ଦୁଇଦିନ ପରେ ଯିବି । ତୁମେ ମୋ ସଙ୍ଗରେ ଯାଇପାରିବ ?"

ସେ ରାଜି ହେଲେ ।

ଆମେ ଦୁହେଁ ଚାନ୍ଦବାଲିରୁ ବସ୍ ଯୋଗେ ଭଦ୍ରକ ଆସି, ଭଦ୍ରକରୁ ରେଳଯୋଗେ କଟକ ଆସିଲୁ । କଟକରେ ପ୍ରଫେସରପଡ଼ାରେ ମୁଁ ଛୋଟ ଘରଟିଏ ଭଡ଼ା ନେଇ ରହୁଥିଲି । ମୋ ପାଖକୁ ଲାଗି ଆଉ ଗୋଟିଏ ଘରେ ଅଧ୍ୟାପକ ରାଜେନ୍ଦ୍ର ମହାନ୍ତି (ଓଡ଼ିଆ ଅଧ୍ୟାପକ ଥିଲେ, ବର୍ତ୍ତମାନ ସ୍ୱର୍ଗତ) ରହୁଥିଲେ । ହରିହର ମୋ ପାଖରେ ରହିଲେ ।

ତା' ପରଦିନ ସକାଳୁ ମୁଁ ତାଙ୍କୁ ନେଇ ବଡ଼ ମେଡ଼ିକାଲକୁ ଗଲି । ମେଡ଼ିକାଲ ଆଉଟ୍‌ଡୋରରେ ଦେଖାଇଲି । ଆଉଟଡୋର୍ ଡାକ୍ତର ବୋଧହୁଏ ଟି.ବି. ଧରିଛି ବୋଲି ଅନୁମାନ କରି ଟି.ବି. ବିଭାଗକୁ ଯିବାକୁ କହିଲେ । ସେଦିନ ଆଉ ସମୟ ନ ଥିଲା । ଫେରିଆସି ମୁଁ କଲେଜ ଗଲି । ତା'ପରଦିନ ଆମେ ଟି.ବି. ବିଭାଗକୁ ଗଲୁ । ଉକ୍ତ ବିଭାଗର ମୁଖ୍ୟ ଥିଲେ ଡାକ୍ତର ହରିହର ଦାଶ । ଅତ୍ୟନ୍ତ ଦୟାଳୁ ସ୍ୱଭାବର ଲୋକ । ତାଙ୍କର ଜଣେ ସାନଭାଇ ରେଭେନ୍ସା କଲେଜରେ ବିଜ୍ଞାନରେ ଅଧ୍ୟାପକ ଥିଲେ (ବୋଧହୁଏ ଉଦ୍ଭିଦ ବିଜ୍ଞାନରେ । ସାନ ଭାଇଙ୍କ ପତ୍ନୀ ମଧ୍ୟ ଅଧ୍ୟାପିକା ଥିଲେ ଉକ୍ତ କଲେଜରେ ।) ମୁଁ ସିଧାସଳଖ ହରିହର ବାବୁଙ୍କୁ ଭେଟି ରୋଗୀକୁ ଦେଖାଇଲି । ସେ ପରୀକ୍ଷା ନିରୀକ୍ଷା କଲେ ଏବଂ ଟି.ବି. ଧରିଛି ବୋଲି କହିଲେ । ସେତେବେଳେ ଟି.ବି. ପାଇଁ ଦୀର୍ଘ ଚିକିତ୍ସା କରାଯାଉଥିଲା । ପ୍ରତି ମାସରେ ରୋଗୀକୁ ମାସକ ପାଇଁ ଔଷଧ ଦିଆଯାଉଥିଲା । ତେଣୁ ଡାକ୍ତରବାବୁ ମୋତେ ବୁଝାଇ ଦେଲେ ଏବଂ ରୋଗୀ ପ୍ରତ୍ୟେକ ମାସରେ ଆସି ଔଷଧ ନେବା ପାଇଁ କହିଲେ । ସେ ସମୟରେ ଟି.ବି. ଏବଂ ଲେପ୍ରୋସି (କୁଷ୍ଠ) ଏ ଦୁଇ ରୋଗ ପାଇଁ ସରକାରଙ୍କ ପକ୍ଷରୁ ମାଗଣା ଔଷଧ ଦିଆଯାଉଥିଲା । ଡାକ୍ତରବାବୁ ରୋଗୀକୁ ପରାମର୍ଶ ଦେଲେ - "ପ୍ରାୟ ବର୍ଷେ ପର୍ଯ୍ୟନ୍ତ ଔଷଧ ନିୟମିତ ଭାବରେ ଖାଇବ । କ୍ଷୀର୍, ଛେନା, ଫଳ, ପନିପରିବା ପ୍ରଭୃତି ପୁଷ୍ଟିକର ଖାଦ୍ୟ ଖାଇବ । ଯଦି କଟକ ଆସି ଏଠାରୁ ଔଷଧ ନ ନେଇପାରିବ, ତେବେ କେନ୍ଦ୍ରାପଡ଼ା ସରକାରୀ ଡାକ୍ତରଖାନାରୁ ମଧ୍ୟ ଏହି କାର୍ଡ଼ ଦେଖାଇ ନେଇପାରିବ ।"

ରୋଗୀ ହରିହର ମାସକ ପାଇଁ ଔଷଧ ନେଇ ଗାଁକୁ ଫେରିଲେ । ଆଉ ଦୁଇ ତିନିଥର ପ୍ରତି ମାସରେ ଥରେ ଲେଖାଏଁ କଟକ ଆସି ଔଷଧ ନେଇଥିଲେ । ତା'ପରେ କେନ୍ଦ୍ରାପଡ଼ା ଡାକ୍ତରଖାନାରୁ ନେଇଥିଲେ । ସାତ ଆଠମାସ ଭିତରେ ସେ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରିଥିଲେ ।

ଏହି ଘଟଣାରୁ ମୋର ଧାରଣା ହୋଇଥିଲା ଯେ ଗାଁ ଗଣ୍ଡାରେ ଗରିବ ଲୋକେ ନାନା ଗୁରୁତର ବ୍ୟାଧିରେ ମଧ୍ୟ ପୀଡ଼ିତ ହେଉଛନ୍ତି, କିନ୍ତୁ ଜାଣିପାରୁ ନାହାନ୍ତି କି ଉପଯୁକ୍ତ ଚିକିତ୍ସା ପାଇପାରୁ ନାହାନ୍ତି । ତେଣୁ ମୁଁ ମୋ ଗାଁ ଅଞ୍ଚଳରେ ଏକ ସ୍ୱାସ୍ଥ୍ୟସେବା ଶିବିର କରାଇବାକୁ ମନସ୍ଥ କରି ମୋର ପ୍ରିୟ ଛାତ୍ର ଶିଶୁଭବନର ଡାକ୍ତର ସୁବୋଧଚନ୍ଦ୍ର ପ୍ରହରାଜଙ୍କୁ କହିଲି । ସୁବୋଧ ଏଥିରେ ଅଗ୍ରଣୀ ଭୂମିକା ନେବାକୁ ରାଜି ହେଲେ । ମୋର ମାମୁ ପୁଅ ଭାଇ ଶ୍ରୀ ବିରଞ୍ଚି ନାରାୟଣ ମହାପାତ୍ର ଶିଶୁଭବନରେ ଫାର୍ମାସିଷ୍ଟ ଭାବେ ଚାକିରି କରୁଥିଲେ । ତାଙ୍କ ଗାଁ ମୋ ଗାଁ ପାଖରେ । ସେ ମଧ୍ୟ ଆନନ୍ଦରେ ରାଜି ହେଲେ ।

ଆମେ ତିନିଜଣ ଲାଗି ପଡ଼ିଲୁ । ମୁଁ ନେଲି ଆୟୋଜନର ଦାୟିତ୍ୱ, ଅର୍ଥାତ୍ କଟକରୁ ଗାଁକୁ ଯିବା, ଗାଁରେ ଖାଦ୍ୟପେୟ ବ୍ୟବସ୍ଥା କରିବା, ସ୍ୱାସ୍ଥ୍ୟସେବା ଶିବିର ହେବ ବୋଲି ଲୋକଙ୍କୁ ଜଣାଇବା ଇତ୍ୟାଦି । ସେ ଦୁହେଁ ନେଲେ ବିଭିନ୍ନ ବିଭାଗର ଡାକ୍ତରଙ୍କୁ ତଥା ଫାର୍ମାସିଷ୍ଟଙ୍କୁ ଅନୁରୋଧ କରି ଯିବାପାଇଁ ରାଜି କରାଇବା ଏବଂ ବିଭିନ୍ନ ରୋଗ ପାଇଁ ଔଷଧ ସଂଗ୍ରହ କରିବା । ଯାହାହେଉ ଅଠରଜଣ ଡାକ୍ତର ଓ ଛଅଜଣ ଫାର୍ମାସିଷ୍ଟ ଠିକ୍ ହେଲେ । ବଡ଼ ମେଡ଼ିକାଲର ତଥା ଶିଶୁଭବନର ଡାକ୍ତରମାନଙ୍କଠାରୁ ବହୁ ପରିମାଣରେ ସାମ୍ପଲ୍ ଔଷଧ ସଂଗ୍ରହ କରାଗଲା ।

ଆମ ଗାଁ ପାଖ ମଧୁପଡ଼ା ଗାଁର ଶ୍ରୀ ରବିନାରାୟଣ ନାୟକ ସରକାରଙ୍କ ବନ ବିଭାଗରେ ଏକ ରେଞ୍ଜର ପଦରେ ଥିଲେ । କନିକା, ରାଜନଗର, ଭିତରକନିକା ପ୍ରଭୃତ ବନାଞ୍ଚଳ ତାଙ୍କ ଦାୟିତ୍ୱରେ ଥିଲା । ତେଣୁ ତାଙ୍କର ପ୍ରତିପତ୍ତି ଥିଲା । ସେ ନିଜ ବ୍ୟୟରେ ଦୁଇଟି ବଡ଼ ଜିପ୍ ଯୋଗାଇ ଦେଇଥିଲେ । ଡାକ୍ତରମାନେ, ଫାର୍ମାସିଷ୍ଟମାନେ ଓ ମୁଁ ଉକ୍ତ ଜିପ୍ ଯୋଗେ କଟକରୁ ଆଳି ଗଡ଼ଗଡ଼ି ଘାଟ ପର୍ଯ୍ୟନ୍ତ ଗଲୁ ଏବଂ ସେଠାରୁ ଖରସୁଆଁ ନଈରେ ନୌକାଯୋଗେ ଯାଇ ନଈକୂଳରେ ଅବସ୍ଥିତ 'ମହାଦେଇ ଆଡ଼ିଆ' ଗାଁରେ ଓହ୍ଲାଇଲୁ । ସେଠାରୁ 'ଆୟତନ' ଗାଁ ଏକ କି.ମି.ରୁ କମ୍ । ଔଷଧ ପେଟିଗୁଡ଼ିକୁ ମୂଲିଆଙ୍କ ଦ୍ୱାରା ବୁହାଇ ନେଲୁ ।

'ଆୟତନ' ଗାଁର କନିକା ହାଇସ୍କୁଲରେ ସ୍ୱାସ୍ଥ୍ୟସେବା ଶିବିର ଅନୁଷ୍ଠିତ ହୋଇଥିଲା । ଆଗରୁ ପ୍ରଚାର କରାଯାଇଥିଲା । ତେଣୁ ଲୋକ ପ୍ରାୟ ଦୁଇହଜାର ଆସି ରୁଣ୍ଡ ହୋଇଥିଲେ । ସ୍ୱାସ୍ଥ୍ୟସେବା ଦିନ ୧୦ଟାରୁ ଆରମ୍ଭ ହୋଇ ସଂପୂର୍ଣ୍ଣ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଚାଲିଥିଲା । ଫାର୍ମାସିଷ୍ଟମାନେ ସେମାନଙ୍କର ଯନ୍ତ୍ରପାତି ନେଇଥିଲେ । ତେଣୁ ରକ୍ତ, ଝାଡ଼ା, ମୂତ୍ରାଦି ପରୀକ୍ଷା ମଧ୍ୟ ହୋଇପାରିଲା । ଜଣେ ଡେଣ୍ଟିଷ୍ଟ ଡାକ୍ତର ମଧ୍ୟ ତାଙ୍କର ଉପକରଣ ନେଇ ଯାଇଥିଲେ । ସେ ଉତ୍ତମ ଭାବେ ଦନ୍ତରୋଗୀମାନଙ୍କର ଚିକିତ୍ସା କଲେ । ଅନ୍ୟାନ୍ୟ ବିଭାଗର ଡାକ୍ତରମାନେ ପ୍ରେସ୍କ୍ରିପସନ୍ ଦେବା ସଂଗେସଂଗେ ଔଷଧ ମଧ୍ୟ ଦେଲେ । ଶୃଙ୍ଖଳିତ ଭାବେ ପ୍ରାୟ ୨୦୦୦ ରୋଗୀଙ୍କର ଚିକିତ୍ସା ହୋଇଥିଲା । ଆଶ୍ଚର୍ଯ୍ୟର ବିଷୟ, ରୋଗୀମାନଙ୍କ ମଧ୍ୟରେ କେତେଜଣ କୁଷ୍ଠରୋଗୀ ମଧ୍ୟ ଥିଲେ, କିନ୍ତୁ ସେମାନେ ରୋଗକୁ ଲୁଚାଇ ରଖିଥିଲେ । ସେମାନଙ୍କୁ ପ୍ରାଥମିକ ଔଷଧ ଦିଆଯିବା ପରେ ତାଗିଦା କରି କୁହାଯାଇଥିଲା – "ଶୀଘ୍ର କଟକ ବଡ଼ମେଡ଼ିକାଲକୁ ଯାଇ ସେଠାରେ ଡାକ୍ତରଙ୍କୁ ଦେଖାଇବ ଏବଂ ସେଠାରୁ ଔଷଧ ଆଣି ନିୟମିତ ଭାବରେ ସେବନ କରିବ ।" ମେଡ଼ିକାଲରେ ଦେଖାଇବା ପାଇଁ ସ୍ୱାସ୍ଥ୍ୟସେବା ଶିବିର ପକ୍ଷରୁ

ସେମାନଙ୍କୁ କାର୍ଡ ମଧ୍ୟ ଦିଆଯାଇଥିଲା । କେତେକ ଟି.ବି. ରୋଗୀଙ୍କୁ ମଧ୍ୟ ଚିହ୍ନଟ କରାଯାଇଥିଲା । ସେମାନଙ୍କୁ ମଧ୍ୟ ପ୍ରାଥମିକ ଚିକିତ୍ସା କରାଯାଇ ପରାମର୍ଶ ଦିଆଯାଇଥିଲା, କଟକ ବଡ଼ମେଡ଼ିକାଲକୁ ଯିବା ପାଇଁ ଏବଂ ନିୟମିତ ଭାବରେ ଔଷଧ ଆଣି ସେବନ କରିବା ପାଇଁ ।

ସ୍ୱାସ୍ଥ୍ୟସେବା ଶିବିର ସମାପ୍ତ ହେବା ପରେ ଆମେ ସମସ୍ତେ କଟକ ଫେରିଲୁ । ତା' ପରଦିନ ମୁଁ ଡାକ୍ତର ପ୍ରଫେସର ହରିହର ଦାଶଙ୍କ ପାଖକୁ ଯାଇ ତାଙ୍କୁ ଚିହ୍ନଟ ହୋଇଥିବା କୁଷ୍ଠ ଓ ଯକ୍ଷ୍ମା ରୋଗୀଙ୍କ ବିଷୟରେ କହିଥିଲି ଏବଂ ସେମାନଙ୍କୁ ସାହାଯ୍ୟ କରିବାକୁ ଅନୁରୋଧ କରିଥିଲି । ସେତେବେଳେ ସେ ଥିଲେ ଉଭୟ ବିଭାଗର ମୁଖ୍ୟ । ପ୍ରକୃତରେ ଚିହ୍ନଟ ହୋଇଥିବା ରୋଗୀମାନେ ମେଡ଼ିକାଲ ଆସିଥିଲେ ଏବଂ ଡାକ୍ତରଙ୍କ ପରାମର୍ଶକ୍ରମେ ଔଷଧ ସେବନ କରି ରୋଗମୁକ୍ତ ହୋଇଥିଲେ । ସ୍ୱାସ୍ଥ୍ୟସେବା ଶିବିର ପାଇଁ ଏତେ ପରିମାଣରେ ଔଷଧ ସଂଗ୍ରହ କରାଯାଇଥିଲା ଯେ ରୋଗୀମାନଙ୍କୁ ଦିଆଯିବା ପରେ ମଧ୍ୟ ଅନେକଗୁଡ଼ିଏ ଔଷଧ ପେଟି ବଳିଥିଲା । ସେଗୁଡ଼ିକୁ ମୁଁ ଗାଁ ଘରେ ରଖିଦେଇ ଆସିଥିଲି । ଓଲାଭରର ଶ୍ରୀ ଗୋବିନ୍ଦ ଦାସ ଯେ କି ଓଲାଭରରେ ଡାକ୍ତରଖାନା, କଲେଜ ପ୍ରଭୃତି ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ, ସେ ସେହି ପେଟିଗୁଡ଼ିକୁ ନେଇ ଓଲାଭର ଡାକ୍ତରଖାନାକୁ ଦେଇଥିଲେ । ସେତେବେଳେ ଓଲାଭରରେ ଅନୁଷ୍ଠାନଗୁଡ଼ିକ ସରକାରୀ ହୋଇ ନ ଥିଲା ।

ଅନୁରୂପ ଭାବରେ ମୁଁ ଆଉ ଥରେ ସ୍ୱାସ୍ଥ୍ୟସେବା ଶିବିର ତା' ପରବର୍ଷ ଆଳିର 'ମହୁ' ଗ୍ରାମଠାରେ ଅନୁଷ୍ଠିତ କରାଇଥିଲି । ସେହି ପୂର୍ବର ଡାକ୍ତରମାନେ ଓ ଫାର୍ମାସିଷ୍ଟମାନେ ଯାଇଥିଲେ ଏବଂ ବହୁ ପରିମାଣରେ ଔଷଧ ମଧ୍ୟ ନିଆଯାଇଥିଲା । ଶ୍ରୀ ରବିନାରାୟଣ ନାୟକ ମଧ୍ୟ ଦୁଇଟି ଜିପ୍ ଯୋଗାଇ ଦେଇଥିଲେ । 'ମହୁ' ଗ୍ରାମର ହାଇସ୍କୁଲଠାରେ ସ୍ୱାସ୍ଥ୍ୟସେବା ଶିବିର ଅନୁଷ୍ଠିତ ହୋଇଥିଲା । 'ମହୁ' ଗ୍ରାମର ପ୍ରସିଦ୍ଧ ତ୍ରିପାଠୀ ବଂଶର ଶ୍ରୀ ଭରତଚନ୍ଦ୍ର ତ୍ରିପାଠୀ ପୃଷ୍ଠପୋଷକତା କରିଥିଲେ । ଉତ୍ତମରୂପେ ଖାଦ୍ୟପେୟର ବ୍ୟବସ୍ଥା କରିବା ସଂଗେସଂଗେ ଶୃଙ୍ଖଳିତ ଭାବେ ସେବା ଶିବିରର ପରିଚାଳନା କରିଥିଲେ । ଭରତବାବୁ ଓ ତାଙ୍କ ବଡ଼ଭାଇ ବିଦ୍ୟାଧର ବାବୁ ସେ ଅଞ୍ଚଳର ବହୁ ଜନହିତକର କାର୍ଯ୍ୟ କରିଯାଇଛନ୍ତି । ବିଦ୍ୟାଧର ବାବୁଙ୍କ ସାନ ପୁଅ ଭେଟରିନାରି ଡାକ୍ତର ଶ୍ରୀ ବିବେକାନନ୍ଦ ତ୍ରିପାଠୀ ମୋର ପ୍ରିୟ ଛାତ୍ର । ସେ ମାରାଥନ୍ ରେସ୍ (ଦ୍ରୁତ ଧାବନ) ରେ ଦକ୍ଷତା ଲାଭ କରି ସ୍ୱଦେଶରେ ତଥା ବିଦେଶରେ କ୍ରୀଡ଼ାରେ ଭାଗ ନେଇଛନ୍ତି ଏବଂ ଏକାଧିକ ପଦକ ହାସଲ କରିଛନ୍ତି ।

ପ୍ରକୃତରେ ମୁଁ ଏ ସବୁ ଯେଉଁ କଥା ଲେଖୁଛି, ସେ ସମୟ ଥିଲା ସେହିପରି । ଲୋକମାନେ ଥିଲେ ସରଳ ଓ ସାହାଯ୍ୟପରାୟଣ । (ଅବଶ୍ୟ ଖଳଲୋକ ଯେ ଆଦୌ ନ ଥିଲେ, ତା' ନୁହେଁ) ତେଣୁ ମୋର ମଧ୍ୟ ସାଧ୍ୟମତେ ସାହାଯ୍ୟ କରିବାକୁ ମନ ବଳୁଥିଲା । କେହି ଅନୁରୋଧ କଲେ ତାହାକୁ ଏଡ଼ାଇଦେବାକୁ ଇଚ୍ଛା ହେଉ ନ ଥିଲା । ଲୋକେ ଅନ୍ୟର ଉପକାର କରି ଆନନ୍ଦ ପାଉଥିଲେ । ଏହି କାରଣରୁ ମୁଁ କେତେକଙ୍କୁ ଶିକ୍ଷକ ଟ୍ରେନିଂରେ ପୂରାଇ ଦେଇଥିଲି, କେତେକଙ୍କୁ ମେଡ଼ିକାଲ ଚିକିତ୍ସାରେ ସାହାଯ୍ୟ କରିଥିଲି, କେତେକଙ୍କୁ ଚାକିରି କରାଇ ଦେଇଥିଲି, କାହାରି କାହାରି କୌଣସି ଅଫିସ୍ କାମ ମଧ୍ୟ କରାଇ ଦେଇଥିଲି । ଗାଁ ଲୋକ କଟକ ଆସିଲେ ମୋ ପାଖରେ ରହୁଥିଲେ । ସେମାନଙ୍କର କେତେକ କାର୍ଯ୍ୟ ମୋ ଛାତ୍ରମାନଙ୍କ ସାହାଯ୍ୟରେ କରାଇବା ମୋ ପକ୍ଷେ ସମ୍ଭବ ମଧ୍ୟ ହେଉଥିଲା । ଶ୍ରୀ ସୁରେନ୍ଦ୍ରନାଥ ସ୍ୱାଇଁ, ଯେ କି ପୋଲିସ୍ ଆଇ.ଜି. ପଦରୁ ଅବସର ନେଇଛନ୍ତି, ସେ ମୋତେ ବହୁତ ସାହାଯ୍ୟ କରିଛନ୍ତି । ସେ ଆମ ଅଞ୍ଚଳ ପିଲା, ମୁଁ ତାଙ୍କୁ ପିଲାଦିନେ ବହୁତ ଶ୍ରଦ୍ଧା କରୁଥିଲି ।



# 'ପୁନର୍ଜୀବନ'ରୁ ପୁନର୍ଜୀବନ

ମୁଁ ସୁନ୍ଦରଗଡ଼ କଲେଜରେ ସଂସ୍କୃତ ଅଧ୍ୟାପକ ଥିବା ସମୟରେ ଦିନେ କଲେଜ ଲାଇବ୍ରେରୀର ଇଂରାଜୀ ବିଭାଗରେ ରୁଷୀୟ ଲେଖକ ଲିଓ ଟଲଷ୍ଟୟଙ୍କ ରଚିତ 'Resurrection' ଉପନ୍ୟାସଟି ଦେଖିଲି । ମୁଁ ଆଗରୁ ଏହି ବିଶ୍ୱପ୍ରସିଦ୍ଧ ଉପନ୍ୟାସର ନାମ ଶୁଣିଥିଲି ଏବଂ ଜାଣିଥିଲି ଯେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଥିବା ସମୟରେ ଏହି ଉପନ୍ୟାସଟି ପଢ଼ିବାକୁ ପାଇଥିଲେ ଏବଂ ଏହା ତାଙ୍କର ଜୀବନଧାରାକୁ ବଦଳାଇ ଦେଇଥିଲା । ପ୍ରଥମେ ତାଙ୍କର ଇଚ୍ଛା ଥିଲା ଭଲ ଓକିଲ ହେବେ ଏବଂ ଓକିଲାତିରୁ ଉପାର୍ଜନ କରି ଆନନ୍ଦରେ ସପରିବାର ଜୀବନଯାପନ କରିବେ । କିନ୍ତୁ 'Resurrection' ଉପନ୍ୟାସଟି ପଢ଼ିଲା ପରେ ତାଙ୍କର ଚିନ୍ତାଧାରା ବଦଳିଗଲା ।

ମୁଁ ଆଗରୁ କୌଣସି ବହିରୁ ଏହା ପଢ଼ିବାକୁ ପାଇଥିଲି । ତେଣୁ ଲାଇବ୍ରେରୀରୁ 'Resurection' ବହିଟି ଆଣି ପଢ଼ିବାକୁ ଆରମ୍ଭ କଲି । ଦଶ ବାର ପୃଷ୍ଠା ପଢ଼ିଲା ପରେ ମୋତେ ଏତେ ଭଲ ଲାଗିଲା ଯେ ପ୍ରାୟ ଦୁଇ ମାସ ଭିତରେ ବହିଟି ପଢ଼ା ସାରିଦେଲି । ମୋ ମାତୃଭାଷାରେ ଏହି ବହିଟିର ଅନୁବାଦ କରିବା ମୋ ପକ୍ଷରେ କର୍ତ୍ତବ୍ୟ, ଏହା ଭାବି ଅନୁବାଦରେ ଲାଗିଗଲି । ପ୍ରତିଦିନ ମୋର ଅନ୍ୟାନ୍ୟ ସମସ୍ତ କର୍ତ୍ତବ୍ୟ ସାରି ଗୋଟିଏ ଲେଖାଏଁ ପୃଷ୍ଠା ଅନୁବାଦ କଲି । ବହିର ପ୍ରାୟ ଅଧା ଅନୁବାଦ ହୋଇଛି, ରେଭେନ୍ସା କଲେଜକୁ ମୋର ବଦଳି ହେଲା । ସୁନ୍ଦରଗଡ଼ କଲେଜ ଲାଇବ୍ରେରୀରେ ବହିଟି ଫେରାଇଦେଇ-ଆସିଥିବା ହେତୁ ରେଭେନ୍ସା କଲେଜ କନିକା ଲାଇବ୍ରେରୀରୁ ବହିଟି ସଂଗ୍ରହ କରି ପୁଣି ଅନୁବାଦରେ ଲାଗିଗଲି । କଲେଜରେ

ଓଡ଼ିଆ ଓ ସଂସ୍କୃତ ବିଭାଗରେ ବହୁତ କ୍ଲାସ ନେବା ଓ ତତ୍ ସଂଗେସଂଗେ ବହୁତ ପାରିବାରିକ ଜଞ୍ଜାଳ ଭିତରେ ମଧ୍ୟ ଅନୁବାଦ ଅବ୍ୟାହତ ରଖିଥିଲି । ଶେଷ ଆଡ଼କୁ ମୁଁ ରୋଗଗ୍ରସ୍ତ ହୋଇପଡ଼ିଲି ଏବଂ କଟକ ବଡ଼ମେଡ଼ିକାଲରେ ମାସାଧିକ କାଳ ଚିକିତ୍ସିତ ହୋଇ ବଡ଼ କଷ୍ଟରେ ଆରୋଗ୍ୟ ଲାଭ କରିଥିଲି । ଏ କଥା ମୁଁ ଏଥିପୂର୍ବରୁ ଲେଖିଛି । ପ୍ରକୃତରେ ମୁଁ ପ୍ରାୟ ମୃତ୍ୟୁମୁଖରେ ପଡ଼ିଥିଲି, ଭାଗ୍ୟବଳରୁ ପୁନର୍ଜୀବନ ଲାଭ କରିଥିଲି । ବାସ୍ତବରେ 'Resurrection' ର ଅନୁବାଦର ନାମ ହେଲା 'ପୁନର୍ଜୀବନ' । ଇଂରାଜୀ ଶବ୍ଦଟିର ଅର୍ଥ ସେଇଆ । ଏହାକୁ ପ୍ରକାଶ କଲେ କଟକର ଫ୍ରେଣ୍ଡ୍ସ ପବ୍ଲିଶର୍ସ, ୧୯୬୭ ମସିହାରେ ।

ସେ ସମୟରେ ରୁଷିଆ ସହିତ ଭାରତର ପରମ ବନ୍ଧୁତା ଥିଲା । ରୁଷିଆକୁ କୁହାଯାଉଥିଲା U.S.S.R. (United Soviet States of Russia) ଅର୍ଥାତ୍ ଅନେକଗୁଡ଼ିଏ ସମାଜବାଦୀ ଦେଶ ମିଶି ଏକ ସଂଘରାଷ୍ଟ୍ର ଗଢ଼ିଥିଲେ । ଭାରତ ସ୍ୱାଧୀନତା ଲାଭ କଲା ଦିନୁ, ତା' ପୂର୍ବରୁ ମଧ୍ୟ ରୁଷିଆ ଭାରତକୁ ବହୁ ପ୍ରକାରେ ସାହାଯ୍ୟ କରିଥିଲା । ଭାରତର ବିପଦର ବନ୍ଧୁ ଥିଲା ରୁଷିଆ । ତାହାରି ଆଦର୍ଶରେ ଭାରତକୁ ଏକ ସମାଜବାଦୀ ଜନତନ୍ତ୍ର ବୋଲି ସମ୍ବିଧାନରେ ଘୋଷଣା କରାଯାଇଥିଲା Socialist Republic) । ମୁଁ ସମାଜବାଦକୁ ଖୁବ୍ ଭଲ ପାଉଥିଲି । ନିଜେ ଜଣେ ଦରିଦ୍ର ଶ୍ରେଣୀର ଲୋକ ହୋଇଥିବାରୁ ଭାରତର ଅଗଣିତ ଦରିଦ୍ର ଲୋକଙ୍କ ପାଇଁ ତାହା ସର୍ବଶ୍ରେଷ୍ଠ ମଙ୍ଗଳକର ଶାସନତନ୍ତ୍ର ବୋଲି ବିବେଚନା କରୁଥିଲି । ରୁଷିଆ ପକ୍ଷରୁ 'ସୋଭିଏତ୍ ଦେଶ' ନାମକ ପତ୍ରିକା ଭାରତର ସବୁ ଭାଷାରେ ପ୍ରକାଶ ପାଉଥିଲା । ଓଡ଼ିଆ ଭାଷାରେ ପ୍ରକାଶିତ 'ସୋଭିଏତ୍ ଦେଶ' ମୁଁ ନିୟମିତ ଭାବରେ ମଗାଇ ପଢୁଥିଲି । ସେ ସମୟରେ ରୁଷିଆରେ ବିଜ୍ଞାନର ଖୁବ୍ ଅଗ୍ରଗତି ଘଟୁଥାଏ । ରୁଷିଆର ରକେଟ୍ ଯାନ (ଲୁନା) ପ୍ରଥମ କରି ଚନ୍ଦ୍ରପୃଷ୍ଠକୁ ଯାଇଥିଲା । ଜଣେ ରୁଷୀୟ ମହିଳା ସେହି ଯାନରେ ଯାଇ ଚନ୍ଦ୍ରପୃଷ୍ଠରେ ଅବତରଣ କରିଥିଲେ । ଯେଉଁଦିନ ଏହି ଘଟଣା ଘଟିଥିଲା, ଭାରତବାସୀ ଆନନ୍ଦରେ ଉତ୍ଫୁଲ୍ଲ ହୋଇଉଠିଥିଲେ । କଟକରେ 'ନବଯୁଗ ଗ୍ରନ୍ଥାଳୟ' ଖୋଲାଯାଇ ସେଠାରେ ସମାଜବାଦ ଓ ରୁଷିଆ ସମ୍ବନ୍ଧୀୟ ପୁସ୍ତକମାନ ବିକ୍ରୟ କରାଯାଉଥିଲା ।

ଭାରତ-ରୁଷିଆ ମୈତ୍ରୀସଂଘ ମଧ୍ୟ ଗଢ଼ା ହୋଇଥିଲା । ପ୍ରତିବର୍ଷ ସେହି ସଂଘର ଆନୁକୂଲ୍ୟରେ କେତେକ ସମାଜବାଦୀ କବି, ଲେଖକ, ଚିତ୍ରକର, ଅଭିନେତା, ଜନସେବୀ ଆଦି ଶ୍ରେଣୀର ଲୋକ ରୁଷିଆ ପରିଦର୍ଶନରେ ଯାଉଥିଲେ ଏବଂ ରୁଷିଆକୁ ମଧ୍ୟ ସେହିଭଳି

ଲୋକ ଭାରତ ପରିଦର୍ଶନରେ ଆସୁଥିଲେ । ଆମ ଓଡ଼ିଶାରୁ ଖ୍ୟାତନାମା ସମାଜବାଦୀ ଆଡ୍‌ଭୋକେଟ୍ ଶ୍ରୀ ବିଶ୍ୱନାଥ ପଶାୟତ ରୁଷିଆ ଯାଇଥିଲେ ଏବଂ ବହୁ ପରେ କଟକର ଶ୍ରୀ ଲକ୍ଷ୍ମୀନାରାୟଣ ଚୌଧୁରୀ ମଧ୍ୟ ଯାଇଥିଲେ । ସମାଜବାଦୀ ଜନନାୟକ ଲେନିନଙ୍କ ନାମ ସେତେବେଳେ ସମସ୍ତଙ୍କ ହୃଦୟରେ ସ୍ପନ୍ଦନ ସୃଷ୍ଟି କରୁଥିଲା, କିନ୍ତୁ ଆମେରିକା ହୃଦୟରେ ଜ୍ୱଳନ ସୃଷ୍ଟି କରୁଥିଲା, ଯଦିଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ରୁଷିଆ ହିଟଲରଙ୍କ ବିରୋଧରେ ଆମେରିକା ସପକ୍ଷରେ ଯୁଦ୍ଧ କରି ହିଟଲରଙ୍କୁ ପରାସ୍ତ କରିଥିଲା ।

ରୁଷିଆର ପ୍ରଧାନମନ୍ତ୍ରୀ ନିକିତା କ୍ରୁଶ୍ଚେଭ ଭାରତ ପରିଦର୍ଶନରେ ଆସିଥିଲେ, ବୋଧହୁଏ ୧୯୫୭/୫୮ ମସିହାରେ । ମୋର ମନେ ଅଛି, କ୍ରୁଶ୍ଚେଭ ଭାରତରେ ଏକ କୃଷିକ୍ଷେତ୍ର ଦେଖିବାକୁ ଚାହିଁଥିଲେ । ନେହେରୁ ଥିଲେ ଭାରତ ପ୍ରଧାନମନ୍ତ୍ରୀ । ସେ ତାଙ୍କୁ ଏକ କୃଷିକ୍ଷେତ୍ର (ହରିୟାଣାରେ) ଦେଖାଇବାକୁ ନେଇଥିଲେ । କୃଷିକ୍ଷେତ୍ରରେ ଜଣେ ଟ୍ରାକ୍ଟରଚାଳକ ଟ୍ରାକ୍ଟର ଚଳାଇ ହଳ କରୁଥିଲେ । କ୍ରୁଶ୍ଚେଭ ଟ୍ରାକ୍ଟର ଚାଳନାରେ ତାଙ୍କର ତ୍ରୁଟି ଲକ୍ଷ୍ୟ କରି ଜଣେ କୃଷି ଇଞ୍ଜିନିୟରଙ୍କୁ ଟ୍ରାକ୍ଟର ଚଳାଇବାକୁ କହିଲେ । କୃଷି ଇଞ୍ଜିନିୟର ଟ୍ରାକ୍ଟର ଚଳାଇ ପାରିଲେ ନାହିଁ । ବଡ଼ ବଡ଼ କୃଷି ଇଞ୍ଜିନିୟରଙ୍କୁ ମଧ୍ୟ ଚଳାଇବାକୁ କୁହାଗଲା, କିନ୍ତୁ କେହି ପାରିଲେ ନାହିଁ । କ୍ରୁଶ୍ଚେଭ ମନ୍ତବ୍ୟ ଦେଇଥିଲେ - "ବହୁତ ପାଠ ପଢ଼ି ମଧ୍ୟ ବାସ୍ତବ କର୍ମରେ ଅଭିଜ୍ଞ ନ ହେଲେ ଦେଶର ଉନ୍ନତି ହୋଇପାରିବ ନାହିଁ । ବୈଷୟିକ ବିଦ୍ୟା (ଟେକ୍ନିକାଲ ପାଠ) ପଢ଼ିବାର ଅର୍ଥ ନୁହେଁ ଖାଲି ଚାକିରି କରିବା । ବିଦ୍ୟା ସହିତ ଶାରୀରିକ ଶ୍ରମ ଦରକାର ଏବଂ ବାସ୍ତବ କ୍ଷେତ୍ରରେ ନିପୁଣତା ଲାଭ କରିବା ଦରକାର ।" ଏହା କହି ସେ ନିଜେ ଟ୍ରାକ୍ଟର ଉପରକୁ ଚଢ଼ି ଯାଇଥିଲେ ଏବଂ ଦକ୍ଷତାର ସହିତ ଟ୍ରାକ୍ଟର ଚଳାଇଥିଲେ ।

ସେତେବେଳେ ରୁଷିଆ ପକ୍ଷରୁ ଭାରତୀୟ ସମାଜବାଦୀ ସାହିତ୍ୟିକମାନଙ୍କୁ ପୁରସ୍କାର ଦିଆଯିବାର ବ୍ୟବସ୍ଥା ହୋଇଥିଲା । ଏହା ଜାଣି ମୁଁ 'Resurrection' ର ଅନୁବାଦ 'ପୁନର୍ଜୀବନ' ବହିଟିକୁ ସେହି ଉଦ୍ଦେଶ୍ୟରେ ଦାଖଲ କରିଥିଲି । ସୌଭାଗ୍ୟକୁ ଏହା ଗୃହୀତ ହୋଇଥିଲା ଏବଂ ମୋତେ ଏକହଜାର ଟଙ୍କା ସହିତ ମାନପତ୍ର ଦିଆଯିବ ବୋଲି ଘୋଷଣା କରାଯାଇଥିଲା । କଲିକତାରେ ଥିଲା ରୁଷିଆର ଦୂତାବାସ (ବୋଧହୁଏ ବାଣିଜ୍ୟ ଦୂତାବାସ) । ସେଠାରେ ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତ ରହି ପୁରସ୍କାର ଗ୍ରହଣ କରିବାକୁ ମୋତେ ପତ୍ରଦ୍ୱାରା ଅନୁରୋଧ କରାଯାଇଥିଲା । ତତ୍ ସଂଗେସଂଗେ ଟ୍ରେନ୍‌ରେ ଯାତାୟତ ଖର୍ଚ୍ଚ ଓ କଲିକତାରେ ଚାରିଦିନ ପାଇଁ ରହିବା, ଖାଇବା ଆଦିର ବ୍ୟବସ୍ଥା କରାଯିବ ବୋଲି ଜଣାଇ ଦିଆଯାଇଥିଲା ।

ମୁଁ ଟ୍ରେନ୍‌ରେ କଲିକତା ଯାଇଥିଲି । ହାୱାଡ଼ା ଷ୍ଟେସନରୁ ଟ୍ୟାକ୍ସିଯୋଗେ ଯାଇ ନିର୍ଦ୍ଦିଷ୍ଟ ହୋଟେଲରେ ପହଞ୍ଚିଲି । ସେଠାରେ ଦୂତାବାସ ପକ୍ଷରୁ ମୋ ପାଇଁ ସମସ୍ତ ସୁବ୍ୟବସ୍ଥା କରାଯାଇଥିଲା । ନିର୍ଦ୍ଦିଷ୍ଟ ଦିନ ମୁଁ ଏକ ସଭାରେ ଯୋଗ ଦେଇଥିଲି ଏବଂ ସେଠାରେ ପୁରସ୍କାର ଗ୍ରହଣ କରିଥିଲି । କାହା ହାତରୁ ଗ୍ରହଣ କରିଥିଲି, ଆଉ ମନେ ନାହିଁ । ଓଡ଼ିଶା, ଆସାମ ଓ ବଙ୍ଗ, ଏହି ତିନି ପ୍ରଦେଶର ସାହିତ୍ୟିକମାନେ, ଯେଉଁମାନେ କି ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ, ସେମାନେ ମଧ୍ୟ ପୁରସ୍କାର ଗ୍ରହଣ କରିଥିଲେ । ଓଡ଼ିଶାର ଶ୍ରୀ ଗୋବିନ୍ଦଚନ୍ଦ୍ର ମହାନ୍ତି ମଧ୍ୟ ପୁରସ୍କୃତ ହୋଇଥିଲେ ।

ତା'ପରଦିନ ମୁଁ ରୁଷୀୟ ଦୂତାବାସ ଦେଖିବାକୁ ଯାଇଥିଲି । ସେଠାରେ ଅଧିକ ସଂଖ୍ୟାରେ ରୁଷୀୟ ତରୁଣୀ କାମ କରୁଥିଲେ । ପ୍ରତ୍ୟେକଙ୍କ ଟେବୁଲ ଉପରେ ଗୋଟିଏ ଗୋଟିଏ ଫଳ ବାସ୍କେଟ ଥୁଆ ହୋଇଥିଲା । ସେମାନେ କାମ କଲାବେଳେ ମଝିରେ ମଝିରେ ଫଳ ଖାଉଥିଲେ ଏବଂ ଯେ ତାଙ୍କ ପାଖକୁ ଯାଉଥିଲେ, ସେମାନଙ୍କୁ ଫଳ ଖାଇବାକୁ ଯାଚୁଥିଲେ । ସେମାନଙ୍କର ଶିଷ୍ଟତା ଓ ଆନ୍ତରିକତା ମୋତେ ମୁଗ୍ଧ କରିଥିଲା ।

ଦୂତାବାସର ବ୍ୟବସ୍ଥା ଅନୁସାରେ ମୁଁ ହୋଟେଲରେ ଚାରିଦିନ ରହିଥିଲି । ତା'ପରେ କଲିକତା ସହର ବୁଲି ଦେଖିବା ଉଦ୍ଦେଶ୍ୟରେ ଜଣେ ପରିଚିତ ଓଡ଼ିଆଙ୍କ ଘରେ ଆଉ ତିନିଦିନ ରହିଥିଲି । ଅଧ୍ୟାପକ ଶ୍ରୀ ରତ୍ନାକର ଦାସ (ଘର ଚାନ୍ଦବାଲି) ରେଭେନ୍ସା କଲେଜରେ ଓଡ଼ିଆ ଏମ୍.ଏ. ପଢୁଥିବାବେଳେ ମୋର ଛାତ୍ର ଥିଲେ । ତାଙ୍କର ଭାଣିଜୀଜୋଇଁ ସପରିବାର କଲିକତାରେ ରହୁଥିଲେ । ସେଠାରେ ସେ ଚାକିରି କରୁଥିଲେ । ରତ୍ନାକର ତାଙ୍କ ସହିତ ଯୋଗଯୋଗ କରି ତାଙ୍କ ଘରେ ମୋ ରହିବା ପାଇଁ ବ୍ୟବସ୍ଥା କରିଦେଇଥିଲେ । ତାଙ୍କ ଭାଣିଜୀର ଡାକ ନାମ 'ବୁଢ଼ୀ' । ବୁଢ଼ୀର ଆଦର ଅଭ୍ୟର୍ଥନା ମୁଁ ଭୁଲିପାରିବି ନାହିଁ ।

ମୋତେ କଲିକତାର ବିଭିନ୍ନ ସ୍ଥାନ ଦେଖାଇବା ପାଇଁ ମୁଁ ମୋର ଛାତ୍ର ଶ୍ରଦ୍ଧେୟ ରାଧେଶ୍ୟାମ ଅଗ୍ରୱାଲଙ୍କୁ କହିଥିଲି । ରାଧେଶ୍ୟାମ କଟକ ରେଭେନ୍ସା କଲିଜିଏଟ୍ ସ୍କୁଲରେ ପଢୁଥିଲାବେଳେ ଛାତ୍ରବାସରେ ରହୁଥିଲେ । ମୁଁ ଛାତ୍ରବାସର ସହକାରୀ ପରିଚାଳକ ଥିଲି । ତାଙ୍କର ପିତା ଥିଲେ ନନ୍ଦରାମ ହୁନ୍ତ୍‌ରାମ, ଯେ କି ତାଳଚେର କୋଇଲାଖଣିର ମାଲିକ ଥିଲେ, ଯେତେବେଳେ କି ତାଳଚେର କୋଇଲାଖଣି ଜାତୀୟକରଣ ହୋଇ ନଥିଲା । ତା'ଛଡ଼ା ତାଙ୍କର ଅନ୍ୟାନ୍ୟ କେତେପ୍ରକାର ବାଣିଜ୍ୟ ବ୍ୟବସାୟ ଥିଲା ।

ରାଧେଶ୍ୟାମଙ୍କର କକାପୁଅ ଭାଇ ସାଗରଭାଇ ଅଗ୍ରୱାଲ ବର୍ତ୍ତମାନ ଢେଙ୍କାନାଳରେ ରହୁଛନ୍ତି । ସାଗରଲାଲ ମଧ୍ୟ ରେଭେନ୍ସା କଲିଜିଏଟ୍‌ରେ ପଢୁଥିଲେ ଏବଂ ଛାତ୍ରାବାସରେ ରହୁଥିଲେ । ରାଧେଶ୍ୟାମ ପଢ଼ା ଶେଷ କଲା ପରେ କଲିକତାରେ ନିଜ ଘରେ ରହି ମୁଖ୍ୟତଃ ବହିର୍ବାଣିଜ୍ୟ କରୁଥିଲେ । ମୋ ପ୍ରତି ତାଙ୍କର ସମ୍ମାନବୋଧ ହେତୁ ସେ ନିଜେ ନିଜ କାର୍ ଚଲାଇ ମୋତେ କଲିକତାର ବିଭିନ୍ନ ସ୍ଥାନ ବୁଲାଇ ଦେଖାଇଥିଲେ । ହାୟ । ରାଧେଶ୍ୟାମ ବର୍ତ୍ତମାନ ସ୍ୱର୍ଗବାସୀ ।

ବର୍ତ୍ତମାନର ରାଜ୍ୟସଭା ସଦସ୍ୟ ଶ୍ରୀ ବୈଷ୍ଣବ ଚରଣ ପରିଡ଼ା ସେ ସମୟରେ ଯଥାର୍ଥ ସମାଜବାଦୀ ଥିଲେ ଏବଂ କଲିକତାସ୍ଥିତ ରୁଷୀୟ ଦୂତାବାସରେ କାମ କରୁଥିଲେ । ମୋତେ ସେ ବହୁଭାବେ ସାହାଯ୍ୟ କରିଥିଲେ । ପରେ ସେ ରୁଷିଆ ଯାଇ ସେଠାରେ ରୁଷୀୟ ସାହିତ୍ୟର ସେବା କରିଥିଲେ । ମୁଁ କଲିକତାରୁ ଖଣ୍ଡିଏ ଗରମ କପଡ଼ା କିଣି ଆଣିଥିଲି ଏବଂ ସେଥିରେ କଟକର ଜଣେ ଦରଜିଙ୍କ ଦ୍ୱାରା କୋଟ୍‌ଖଣ୍ଡିଏ କରାଇଥିଲି । ସେହି କୋଟ୍‌ଖଣ୍ଡିକ ଏବଂ ରୁଷୀୟ ମାନପତ୍ର ଖଣ୍ଡିକ ମୋର ସ୍ମୃତି ସନ୍ତକ ହୋଇ ଆଜିଯାଏ ରହିଛି ।

●●●

# ଗ୍ରାମ୍ୟ ଜୀବନରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା

ନେ ଆମେ ପିଲାମାନେ ସାଙ୍ଗ ହୋଇ ଆମ ଗାଁ ଗଣ୍ଡାରେ ଖେଳୁଥାଉ । ବାଲିଆମାଟିର ଦାଣ୍ଡ, ଖେଳୁ ଖେଳୁ ପଡ଼ିଗଲେ ଦେହରେ କୌଣସି ଆଘାତ ଲାଗେ ନାହିଁ । ସକାଳର ସୂର୍ଯ୍ୟ ଦଶ ବାର ହାତ ଉପରକୁ ଉଠିଲେଣି । ହଠାତ୍ ପ୍ରଚଣ୍ଡ ଘୁଁ ଘୁଁ ଶବ୍ଦ ଶୁଭିଲା । ଚାହୁଁ ଚାହୁଁ କୋଡ଼ିଏ ପଚିଶଟା ଉଡ଼ାଜାହାଜ ଆକାଶ କମ୍ପାଇ ଉଡ଼ି ଆସିଲେ ପୂର୍ବ ଦିଗରୁ । ଭୟଙ୍କର ଶବ୍ଦରେ ଆମ କାନ ଫାଟିପଡ଼ିଲା । ଆମେ ଆଗରୁ ଥରେ ଦୁଇଥର ଉଡ଼ାଜାହାଜ ଦେଖିଥିଲୁ, କିନ୍ତୁ ଏକ ସମୟରେ ଏତେ ଉଡ଼ାଜାହାଜ ଦେଖି ନ ଥିଲୁ । ଭୟରେ ଆମେ ଛାନିଆ ହୋଇ କିଏ କୁଆଡ଼େ ଦଉଡ଼ିଲୁ । ସେ ସମୟରେ ଆମ ଗାଁ ଓ ଗାଁ ବାହାର ଗଛବୃଛରେ ପୂର୍ଣ୍ଣ ଥିଲା । ବଡ଼ବଡ଼ ଗଛ ମଧ୍ୟ । ବର, ଅଶ୍ୱତ୍ଥ, କଇଁଆ, ବଉଳ, ଆମ୍ବ, ଜରି ପ୍ରଭୃତି ଗଛ । ଗାଁ ପଶ୍ଚିମ ପଟକୁ ଏକ ବଡ଼ ଆମ୍ବତୋଟା ଥିଲା । ଆମେ ଛାନିଆରେ ବଡ଼ବଡ଼ ଗଛମୂଳକୁ ଦଉଡ଼ିଗଲୁ, କାଳେ ଯଦି ଉଡ଼ାଜାହାଜ ପଡ଼ିବ, ତେବେ ଗଛ ଉପରେ ପଡ଼ିବ - ଏଇ ଧାରଣାରେ । କିନ୍ତୁ ଉଡ଼ାଜାହାଜଗୁଡ଼ାକ ପଡ଼ିଲେ ନାହିଁ, କାନଫଟା ଶବ୍ଦ କରି ଉଡ଼ିଗଲେ । ପାଖ ଉଞ୍ଚରେ ଉଡ଼ିଗଲା ଭଳି ଜଣାପଡ଼ିଲେ ।

ଏ ଥିଲା ଆମର ପ୍ରଥମକରି ମାଳ ମାଳ ଉଡ଼ାଜାହାଜ ଦେଖିବାର ଅନୁଭୂତି । ଏହା ପରେ ଆମେ ବହୁବାର ଏହିପରି ଦେଖିଥିଲୁ । କେଉଁଠି ଯୁଦ୍ଧ ଲାଗିଛି ବୋଲି ଜାଣିବାକୁ ପାଇଥିଲୁ । ସେହି ଯୁଦ୍ଧ ସମୟର ଭୟ ଅନୁଭୂତି ମୋର ବେଶ୍ ମନେ ଅଛି, ଯଦିଓ କେଉଁଠି କାହା କାହା ମଧ୍ୟରେ ଯୁଦ୍ଧ ଲାଗିଥିଲା, ଜାଣି ନ ଥିଲି, କେତେ ବର୍ଷ

ପରେ ଜାଣିଲି । ସେ ସମୟରେ କନିକା ରାଜାଙ୍କ ପକ୍ଷରୁ ପ୍ରତ୍ୟେକ ଗାଁରେ ଡେଙ୍ଗୁରା ପିଟାଯାଇ କେତୋଟି ଆଦେଶ ଜାରି କରାଯାଇଥିଲା । ତନ୍ମଧ୍ୟରେ ମୁଖ୍ୟ ଆଦେଶ ଥିଲା କେହି ରାତିରେ ଆଲୁଅ ଜାଳିବେ ନାହିଁ । କାହାରି ଘରର ଆଲୁଅ (ଚୁଲିଜଳା, ବତି, ଲଣ୍ଠନ ପ୍ରଭୃତି) ବାହାରକୁ ଦେଖାଗଲେ ଜୋରିମାନା ଦେବାକୁ ପଡ଼ିବ । ପ୍ରକୃତରେ ଏହା ଭାରି କଡ଼ା ଆଦେଶ ଥିଲା । ପ୍ରତ୍ୟେକ ଗାଁରେ ଚୌକିଦାରମାନେ ବୁଲି ତଦାରଖ କରୁଥିଲେ । କେଉଁଠି ଯଦି କେଉଁ ଚୌକିଦାର ବାହାରକୁ ଆଲୁଅ ଦେଖୁଥିଲେ, ଦଫାଦାରଙ୍କୁ ଜଣାଉଥିଲେ । କେତେଜଣ ଚୌକିଦାର ଉପରେ ଜଣେ ଲେଖାଏଁ ଦଫାଦାର ଥିଲେ । ଦଫାଦାର ଆସି ଘରମାଲିକଙ୍କ ଠାରୁ ଜୋରିମାନା ଆଦାୟ କରୁଥିଲେ । ଦଫାଦାରଙ୍କୁ ଲୋକମାନଙ୍କର ଭୟ ଥିଲା, ଚୌକିଦାରଙ୍କୁ ମଧ୍ୟ ।

ତିନି ଚାରି ବର୍ଷ ଧରି ଏହିଭଳି ଯୁଦ୍ଧକାଳୀନ ପରିସ୍ଥିତିରେ ଲୋକମାନେ ବହୁତ କଷ୍ଟ ଭୋଗିଥିଲେ । ଜିନିଷପତ୍ରର ଘୋର ଅଭାବ ଘଟିଥିଲା । ସରକାରଙ୍କ ପକ୍ଷରୁ ଜିନିଷପତ୍ର 'କଣ୍ଟ୍ରୋଲ' କରାଯାଇ 'ଡିଲର' ମାନଙ୍କ ଜରିଆରେ ଦିଆଯାଉଥିଲା । ଡିଲରମାନଙ୍କ ଠାରୁ ଲୋକମାନେ କିଣି ନେଉଥିଲେ । ଖୁବ୍ କମ୍ କମ୍ ପରିମାଣରେ । ଡିଲରଙ୍କ ସଂଖ୍ୟା ମଧ୍ୟ ବେଶୀ ନ ଥିଲା । ଲୋକେ ଦୂର ଗାଁକୁ ଯାଇ ଡିଲରଙ୍କ ପାଖରୁ ଜିନିଷ କିଣି ଆଣୁଥିଲେ ।

ବର୍ଷେ ଖୁବ୍ ଖାଦ୍ୟାଭାବ ପଡ଼ିଥିଲା । ଧାନ ଚାଉଳ ମିଳିଲା ନାହିଁ । ଯେଉଁ ଚାଷୀମାନଙ୍କ ଅମାରରେ କିଛି କିଛି ଧାନ ଥିଲା କିମ୍ବା କୌଣସି ଚାଷୀ ଖଣି ପକାଇ ଧାନ ରଖିଥିଲେ, ତାହାକୁ ସରକାରୀ ଲୋକ ଆସି ଜବରଦସ୍ତି ମାମୁଲି ମୂଲ୍ୟ ଦେଇ ନେଇଗଲେ ଏବଂ ଡିଲରଙ୍କ ଜିମା ଦେଲେ । ଆମ ଗାଁର ଅନେକ ଲୋକ ଖରସୁଆ ନଈକୂଳ 'ନୂଆପଡ଼ା' ଗାଁର ଡିଲରଙ୍କଠାରୁ ଧାନ ଆଣିବାକୁ ଡଙ୍ଗାରେ ଯାଇଥିଲେ । ସେମାନଙ୍କ ସଙ୍ଗରେ ମୁଁ ମଧ୍ୟ ଯାଇଥିଲି । ନୂଆପଡ଼ା ଆମ ଗାଁଠାରୁ ଖରସୁଆ ନଈରେ ନଈରେ ପ୍ରାୟ ଦଶମାଇଲ (କୋଡ଼ିଏ କି.ମି.) ଦୂର । ମୋତେ ଆଠ ଅଣାର ଧାନ ପାଞ୍ଚଗୌଣୀ ମିଳିଥିଲା । ପାଞ୍ଚଗୌଣୀ ବର୍ତ୍ତମାନ ପ୍ରାୟ ୧୫ କେ.ଜି. । ଟଙ୍କାକ ଥିଲା ୬୪ ପଇସା । ଚାରି ପଇସାରେ ଏକ ଅଣା । ଏକ ପଇସା ଦୁଇ ଅଧଲା । ପୁଣି ଏକପଇସା ତିନି ପାହୁଲା ଥିଲା ।

ସେହି ଯୁଦ୍ଧ ସମୟ ଭିତରେ ଆମ କନିକାର ସମୁଦ୍ର କୂଳରେ ଏକ ଭୟଙ୍କର ଘଟଣା ଘଟିଥିଲା । ଆମ ଗାଁ ପାଖ 'ମହାଦେଇଆଡ଼ିଆ' ଗାଁର ୧୪/୧୫ ଜଣ ମତ୍ସ୍ୟଜୀବୀ ଲୋକ ମାଛ ମାରିବାକୁ ସମୁଦ୍ରକୂଳ ସାତଭାୟା ଅଞ୍ଚଳକୁ ଯାଇଥିଲେ । ସେମାନଙ୍କ

ମଧ୍ୟରୁ କେତେଜଣ ଏକ ନିର୍ଜନ ସ୍ଥାନରେ ଦେଖିଲେ ବଡ଼ ବଡ଼ ପିତ୍ତଳ ଗରା ଆକୃତିର କ'ଣ ଗୁଡ଼ିଏ ଥୁଆ ହୋଇଛି । ସେମାନଙ୍କର ଧାରଣା ହେଲା, ବୋଧହୁଏ ଗୋଟାଏ ପାଣିଜାହାଜ ସମୁଦ୍ର ଭିତରେ ଭାଙ୍ଗିଯାଇଛି ଏବଂ ସେଥିରେ ଥିବା ଗରାଗୁଡ଼ିକ ଢେଉରେ ଆସି କୂଳରେ ଲାଗିଛି । ଗରାଗୁଡ଼ିକରେ ଧନରତ୍ନ ଥାଇପାରେ, ଏହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ଆଗେ ଗୋଟାଏ ଗରାକୁ ଫିଟାଇବାକୁ ଚେଷ୍ଟା କଲେ । ଗରାର ପିତ୍ତଳ ପେଚଠିପି ଖୁବ୍ ଦୃଢ଼ ଥିଲା । ହାତରେ ଯେତେ ମୋଡ଼ିଲେ ମଧ୍ୟ ପେଚ ଫିଟିଲା ନାହିଁ । ଶେଷରେ ଜଣେ ବଳିଷ୍ଠ ଯୁବକ ପେଚକୁ ଦାନ୍ତରେ ମୋଡ଼ିଲା । ଠିପି ଟିକିଏ, ଢ଼ୁଗୁଲା ହୋଇଯିବା ମାତ୍ରେ ଗରାଟା ହଠାତ୍ ପ୍ରଚଣ୍ଡ ଶବ୍ଦ କରି ଫୁଟିଉଠିଲା ଏବଂ ଦୁଇଜଣ ସେହିଠାରେ ଛିଟିକି ଯାଇ ମରି ପଡ଼ିଲେ, ଅନ୍ୟମାନେ ଭୟଙ୍କର ଭାବରେ କ୍ଷତବିକ୍ଷତ ହୋଇ ଛିଟିକି ପଡ଼ିଲେ ।

ଡଙ୍ଗାରେ ଯେଉଁମାନେ ଥିଲେ - ସେମାନେ ପ୍ରଚଣ୍ଡ ଶବ୍ଦ ଶୁଣି ଧାଇଁଗଲେ । କ୍ଷତବିକ୍ଷତମାନଙ୍କୁ ଡଙ୍ଗାରେ ଗାଁକୁ ଘେନି ଆସିଲେ । ସେମାନଙ୍କୁ କଟକ ମେଡ଼ିକାଲକୁ ନିଆଯାଇ ଚିକିତ୍ସା କରାଯାଇଥିଲା । ଯାହା ହେଉ, ସେମାନେ ବଞ୍ଚି ଯାଇଥିଲେ ।

ବହୁବର୍ଷ ପରେ ମୁଁ ଜାଣିଲି, ସେହି ସମୟ ଥିଲା ଦ୍ୱିତୀୟ ବିଶ୍ୱମହାଯୁଦ୍ଧ ସମୟ । ୧୯୩୯ରୁ ୧୯୪୪ ପର୍ଯ୍ୟନ୍ତ । ଗୋଟିଏ ପକ୍ଷରେ ଥିଲେ ଜର୍ମାନି, ଜାପାନ, ଇଟାଲୀ ପ୍ରଭୃତି କେତେକ ଦେଶ । ଅନ୍ୟପକ୍ଷରେ ଥିଲେ ଇଂଲଣ୍ଡ, ଫ୍ରାନ୍ସ, ଆମେରିକା ପ୍ରଭୃତି କେତେକ ଦେଶ । ଦ୍ୱିତୀୟ ପକ୍ଷକୁ କୁହାଯାଉଥିଲା ମିତ୍ରପକ୍ଷ । ପ୍ରଥମ ପକ୍ଷର ନେତୃତ୍ୱ ନେଇଥିଲେ ହିଟଲର । ଭାରତ ସେତେବେଳେ ଇଂଲଣ୍ଡର ଅଧୀନ ଥିଲା, ତେଣୁ ମିତ୍ରପକ୍ଷର ଅନ୍ତର୍ଗତ ହେବାକୁ ବାଧ୍ୟ ହୋଇଥିଲା । ପୂର୍ବପଟରୁ ଜାପାନ ଆଡ଼ୁ ଭାରତ ପ୍ରତି ବିପଦ ଥିଲା । ଆମ କନିକା ପୂର୍ବପଟରେ ବଙ୍ଗୋପସାଗରକୁ ଲାଗିଛି । ତେଣୁ ଏଠାରେ ଖୁବ୍ ସତର୍କତା ଅବଲମ୍ବନ କରାଯାଇଥିଲା । ଲୋକେ ଖୁବ୍ ଦୁଃଖକଷ୍ଟର ସମ୍ମୁଖୀନ ହୋଇଥିଲେ ।



# ସୌଭାଗ୍ୟ

ମୋର ସୋଭାଗ୍ୟ ଯେ ମୁଁ ଶିକ୍ଷକ ହେବା ପୂର୍ବରୁ କୃଷକଜୀବନ ଯାପନ କରିଥିଲି । ବାଳକ ଅବସ୍ଥାରେ ମଠ ମନ୍ଦିରରେ ପୂଜାପାଠ, ଗୋରୁଗାଈ ଚରାଇବା, ଗୋରୁଗାଈଙ୍କ ପାଇଁ ଘାସ, ନଡ଼ା କାଟିଆଣିବା ପ୍ରଭୃତି କରୁଥିଲି । କିଶୋର ଅବସ୍ଥାରେ ଏସବୁ କାମ ସହିତ ଚାଷକାମକୁ ମୁଖ୍ୟ ଭାବେ ଗ୍ରହଣ କରିଥିଲି । ତେଣୁ ଚାଷକାମରେ ଦକ୍ଷତା ଲାଭ କରିଥିଲି ।

ଖରାଦିନେ ବିଲକୁ ଖତ ବୋହିନେଇ ପକାଇବା, ବିଲ ଦୁଇ ଓଡ଼୍ ବା ତିନି ଓଡ଼୍ ହଳ ହେଲା ପରେ ବଞ୍ଚି ରହିଥିବା ଘାସସବୁକୁ କୋଦାଳରେ ହାଣି ଉଠାଇବା, ବିଲ ଚାରିପାଖ ହିଡ଼କୁ କତି କରିବା ଅର୍ଥାତ୍ ହିଡ଼ ଧାରେଧାରେ ମାଟି ହାଣି ଘାସ ମାରିବା, ହଳ ହୋଇଥିବା ବିଲରେ ଢିମାଢିମା ମାଟି ଉପରେ ବୁଲି ଧାନ ବିହନ ବୁଣିବା, ବର୍ଷାଦିନେ ବିଲରେ ପାଣିରେ ପଶି ଘାସ ବାଛିବା, ବର୍ଷା ହେଉଥିଲେ ତାଳପତ୍ର ପକ୍ଷିଆ ମଡ଼େଇ ଘାସ ବାଛିବା, ଶୀତଦିନେ ପ୍ରଚଣ୍ଡ ଶୀତରେ ସକାଳୁ ଯାଇ ଧାନ କାଟିବା କଟଡ଼ା ଆକାରରେ ବା କଳେଇ ଆକାରରେ, (ଦୁଇ ଅଟଙ୍ଗାରେ ଏକ କଟଡ଼ା ଓ ପାଞ୍ଚ କିମ୍ବା ଛଅ ଅଟଙ୍ଗାରେ ଏକ କଳେଇ ହେଉଥିଲା । କଟଡ଼ା ବାଡ଼ା ହୋଇ ଘରଛପରରେ ଲାଗୁଥିଲା ଏବଂ କଳେଇ ବେଙ୍ଗଳା ପଡ଼ି କୁଟା ହୋଇ ଗୋରୁଗାଈଙ୍କ ଖାଦ୍ୟ ରୂପେ ବ୍ୟବହୃତ ହେଉଥିଲା ।) ପ୍ରବଳ ଶୀତରେ ମଧ୍ୟ ଭୋ'ରୁ ଭୋ'ରୁ ଯାଇ ବାକରରେ କଟଡ଼ା ଓ କଳେଇ ବାନ୍ଧିବା, ଖରା ଟିକେ ଟାଣ ହେଲେ ସେହି କଟଡ଼ା କିମ୍ବା କଳେଇଗୁଡ଼ିକୁ କୁତରେ ଅର୍ଥାତ୍ ଝୋଟ ଦଉଡ଼ାରେ ବାନ୍ଧି ମୁଣ୍ଡେଇ ବାଡ଼ିଖଳାକୁ ଆଣିବା, (ବ୍ରାହ୍ମଣ ଜାତିର ଚାଷୀଙ୍କୁ ଦୁଇଟି କାମ

ଯଥା- ବାହୁଙ୍ଗୀରେ ଭାର ବୋହିବା ଓ ଲଙ୍ଗଳ ଚଳାଇ ହଳ କରିବା ନିଷଦ୍ଧ ଥିଲା ।) ଖଳାରେ ପାହାନ୍ତାରୁ ଅନ୍ୟ ଚାଷୀମାନଙ୍କ ଗୁହାଳରୁ ୫/୬ ଟି କିମ୍ବା ଅଧିକା ବଳଦ ଆଣି ସେମାନଙ୍କୁ ଡାଉଣିରେ ଯୋଚି ବେଙ୍ଗଳା ପକାଇବା, ଉଖୁଣି ଦ୍ୱାରା କୁଟାକୁ ଅଲଗା କରି ଧାନକୁ ପବନ ବହୁଥିବା ସ୍ଥାନକୁ ନେଇ କୁଲାରେ ଉଡ଼ାଇ ସଫା କରିବା ଏବଂ ସଫା ଧାନକୁ ଘରକୁ ବୋହି ଆଣିବା, ମୁଗ, ବିରି, ଖେସାରି, ଗହମ ଆଦି ଫସଲ ବିହନ ବୁଣିବାଠାରୁ ଆରମ୍ଭ କରି ଅମଳ ପର୍ଯ୍ୟନ୍ତ ସମସ୍ତ କାମ କରିବା, ବର୍ଷେ ବର୍ଷେ ଗୋଟିଏ ମାତ୍ର କିଆରିରେ ଝୋଟ ଚାଷ କରିବା, (ବୈଶାଖ ବା ଜ୍ୟେଷ୍ଠ ମାସରେ ନଳିତା କିମ୍ବା ନକଡ଼ିଆ ମଞ୍ଜି ବୁଣି ଭାଦ୍ର ବା ଆଶ୍ୱିନ ମାସ ଆଡ଼କୁ ଗଛସବୁକୁ କାଟିବା, ସେ ସବୁକୁ ବିଡ଼ା ବିଡ଼ା କରି ବାନ୍ଧି ପାଣିରେ ବୁଡ଼ାଇ ରଖିବା, ତିନି ଚାରି ସପ୍ତାହ ପରେ ପଚିଯାଇଥିବା ବିଡ଼ାଗୁଡ଼ିକୁ ଉଠାଇ ଖୋଲି ଅଳ୍ପ ଅଳ୍ପ କରି ପାଣିରେ ବାଡ଼େଇବା, ସେଥିରୁ କାଉଁରିଆ କାଠି ବାହାର କରିଦେଇ ଝୋଟ ବାହାର କରିବା ପର୍ଯ୍ୟନ୍ତ ସମସ୍ତ କାମ ଝୋଟ ଚାଷର କାମ ।) ଋତୁ ଅନୁଯାୟୀ କଖାରୁ, କଦଳୀ, କାକୁଡ଼ି, ଜହ୍ନି, କଲରା, ବାଇଗଣ, ମକା, ଶିମ୍ବ, ଲାଉ, ପୋଇ, ଶାଗ, ସାରୁ, ମାଟିଆଳୁ, ଅମୃତଭଣ୍ଡା ଆଦି ପନିପରିବା ଉତ୍ପାଦନ କରିବା, ଝୋଟକୁ ଖୁଣ୍ଟରେ ବାନ୍ଧି ଓହଳାଇ ଜଙ୍ଘରେ କାଠଟାକୁଆ ଗଡ଼ାଇ ଗଡ଼ାଇ ବାଣୀ (ଝୋଟର ସୂତା) କାଟିବା, ବାଣୀକୁ ଚାରି ପାଞ୍ଚ ଖିଅ କିମ୍ବା କମ୍ ବା ବେଶୀ ଖିଅ କରି ବଳି ଜୁତ, ଲଙ୍ଗଳ ଦଉଡ଼ି, ସୁତୁଲି ଆଦି ପ୍ରସ୍ତୁତ କରିବା, ଲୋକମାନଙ୍କ ସହିତ ଡଙ୍ଗାରେ ନଈପାଳକୁ (ପତରପୁର ପାଳ କିମ୍ବା ମାଟିଆ ମଙ୍ଗଳା ପାଳକୁ) ଯାଇ ଉଞ୍ଚ ଉଞ୍ଚ ବେଢୁଆଁ ଓ କେଉଟି ଘାସ ଗଛ କାଟି ଆଣିବା, ତାହାକୁ ଖରାରେ ଭଲରୂପେ ଶୁଖାଇ ସେଥିରେ ମଶିଣା, ହେଁସ ପ୍ରଭୃତି ପ୍ରସ୍ତୁତ କରିବା, (ବିଅଁ କାଠରେ ଅର୍ଥାତ୍ ଗାରଗାର କଟା ହୋଇଥିବା କାଠରେ ଝୋଟସୁତୁଲି ଗୁଡ଼ା ହୋଇଥିବା ପଥରଡେଣୁଆଗୁଡ଼ିଏ ଓହଳାଇ ଶୁଖିଲା ବେଢୁଆଁ ବା କେଉଟିକୁ ଯୋଖି ଯୋଖି ଡେଣୁଆଗୁଡ଼ିକୁ ଏପଟ ସେପଟ ଚଳାଇ ମଶିଣା, ହେଁସ ପ୍ରଭୃତି ବୁଣା ହେଉଥିଲା ।) ଜନ୍ତରେ ବିଲକୁ ପାଣି ବୋହିବା, ଚତୁର୍ମାସ୍ୟାରେ ବାଉଁଶକାଠିର ଜାଲ ବୁଣି ସେଥିରେ ଲଞ୍ଜା, ଝାଞ୍ଜରା ପ୍ରଭୃତି ମାଛଧରା ଯନ୍ତ୍ର ପ୍ରସ୍ତୁତ କରିବା, ସଞ୍ଜବେଳେ ସେଗୁଡ଼ିକୁ ବିଲକୁ ନେଇ ବିଲରେ ପାଣି ବହୁଥିବା ଜାଗାରେ ବସାଇ ସକାଳୁ ଯାଇ ସେଥିରେ ପଶିଥିବା ମାଛସବୁକୁ ସଂଗ୍ରହ କରି ଆଣିବା, ଘରଛପର କରିବା, ବାଡ଼ି ଚାରିପଟେ ବାଡ଼ ବୁଜିବା, ଚାନ୍ଦବାଲିରେ ଗାଁ ଅପେକ୍ଷା ଟିକିଏ ଶସ୍ତାରେ ଜିନିଷପତ୍ର ମିଳୁଥିଲା ବୋଲି ଗାଁରୁ ଚାନ୍ଦବାଲି ଯାଇ ସେଠାରୁ ତେଜରାତି ଜିନିଷପତ୍ର କିଣି ଗଣ୍ଠୁଲି କରି ମୁଣ୍ଡରେ ମୁଣ୍ଡେଇ ଆଣିବା, (ଆମ ଗାଁରୁ ଚାନ୍ଦବାଲି ସିଧା ବିଲେ ବିଲେ ପ୍ରାୟ ୭

ମାଇଲ ବା ପନ୍ଦର କି.ମି. ଦୂର । ଚାନ୍ଦବାଲି ଏକ ବନ୍ଦର ଥିଲା । ସେଠାକୁ ଜାହାଜ ଆସୁଥିଲା ଜିନିଷପତ୍ର ବୋଝେଇ ହୋଇ । ତେଣୁ ଚାନ୍ଦବାଲିର ଦୋକାନମାନଙ୍କରେ ଜିନିଷପତ୍ର ଗାଁ ଦୋକାନ ଅପେକ୍ଷା ଶସ୍ତା ଥିଲା । ଗାଁ ଦୋକାନୀମାନେ ଚାନ୍ଦବାଲିରୁ ଡଙ୍ଗାରେ ଜିନିଷପତ୍ର ଆଣି ବିକୁଥିଲେ । ଚାନ୍ଦବାଲି ବନ୍ଦର ବନ୍ଦ ହୋଇଯିବା ପରେ ଦୋକାନୀମାନେ ଡଙ୍ଗାରେ କଟକ ଆସି କଟକରୁ ଜିନିଷପତ୍ର କିଣି ଡଙ୍ଗାରେ ବୋଝେଇ କରି ନେଉଥିଲେ । ଗାଁରୁ କଟକକୁ ନଈ ଓ କେନାଲବାଟେ ୪/୫ ଦିନ ଲାଗୁଥିଲା ।) କାଠ ଚିରିବା ଇତ୍ୟାଦି କାମରେ ମୁଁ ଅଭ୍ୟସ୍ତ ହୋଇଯାଇଥିଲି ।

ଏସବୁ ଥିଲା କୃଷିକାମ ଓ କୃଷି ସହିତ ସଂପର୍କିତ କାମ । ଏ ସମସ୍ତ କାମ ଭିତରେ ମୁଁ ସଂସ୍କୃତ ପଢୁଥିଲି ଏବଂ ଗୀତ, କବିତା ଆଦି ମଧ୍ୟ ଲେଖୁଥିଲି । ମୋର ଗୀତଗୁଡ଼ିକ 'ଭୋଗରା' ଗାଁର ବଳରାମ (ବିଶ୍ୱାଳ) ମଧୁର କଣ୍ଠରେ ଗାଉଥିଲା । ତେଣୁ ତାକୁ ବହୁତ ଶ୍ରଦ୍ଧା କରୁଥିଲି । ପ୍ରତିବର୍ଷ କଟକ ଆସି ରେଭେନ୍ସା କଲିଜିଏଟ୍ ସ୍କୁଲରେ ସଂସ୍କୃତ ପରୀକ୍ଷା ଦେଇ ଯାଉଥିଲି । ୨୩ ବର୍ଷ ବୟସରେ ଭାଗ୍ୟକୁ ସେଇ ସ୍କୁଲରେ ଦ୍ୱିତୀୟ ସଂସ୍କୃତ ପଣ୍ଡିତ ପଦରେ ଚାକିରି ଖଣ୍ଡେ ପାଇଲି । ତା'ପରେ କୃଷିକର୍ମ ମୋର ଆଉ ମୁଖ୍ୟ କର୍ମ ହୋଇ ରହିଲା ନାହିଁ । ମୁଖ୍ୟକର୍ମ ହେଲା ଶିକ୍ଷକତା । କିନ୍ତୁ ପ୍ରତ୍ୟେକ ଗ୍ରୀଷ୍ମଛୁଟି, ଦଶହରା ଛୁଟି, ଦୋଳଛୁଟି ଓ ବଡ଼ଦିନ ଛୁଟିରେ ଘରକୁ ଆସି କୃଷିକର୍ମ ହିଁ କରୁଥିଲି ।

ମୋ ଶିକ୍ଷକତା କଥା ମୁଁ ଲେଖିସାରିଛି । ଭଗବାନ ବୁଦ୍ଧ ଲୋକମାନଙ୍କୁ ସର୍ବନିମ୍ନ ଆଠଟି ପଥ ଗ୍ରହଣ କରିବାକୁ ଉପଦେଶ (ଅଷ୍ଟାଙ୍ଗମାର୍ଗ) ଦେଇଯାଇଛନ୍ତି । ତନ୍ମଧ୍ୟରେ ସତ୍‌ଜୀବିକା ଅନ୍ୟତମ । କୃଷି ଓ ଶିକ୍ଷାଦାନ ନିଶ୍ଚିତ ଭାବେ ସତ୍‌ଜୀବିକା । ଏହି ଦୁଇଟି ସତ୍‌ଜୀବିକା ଦ୍ୱାରା ମୋର ମରଜୀବନ ସାର୍ଥକ ହୋଇଛି ।

ମୁଁ ଏପରି ଏକ ସମୟରେ ଜନ୍ମ ହୋଇଥିଲି, ଯେତେବେଳେ କି ଇଂରେଜ ଶାସନ ଅଧୀନରୁ ମୁକ୍ତ ହେବାପାଇଁ ଦେଶରେ ଆନ୍ଦୋଳନ ଚାଲୁଥିଲା । ସବୁ ଶ୍ରେଣୀର ଲୋକେ ସ୍ୱାଧୀନତା ଲାଭ କରିବାକୁ ଉତ୍‌କଣ୍ଠିତ ଥିଲେ । ତେଣୁ ଲୋକଚରିତ୍ର ଭଲ ଥିଲା । ଲୋକେ ଭଲ କାମ କରୁଥିଲେ, ଭଲ କଥା ଶୁଣୁଥିଲେ, ଭଲ ପନ୍ଥା ଧରୁଥିଲେ, ନୈତିକ ଜୀବନ ଯାପନ କରୁଥିଲେ । ତେଣୁ ସମାଜରୁ ଯଶସ୍ୱୀ ଲୋକ ବାହାରୁଥିଲେ । ଗାଁ ଗାଁକେ ଭାଗବତ ଘର ଥିଲା । ଲୋକେ ସଞ୍ଜବେଳେ ଏକାଠି ବସି ଭାଗବତ ଶୁଣୁଥିଲେ । ହୁଏତ ଅଢ଼େଇଶହ ବର୍ଷର କଠୋର ଇଂରେଜଶାସନ ଲୋକଚରିତ୍ରକୁ ଶୃଙ୍ଖଳିତ କରିଥିଲା । ବିଜ୍ଞାନର ବିଶେଷ ଅଗ୍ରଗତି ହୋଇନଥିଲା । ତେଣୁ ବର୍ତ୍ତମାନ

ପରି ବହୁପ୍ରକାର ଭୋଗ୍ୟ ବସ୍ତୁ ବା ବିଳାସବସ୍ତୁ ଉତ୍ପାଦନ ହେଉ ନ ଥିଲା । ଲୋକେ ସରଳ, ପ୍ରାକୃତିକ ଭାବରେ ଜୀବନଯାପନ କରୁଥିଲେ । ଚଳିବା ପାଇଁ ଆବଶ୍ୟକ ଖାଦ୍ୟଦ୍ରବ୍ୟ ଓ ଶିଳ୍ପଦ୍ରବ୍ୟ ଅଧିକାଂଶ କୃଷିରୁ ଓ ହସ୍ତଶିଳ୍ପରୁ ଉତ୍ପାଦନ କରୁଥିଲେ । ନାନାପ୍ରକାର ସୁନ୍ଦର ତଥା ଦରକାରୀ ହସ୍ତଶିଳ୍ପ ଦ୍ରବ୍ୟ ତିଆରି ହେଉଥିଲା । ସଂକ୍ଷେପରେ କହିଲେ ସେ ସମୟ ଥିଲା ମୂଲ୍ୟବୋଧର ଓ ନୈତିକତାର ସମୟ ।

କିନ୍ତୁ ଏବେ ସେହି ଧାରା ବଦଳିଯାଇଛି । ସବୁ କ୍ଷେତ୍ରରେ ମୂଲ୍ୟବୋଧର ଅବକ୍ଷୟ ଘଟିଛି । ମାନବିକତାକୁ ଗ୍ରାସ କରିଛି ବସ୍ତୁବାଦ ବା ଭୋଗବାଦ । ବିଜ୍ଞାନର ବିକାଶ ଫଳରେ ବହୁ ପ୍ରକାର ଭୋଗ୍ୟ ବସ୍ତୁ ଉତ୍ପାଦନ ହେଉଛି । ଲୋକେ ସେସବୁ କିଣି ବ୍ୟବହାର କରିବା ପାଇଁ ଇଚ୍ଛା କରୁଛନ୍ତି । ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିରେ ଚଳିବା ପାଇଁ ପାଗଳପ୍ରାୟ ହେଉଛନ୍ତି । ତେଣୁ ବହୁତ ଅର୍ଥ ଉପାର୍ଜନ କରିବାକୁ ବାଧ୍ୟ ହେଉଛନ୍ତି । ସମାଜ ହୋଇଯାଇଛି ଅର୍ଥପ୍ରଧାନ । ବିଜ୍ଞାନର ବିକାଶ ଯେତେ ଅଧିକ ହେଉଛି, ମୂଲ୍ୟବୋଧର ବିନାଶ ସେତେ ଅଧିକ ହେଉଛି । ଆଧ୍ୟାତ୍ମିକତା କ୍ଷେତ୍ର ମଧ୍ୟ ଅର୍ଥପ୍ରଧାନ ହୋଇଗଲାଣି । ଶିକ୍ଷା ଓ ସ୍ୱାସ୍ଥ୍ୟ ଭଳି ଦୁଇଟି ପରମ ମାନବିକତା କ୍ଷେତ୍ର ମଧ୍ୟ ଅର୍ଥ ପ୍ରାଧାନ୍ୟ ଦ୍ୱାରା ଭୀଷଣ ଭାବେ ଆକ୍ରାନ୍ତ । ଯାହାର ଅର୍ଥ ଅଛି, ସେ ଶିକ୍ଷା ଓ ସ୍ୱାସ୍ଥ୍ୟସେବା ପାଇପାରୁଛି, ଯାହାର ନାହିଁ, ସେ ପାଇ ପାରୁ ନାହିଁ । ବହୁ ଲୋକ ଛଦ୍ମାଚାରୀ ଅର୍ଥାତ୍ ଉପରେ ଗୋଟିଏ ପ୍ରକାର, ଭିତରେ ଆଉ ଗୋଟିଏ ପ୍ରକାର ହେଉଛନ୍ତି । କାହାରି କାହା ପ୍ରତି ବିଶ୍ୱାସ ନାହିଁ । ଜୀବନରୁ ଆବେଗ ଅନୁଭବ ଉଭେଇ ଯାଉଛି । ଦୁର୍ନୀତି, ଗୁଣ୍ଡାମି, ଡକାୟତି, ନାରୀଧର୍ଷଣ, ହତ୍ୟା ଆଦି ଜଘନ୍ୟ ଅପରାଧ ବଢ଼ିଚାଲିଛି । ଏଭଳି ପରିସ୍ଥିତି ଭିତରେ ବିଜ୍ଞାନର ଅବଦାନ ହିତକର ବୋଲି ଅନୁଭବ ହୋଇପାରୁ ନାହିଁ । ଜୀବନ ବ୍ୟସ୍ତବିବ୍ରତ, ଝଞ୍ଜାଳବହୁଳ, ମାନସିକଚାପଗ୍ରସ୍ତ ହୋଇଉଠୁଛି ।

ସ୍ୱାଧୀନତା ପରେ ଯେଉଁମାନେ ଜନ୍ମ ହୋଇଛନ୍ତି, ସେମାନେ ହୁଏତ ଏ ପରିବର୍ତ୍ତନ ସହିତ ଖାପଖୁଆଇ ଚଳିଯାଉଛନ୍ତି । କିନ୍ତୁ ସ୍ୱାଧୀନତା ପୂର୍ବରୁ ଯେଉଁମାନେ ଜନ୍ମ ହୋଇଛନ୍ତି, ବିଶେଷତଃ ମୋ ଭଳି ଧୋତିପିନ୍ଧା ଲୋକ, ସେମାନେ ଖାପଖୁଆଇ ଚଳିପାରୁ ନାହାନ୍ତି, ତେଣୁ ନିତାନ୍ତ ଅଶ୍ୱସ୍ତି ଅନୁଭବ କରୁଛନ୍ତି ।

ଧୋତିପିନ୍ଧା ଓ ପ୍ରାଚ୍ୟ ଜୀବନଯାପନ ଶୈଳୀ ଛାଡ଼ିବାକୁ ମୁଁ ଥରେ ଖୁବ୍ ଚେଷ୍ଟା କରିଥିଲି, କିନ୍ତୁ ବିଫଳ ହୋଇଥିଲି । ସୁନ୍ଦରଗଡ଼ କଲେଜରେ ଥିଲାବେଳେ ଥରେ ଉକ୍ତ କଲେଜର ପିଲାମାନେ ରାଉରକେଲା ଇସ୍ପାତ କାରଖାନା ଦେଖିବାକୁ ଯାଇଥିଲେ । ସେଥିପାଇଁ ଆଗରୁ କାରଖାନା କର୍ତ୍ତୃପକ୍ଷଙ୍କ ଠାରୁ ଅନୁମତି ନିଆଯାଇଥିଲା । ପିଲାମାନଙ୍କ

ସାଙ୍ଗରେ କେତେଜଣ ଅଧ୍ୟାପକ ଯାଇଥିଲେ । ମୁଁ ମଧ୍ୟ ଯାଇଥିଲି । ପିନ୍ଧିଥିଲି ଧୋତି ଓ ଜାମା । କାରଖାନା ଭିତରକୁ ସମସ୍ତଙ୍କୁ ଛଡ଼ାଗଲା, କିନ୍ତୁ ମୋତେ ଛଡ଼ା ଗଲା ନାହିଁ । କାରଣ ମୁଁ ଧୋତି ପିନ୍ଧିଥିଲି ବୋଲି । କଲେଜକୁ ଫେରିଲା ପରେ ଅଧ୍ୟାପକ ବନ୍ଧୁମାନେ ମୋତେ ଧୋତିପିନ୍ଧା ଛାଡ଼ି ଫୁଲ୍‌ପ୍ୟାଣ୍ଟ୍ ପିନ୍ଧିବାକୁ ପରାମର୍ଶ ଦେଲେ । ମୁଁ ମଧ୍ୟ ମନେ ମନେ ତାହା କରିବାକୁ ଠିକ୍ କଲି, କିନ୍ତୁ ପାରିଲି ନାହିଁ । ପୁରୁଣା ଜୀବନଶୈଳୀକୁ ଛାଡ଼ିପାରିଲି ନାହିଁ ।

ଏବେ ଭାରତଟା ଇଣ୍ଡିଆ ହୋଇଯାଉଥିବା ହେତୁ, ମୋତେ ନିତାନ୍ତ ଅଶ୍ୱସ୍ତି ଲାଗୁଛି । ସବୁଠାରୁ ଅଶ୍ୱସ୍ତି ଓ ବ୍ୟଥାଦାୟକ ଲାଗୁଛି ଯେ ଓଡ଼ିଆ ଭାଷା ଶିକ୍ଷାମାଧ୍ୟମ ରୂପରୁ ଲୋପ ପାଇବାକୁ ଯାଉଛି, ଏପରିକି ଗୋଟିଏ ପାଠ୍ୟ ବିଷୟ ରୂପରୁ ମଧ୍ୟ ଲୋପ ପାଇବାକୁ ଯାଉଛି । ଯେଉଁଠି କ୍ଷୀରଖିଆ ଶିଶୁକୁ ମାତୃଭାଷା ଛାଡ଼ି ବିଦେଶୀ ଭାଷାରେ ଶିକ୍ଷା ଦିଆଯାଉଛି, ସେଠି ସୁଖ ଶାନ୍ତି ଆସିବ କିପରି ? ଏଇ କଟକ ସହର, ଯାହାକି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଥିଲା, ସେଠି କିପରି ଓଡ଼ିଆ ମାଧ୍ୟମ ବିଦ୍ୟାଳୟଗୁଡ଼ିକ ଝାଉଁଳି ପଡୁଛି, କିପରି ପାଶ୍ଚାତ୍ୟ ଚଳଣି ଓ ଇଂରାଜୀ ଭାଷା ଧସେଇ ପଶୁଛି, ତାହା ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର । ହେଉ, ଅନନ୍ତ କାଳସ୍ରୋତରେ ଏ ମଧ୍ୟ ଏକ ପରିବର୍ତ୍ତନ ।



# ପ୍ରଥମ ଓଡ଼ିଆ ଏମ୍.ଏ. କ୍ଲାସ୍

ଏହି ଅନୁଭୂତିଟିକୁ ଲେଖିବାର ମୋହ ମୁଁ ସମ୍ବରଣ କରିପାରୁନାହିଁ । ଏହା ଏକ ମାମୁଲି କଥା ହେଲେ ମଧ୍ୟ ମୋ ପକ୍ଷରେ ବଡ଼ କଥା ଥିଲା । କାରଣ ମୁଁ ପିଲାଦିନେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ମଧ୍ୟ ଶିକ୍ଷାଲାଭ କରି ନ ଥିଲି । ଓଡ଼ିଆ ଏମ୍.ଏ.ରେ ମୋର ପ୍ରଥମ କରି କ୍ଲାସ ପଡ଼ିଥିଲା ଷଷ୍ଠ ବାର୍ଷିକ ଶ୍ରେଣୀରେ । ମୁଁ ମନରେ ଦଅକସ୍ ଅନୁଭବ କରୁଥିଲି, ତଥାପି ସାହସ ରଖିଥିଲି । ସେଦିନ ମୁଁ କଲେଜକୁ ଆସୁଥିବା ସମୟରେ କଲେଜ ଛକ ଓ ରାଣୀହାଟ ପୋଲ ମଝିରେ ରାସ୍ତା ଉପରେ କିପରି ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲି, ତାହା ମୁଁ ପୂର୍ବରୁ ବର୍ଣ୍ଣନା କରିଛି । ତଥାପି ମୁଁ କିଛି ନ ହୋଇଥିଲା ପରି ଷଷ୍ଠବାର୍ଷିକ ଶ୍ରେଣୀକୁ ଗଲି । ଦେଖିଲି କ୍ଲାସ ଭରପୂର । ସବୁ ସିଟ୍‌ରେ ଛାତ୍ରଛାତ୍ରୀମାନେ ବସିଛନ୍ତି । ସେ ସମୟରେ ଓଡ଼ିଆ ଏମ୍.ଏ. ର ବହୁତ ମର୍ଯ୍ୟାଦା ଓ ଆବଶ୍ୟକତା ଥିଲା । ତେଣୁ ବହୁ ଛାତ୍ରଛାତ୍ରୀ ଓଡ଼ିଆରେ ଏମ୍.ଏ. ପଢ଼ିବାକୁ ଆବେଦନ କରୁଥିଲେ । ସେମାନଙ୍କ ମଧ୍ୟରୁ ବାଛି ବାଛି ୬୪ ଜଣଙ୍କୁ ଗ୍ରହଣ କରାଯାଉଥିଲା । ଛାତ୍ରଛାତ୍ରୀମାନେ ସମସ୍ତେ ମେଧାବୀ ଥିଲେ ଏବଂ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଯଥାର୍ଥରେ ଆଗ୍ରହୀ ଥିଲେ । ଦ୍ୱିତୀୟ ଶ୍ରେଣୀରେ ଓଡ଼ିଆ ଏମ୍.ଏ. ପାସ୍ କଲେ ମଧ୍ୟ ଅଧ୍ୟାପକ ଚାକିରି ମିଳି ଯାଉଥିଲା ।

ମୁଁ ଶ୍ରେଣୀକୁ ପଶିଗଲା ମାତ୍ରେ ପିଲାମାନେ ସମସ୍ତେ ଉଠିପଡ଼ିଲେ ଏବଂ ମୁଁ ବସିବାକୁ କହିବାରୁ ବସିଲେ । ତା'ପରେ ମୁଁ ରେଜିଷ୍ଟରରେ ଉପସ୍ଥାନ ନେଲି । ଉପସ୍ଥାନ ନେବା ପରେ ସଂଗେସଂଗେ ବ୍ଲାକ୍‌ବୋର୍ଡ଼ରେ ଲେଖିଲି - ଲୋକ / କୁ, ପଶୁ / କୁ, ପକ୍ଷୀ

/ କୁ, ବୃକ୍ଷ/କୁ । କହିଲି - "ତୁମେମାନେ ବ୍ୟାକରଣରୁ ଜାଣିଥିବ 'କୁ' ଗୋଟିଏ ଦ୍ୱିତୀୟା ବିଭକ୍ତି । ବିଭକ୍ତିଗୁଡ଼ିକ ଶବ୍ଦରୁ ଲାଗେ । 'ଲୋକ' 'ପଶୁ' 'ପକ୍ଷୀ 'ବୃକ୍ଷ' ଏଗୁଡ଼ିକ ଗୋଟିଏ ଗୋଟିଏ ଶବ୍ଦ । ଏଗୁଡ଼ିକରୁ 'କୁ' ବିଭକ୍ତି ଲାଗିଛି ।" ତା'ପରେ ଶବ୍ଦଗୁଡ଼ିକ ପାଖରେ ଅନୁସ୍ୱାର ଲଗାଇଦେଲି । ହେଲା - ଲୋକଂ / କୁ, ପଶୁଂ, କୁ, ପକ୍ଷୀଂ / କୁ, ବୃକ୍ଷଂ / କୁ । ଜଣେ ଛାତ୍ରକୁ ପଚାରିଲି - ଶବ୍ଦରେ ଅନୁସ୍ୱାର ଧ୍ୱନିଟି ଲାଗିବା ଫଳରେ କି ପାର୍ଥକ୍ୟ ଆସିଲା ? ଛାତ୍ରଟି ଉତ୍ତର ଦେଲା - 'ଲୋକକୁ' କହିଲେ ଗୋଟିଏ ଲୋକକୁ ବୁଝାଉଛି, 'ଲୋକଂକୁ' କହିଲେ ବହୁତ ଲୋକଙ୍କୁ ବୁଝାଉଛି । ଏହିପରି ଅନ୍ୟ ଉଦାହରଣଗୁଡ଼ିକୁ ମଧ୍ୟ ସେ ବୁଝାଇଦେଲା । ତା'ପରେ ମୁଁ ପଚାରିଲି - ତେବେ ଏ ଅନୁସ୍ୱାର ଧ୍ୱନିଟିର ଏଭଳି କରାମତି କାହିଁକି ଆସିଲା ? ଛାତ୍ରଟି କହିପାରିଲା ନାହିଁ । ଅନ୍ୟମାନଙ୍କୁ ପଚାରିଲି, ସେମାନେ ମଧ୍ୟ କହିପାରିଲେ ନାହିଁ । ମୁଁ କହିଲି - ଏହା ଓଡ଼ିଆ ଭାଷାତତ୍ତ୍ୱର ବିଷୟ ।

ସଂଗେସଂଗେ ଆଉ ଗୋଟିଏ ଉଦାହରଣକୁ ଗଲି । ବୋର୍ଡ଼ରେ ଲେଖିଲି - "ଖାଏ, ଖାଉଛି, ଖାଇଛି, ଖାଇଲା ।' କହିଲି - "ବ୍ୟାକରଣରୁ ଜାଣିଥିବ, ଏଗୁଡ଼ିକ କ୍ରିୟାପଦ । ଏହି କ୍ରିୟାପଦଗୁଡ଼ିକ 'ଖା' ଧାତୁରୁ ଗଠିତ ହୋଇଛି । କାରଣ ସବୁଥିରେ 'ଖା' ଅଂଶଟି ଅଛି ।" ଏହିପରି ପଢ଼, ପଢୁଛି, ପଢ଼ିଛି, ପଢ଼ିଲା ପ୍ରଭୃତି ଆଉ କେତୋଟି ଉଦାହରଣ ଲେଖି ପ୍ରତ୍ୟେକରେ ଧାତୁ ଅଂଶଟି ସର୍ବତ୍ର ରହୁଥିବାର ଦେଖାଇଦେଲି । ତା'ପରେ ଲେଖିଲି - "ଯାଏ, ଯାଉଛି, ଯାଇଛି, ଗଲା ।" ଏଗୁଡ଼ିକୁ ସ୍ପଷ୍ଟ ଭାବେ ଉଚ୍ଚାରଣ କରି ପଚାରିଲି - "ଆଚ୍ଛା, ଅନ୍ୟାନ୍ୟ ସମସ୍ତ କ୍ରିୟାର ଆକୃତି ଅନୁସାରେ ଯାଏ, ଯାଉଛି, ଯାଲା ବା ଯାଇଲା ହୋଇନଥାନ୍ତା କି ? ତେବେ ଚତୁର୍ଥଟିର ଅର୍ଥାତ୍ 'ଯା' ଧାତୁର ଅତୀତକାଳ କ୍ରିୟାରେ 'ଯା' ଅଂଶଟି ନ ରହି ତା' ସ୍ଥାନରେ 'ଗ' ଆସିଲା କିପରି ? ପିଲାମାନେ କେହି କିଛି କହିପାରିଲେ ନାହିଁ । ମୁଁ କହିଲି - ଏହା ଓଡ଼ିଆ ଭାଷାତତ୍ତ୍ୱର ବିଷୟ ।

ତା'ପରେ ସଂଗେସଂଗେ ବୋର୍ଡ଼ରେ ଲେଖିଲି - ଈଶ୍ୱର ଜଗତ ସୃଷ୍ଟି କରିଛନ୍ତି । ଈଶ୍ୱର ଜଗତର ସୃଷ୍ଟି କରିଛନ୍ତି । ଈଶ୍ୱର ଜଗତକୁ ସୃଷ୍ଟି କରିଛନ୍ତି । ପଚାରିଲି - "ଏହି ତିନୋଟି ବାକ୍ୟରୁ କେଉଁ ବାକ୍ୟଟି ଓଡ଼ିଆ ଭାଷା ଦୃଷ୍ଟିରୁ ଠିକ୍ ?" ପିଲାମାନେ ଅନ୍ଧାରରେ ବାଡ଼ି ବୁଲାଇଲା ପରି ଉତ୍ତର ଦେଲେ । କିନ୍ତୁ ଯେ ଯେଉଁ ବାକ୍ୟଟିକୁ ଠିକ୍ ବୋଲି କହିଲେ, ତାହାର କାରଣ କଅଣ, କହିପାରିଲେ ନାହିଁ । ଏହିପରି ସମସ୍ତେ ଚୁପ୍ ହୋଇ ବସିଲେ । ମୁଁ କହିଲି - ଏହା ଓଡ଼ିଆ ଭାଷାତତ୍ତ୍ୱର ବିଷୟ ।

ତା'ପରେ ବୋର୍ଡ଼ରେ ଲେଖିଲି - ସମର୍ଥର ଭାବ ସାମର୍ଥ୍ୟ, ପଣ୍ଡିତର ଭାବ ପାଣ୍ଡିତ୍ୟ, ଲଳିତର ଭାବ ଲାଳିତ୍ୟ, ତରୁଣର ଭାବ ତାରୁଣ୍ୟ, ଲବଣର ଭାବ ଲାବଣ୍ୟ । କହିଲି - ସମର୍ଥ-ସାମର୍ଥ୍ୟ, ପଣ୍ଡିତ-ପାଣ୍ଡିତ୍ୟ, ଲଳିତ-ଲାଳିତ୍ୟ, ତରୁଣ-ତାରୁଣ୍ୟ, ଏଗୁଡ଼ିକରେ ଅର୍ଥଗତ ସମ୍ବନ୍ଧ ଅଛି । କିନ୍ତୁ ଲବଣ-ଲାବଣ୍ୟ, ଏଥିରେ ଅର୍ଥଗତ ସମ୍ବନ୍ଧ ନାହିଁ, ଯେହେତୁ 'ଲବଣ'ର ଅର୍ଥ ଲୁଣ, 'ଲାବଣ୍ୟ'ର ଅର୍ଥ ସୌନ୍ଦର୍ଯ୍ୟ । ଏହାର କାରଣ କ'ଣ ? କେହି ଉତ୍ତର ଦେଇପାରିଲେ ନାହିଁ । ମୁଁ କହିଲି - ଏହା ଓଡ଼ିଆ ଭାଷାତତ୍ତ୍ୱର ବିଷୟ ।

ଏହିପରି ସାତଟି ପ୍ରଶ୍ନ ଉତ୍‌ଥାପନ କରି ମୁଁ ଓଡ଼ିଆ ଭାଷାତତ୍ତ୍ୱର ସ୍ୱରୂପ ଓ ଆବଶ୍ୟକତା ପ୍ରତିପାଦନ କରିଥିଲି । ସେତେବେଳେ ପ୍ରତିଟି କ୍ଲାସ ଥିଲା ୫୦ ମିନିଟ୍ ସମୟ । ୫୦ ମିନିଟ୍ ଚାହୁଁ ଚାହୁଁ ଚାଲିଗଲା । ମୁଁ କ୍ଲାସ୍‌ରୁ ବାହାରିଲା ବେଳକୁ ଅନୁଭବ କରିଥିଲି, ପିଲାମାନେ ଭାଷାତତ୍ତ୍ୱ ବିଷୟକୁ ଏକ ବିଜ୍ଞାନ ବିଷୟ ଭଳି ମନେ କରିଥିଲେ ଏବଂ ଖୁସି ହୋଇଥିଲେ ।

କିନ୍ତୁ ଆଜି ଯେତେବେଳେ ମୁଁ ଦେଖୁଛି ଓଡ଼ିଆ ଏକ ପରିତ୍ୟକ୍ତ ବିଷୟ, ଛାତ୍ରଛାତ୍ରୀ ଅଭାବରୁ ଓଡ଼ିଆ ଏମ୍.ଏ.କ୍ଲାସ୍ ଓ ଅନର୍ସ କ୍ଲାସ୍ ଖାଲି ପଡ଼ିଲାଣି, ଏ ଅବସ୍ଥାରେ ଓଡ଼ିଆ ଭାଷାତତ୍ତ୍ୱ କଥା ପଚାରେ କିଏ ? ବ୍ୟାକରଣ ଜ୍ଞାନ ଓ ଭାଷାତତ୍ତ୍ୱଜ୍ଞାନ ଯେ ଭାବପ୍ରକାଶକୁ ସହଜବୋଧ୍ୟ ତଥା ସଂଶୟଶୂନ୍ୟ କରେ, ଏହା ବୁଝିବାକୁ ଆଉ ଓଡ଼ିଆ ଲୋକ ନାହାନ୍ତି । ଯେନ ତେନ ପ୍ରକାରେଣ ଲେଖିଦେଲେ ଓଡ଼ିଆ ହୋଇଯାଉଛି !



# ଅଶ୍ୱଘୋଷ ରଚନାବଳୀ ଅନୁବାଦର ପୃଷ୍ଠଭୂମି

ଜୀବନରେ ପାଞ୍ଚ ଛଅ ବର୍ଷ ମୁଁ ଲଗାତାର ଏତେ ଦୁଃଖବିପଦରେ ପଡ଼ିଥିଲି ଯେ ତା' ଭିତରେ କିପରି ବଞ୍ଚି ରହିଥିଲି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଅଧ୍ୟାପକ ଚାକିରି ଗଲା । ନନା (ମୋର ଏକମାତ୍ର ବଡ଼ଭାଇ, ଯେ କି ମୋତେ ବହୁତ ଭଲ ପାଉଥିଲେ) କ୍ୟାନ୍‌ସରରେ ପଡ଼ିଲେ । ଗାଁରେ ସବୁବେଳେ ଚଉକିଟିଏ ଉପରେ ବସି ସିଲେଇ ମେସିନ୍ କାମ କରିବା ଫଳରେ ଏବଂ ଖାଇବା ପିଇବାରେ ଅନିୟମିତ ହେବା ଫଳରେ ତାଙ୍କ ପେଟ ବିନ୍ଧିଲା । ତଥାପି ସେ ସେହି କାମ ଚଳାଇ ରଖିଲେ । ଅବଶ୍ୟ ପରେ ସିଲେଇ କାମକୁ କମାଇ, ଭଦ୍ରକରୁ କପଡ଼ାଲତା, ରେଡ଼ିମେଡ୍ ପୋଷାକପତ୍ର, ଲୁଗା, ଶାଢ଼ି ଆଦି କିଛି କିଛି ନେଇ ବ୍ୟବସାୟ କଲେ । କିନ୍ତୁ ସେଥିରେ ମଧ୍ୟ ବହୁତ ସମୟ ଦୋକାନଟିରେ ବସି ରହିବାକୁ ପଡ଼ିଲା । ଆଗରୁ ପିଲାଦିନୁ କଲିକତା ଯାଇ କଳଘରେ ଖଟି ଖଟି ଦେହ ତାଙ୍କର ଦୁର୍ବଳ ହୋଇଯାଇଥିଲା । ପେଟବିନ୍ଧା କ୍ରମଶଃ ବଢ଼ିବାରୁ ସେ ମୋ ପାଖକୁ କଟକ ଆସିଲେ ଚିକିତ୍ସା ହେବା ପାଇଁ । ମୁଁ ତାଙ୍କୁ ମେଡ଼ିକାଲରେ ନେଇ ଦେଖାଇଲି । ପରୀକ୍ଷାରୁ ଜଣାପଡ଼ିଲା ଯେ ତାଙ୍କ ପାକସ୍ଥଳୀରେ ଘା' ହୋଇ କ୍ୟାନ୍‌ସର ହୋଇଯାଇଛି ।

ମୋ ମୁଣ୍ଡରେ ବଜ୍ର ପଡ଼ିଲା ।

ସେକାଳରେ କଟକରେ କ୍ୟାନ୍‌ସର ଚିକିତ୍ସା ପାଇଁ ଯାହା ଯେତିକି ଔଷଧ ବ୍ୟବସ୍ଥା ଥିଲା ଡାକ୍ତରୀ (ଏଲୋପାଥି) ଲାଇନ୍‌ରେ, ସେ ସମସ୍ତ ଆଣି ତାଙ୍କୁ ଦେଲି । କିନ୍ତୁ କିଛି ଫଳ ହେଲାନାହିଁ । ରୋଗ ବଢ଼ିବାରେ ଲାଗିଲା । ଯାହା ଯେଉଁଠୁ ଶୁଣିଲି

ଅମୁକ ହୋମିଓପାଥି ଡାକ୍ତର କ୍ୟାନ୍‌ସର ଭଲ କରିଦେଉଛନ୍ତି, ଅମୁକ କବିରାଜ ଭଲ କରି ଦେଉଛନ୍ତି, କ୍ୟାନ୍‌ସର ଜଳଚିକିତ୍ସାରେ ଭଲ ହୋଇଯାଉଛି ଇତ୍ୟାଦି, ମୁଁ ସେହି ଅନୁସାରେ ସେମାନଙ୍କ ପାଖକୁ ଯାଇ ଏବଂ ନନାଙ୍କୁ ମଧ୍ୟ ନେଇ ଚିକିତ୍ସା କରାଇଲି । କିନ୍ତୁ କିଛି ଫଳ ହେଲାନାହିଁ । ଭୁବନେଶ୍ୱରର ଜଣେ ତରୁଣ ଡାକ୍ତର କ୍ୟାନ୍ସରର ଜଳଚିକିତ୍ସା କରୁଛନ୍ତି ବୋଲି ଶୁଣି, ତାଙ୍କ ପାଖକୁ ଭୁବନେଶ୍ୱର ଯାଇ ପରାମର୍ଶ କଲି । ସେ ଭଡ଼ାରେ ଦୁଇଟା ବଡ଼ ପାଣିଟବ୍ ଦେଲେ ଏବଂ ସେଥିରେ ପାଣି ଭର୍ତ୍ତିକରି ରୋଗୀ ପାଣି ଭିତରେ ପେଟ ବୁଡ଼ାଇ ବସିବ ବୋଲି କହିଲେ । ଦୁଇଟା ଟବ୍‌ରେ ଦୁଇ ପ୍ରକାର ପୋଜିସନ୍‌ରେ ବସିବାର ନିୟମ ମଧ୍ୟ ନିଜେ ଆସି ବତାଇଦେଇ ଗଲେ । ନନା ପ୍ରାୟ ୧୫ଦିନ ନିର୍ଦ୍ଦିଷ୍ଟ ସମୟରେ ସେହିପରି କଲେ । କିନ୍ତୁ କିଛି ଫଳ ହେଲାନାହିଁ, ଓଲଟି ଥଣ୍ଡା ଧରି କାଶ ହେଲା । ଟବ୍ ଦୁଇଟାକୁ ପୁଣି ବସ୍ ଉପରେ ପକାଇ ଡାକ୍ତରଙ୍କୁ ଫେରାଇଦେଇ ଆସିଲି ।

ଜଣେ କହିଲେ, ବକ୍‌ସିବଜାରରେ ରହୁଥିବା ଜଣେ ବୃଦ୍ଧ କବିରାଜ କ୍ୟାନ୍‌ସର ପାଇଁ ଅବ୍ୟର୍ଥ ଗୁଟିକା ଔଷଧ (ଗୋଲ୍‌ଗୋଲ୍ ଗୁଳି) ଦେଉଛନ୍ତି । ସେଥିରେ ପାରଦ ମିଶା ଥିବା ହେତୁ କ୍ୟାନ୍‌ସରକୁ ଖାଇ ନିର୍ମୂଳ କରି ଦେଉଛି । ମୁଁ ତାଙ୍କ ପାଖକୁ ନନାଙ୍କୁ ନେଇ ଦେଖାଇ ଔଷଧ ଆଣିଲି । ତାଙ୍କ ନିର୍ଦ୍ଦେଶମତେ ଦୁଇମାସ ଔଷଧ ଖିଆହେଲା । କିନ୍ତୁ କିଛି ଫଳ ହେଲାନାହିଁ । ନନା ତୀବ୍ର ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ଯେତେ ପୁଷ୍ଟିକର ଖାଦ୍ୟ ଦେଲେ ବି ତାଙ୍କୁ ସବୁ ନିତାନ୍ତ ଅରୁଚିକର ବୋଧ ହେଲା । ଶେଷରେ ମେଡ଼ିକାଲର ସର୍ଜରୀ ବିଭାଗର ଡାକ୍ତର, ମୋର କଲିଜିଏଟ୍ ସ୍କୁଲ ଛାତ୍ର ଶ୍ରୀ ଯାଦବାନନ୍ଦ ଷାଠିଆଙ୍କୁ କହିଲି । ଦକ୍ଷ ସର୍ଜରି ଡାକ୍ତର ରୂପେ ତାଙ୍କର ସୁନାମ ଥିଲା । ସେ ଅପରେସନ କରାଇବାକୁ ପରାମର୍ଶ ଦେଲେ । ମୁଁ ନାନାଙ୍କୁ ମେଡ଼ିକାଲରେ ଭର୍ତ୍ତି କରି ଯାଦବଙ୍କ ହାତରେ ଅପରେସନ କରାଇଲି । ଯନ୍ତ୍ରଣା ଟିକିଏ ଉପଶମ ହେଲା, କିନ୍ତୁ କିଛିଦିନ ପରେ ପୁଣି ଆରମ୍ଭ ହେଲା । ଏପରି ତୀବ୍ର ଯନ୍ତ୍ରଣା ହେଲା ଯେ ଅଫିମ ଦେଇ ଶୁଆଇବାକୁ ପଡ଼ିଲା । ଶରୀର କ୍ଷୀଣହୋଇ ନରକଙ୍କାଳ ପରି ଦିଶିଲା ।

ନନାଙ୍କର ଚିକିତ୍ସା ଚାଲିଥିବା ଭିତରେ ମୋ ପତ୍ନୀ ଅଦ୍ଭୁତ ରୋଗରେ ଆକ୍ରାନ୍ତ ହେଲେ । ଯେତେ ଡାକ୍ତରଙ୍କୁ ଦେଖାଇଲି, କାହାରି ଔଷଧ କାମ କଲା ନାହିଁ । କେହି ପ୍ରକୃତ ରୋଗ କ'ଣ, ଚିହ୍ନିପାରିଲେ ନାହିଁ । ପତ୍ନୀ ଧୀରେ ଧୀରେ ନିସ୍ତେଜ ହେଲେ । ଘରକାମ କରିପାରିଲେ ନାହିଁ । ସେତେବେଳେ ଗୁଡ଼ିଏ ପିଲା (ମୋର ଓ ନନାଙ୍କର) ସ୍କୁଲ କଲେଜରେ ପଢୁଥାଆନ୍ତି । ସେମାନଙ୍କର ପାଠପଢ଼ା ନିତାନ୍ତ ବାଧାପ୍ରାପ୍ତ ହେଲା ।

ଝିଅମାନେ କୌଣସି ପ୍ରକାରେ ରୋଷେଇ କରି ଚଳାଇଲେ । ବଡ଼ଭାଇ ଓ ପତ୍ନୀ, ଉଭୟେ ଚାଲିଯିବେ ବୋଲି ମୋର ଧାରଣା ହେଲା ।

ଏହିପରି ଏକ ବର୍ଷ ଚାରିମାସ ଘୋର ବ୍ୟାକୁଳତା ଭିତରେ ବିତିଲା । ଦିନେ ଜଣେ କବିରାଜଙ୍କ ପାଖକୁ ଯାଇଥିଲୁ । ଘରେ ଆସି ପହଞ୍ଚିଲା ବେଳକୁ ନନାଙ୍କର ଶେଷ ଅବସ୍ଥା । ସଂପୂର୍ଣ୍ଣ ଚେତନାହୀନ ହେବା ପୂର୍ବରୁ ଦୁଇଥର ମୋତେ 'ଧନୀ' କାହିଁ ବୋଲି ଖୋଜିଥିଲେ । ମୁଁ ଡାକିଲି, ଆଉ ଶୁଣିଲେ ନାହିଁ । କୈବଲ୍ୟ ଓ ତୁଳସୀପତ୍ର ପଡ଼ିଥିବା ପାଣିରୁ ଚାମୁଚାଏ ତାଙ୍କ ପାଟିରେ ଦେଲି । ସେ ତାହାକୁ ଢୋକିଲା ମାତ୍ରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

ଆତ୍ମୀୟସ୍ୱଜନମାନଙ୍କ ସାହାଯ୍ୟରେ ଖାନନଗର ଶ୍ମଶାନରେ ତାଙ୍କର ଶେଷକୃତ୍ୟ କରାଇଲି । ମର ଶରୀର ଭସ୍ମରେ ପରିଣତ ହୋଇଗଲା ମୋରି ଅଶ୍ରୁପୂର୍ଣ୍ଣ ଆଖି ଆଗରେ ।

ଗାଁରେ ଅନ୍ତ୍ୟେଷ୍ଟି କ୍ରିୟା କରାଇବା ପାଇଁ ସବୁ ପିଲାଛୁଆଙ୍କୁ ଓ ରୋଗିଣୀ ପତ୍ନୀଙ୍କୁ ଧରି ଟ୍ରେନ୍‌ରେ ଯାଇ ଭଦ୍ରକରେ ପହଞ୍ଚିଲି । ସେଠାରୁ ତିହିଡ଼ି ପର୍ଯ୍ୟନ୍ତ ବସ୍‌ରେ ଗଲୁ । ତିହିଡ଼ିରୁ ଆଉ ବସ୍ ଗଲାନାହିଁ ବନ୍ୟାରେ ରାସ୍ତା ବୁଡ଼ିଥିବା ହେତୁ । ଶ୍ରାବଣ ମାସ, ବନ୍ୟା ହୋଇଥାଏ । ତେଣୁ ଡଙ୍ଗା ଭଡ଼ା କରି ଚାନ୍ଦବାଲି ପର୍ଯ୍ୟନ୍ତ ଗଲୁ । ବୈତରଣୀ ନଦୀକୁ ଘାଟ ଡଙ୍ଗାରେ ପାରି ହୋଇ ଚାଲି ଚାଲି ଯାଇ ଗାଁରେ ପହଞ୍ଚିଲୁ । ଗାଁରେ ଯଥାବିଧି ଅନ୍ତ୍ୟେଷ୍ଟିକ୍ରିୟା ସଂପନ୍ନ କରାଇଲି । ମୋ ବୋଉ ପୁତ୍ରଶୋକରେ ଅଧୀରା ହୋଇ ପାରାଲିସିସ୍‌ରେ ପଡ଼ିଲା । କଟକ ଆଣି ସାଧମତେ ଯେତେ ଚିକିତ୍ସା କରାଇଲି, କିଛି ଫଳପ୍ରଦ ହେଲାନାହିଁ । ମୋ ବୋଉ ଅଚଳ ଅବସ୍ଥା ଭିତରେ ବହୁତ କଷ୍ଟ ପାଇଲା । ତାକୁ ଖୁଆଇ ଦେବା, ପିଆଇଦେବା, ଶୁଆଇଦେବା ଠାରୁ ଆରମ୍ଭ କରି ଗୂହମୂତ ସଫା କରିବା ପର୍ଯ୍ୟନ୍ତ ସମସ୍ତ କାମ ପରିବାରକୁ କରିବାକୁ ପଡ଼ିଲା । ଶେଷରେ ବୋଉ ଚିରଦିନ ପାଇଁ ଆଖି ବୁଜିଲା । ମୁଁ ପିଲାଦିନୁ ପିତୃହୀନ ହୋଇଥିଲି, ଏବେ ଭ୍ରାତୃହୀନ ଓ ମାତୃହୀନ ହୋଇଗଲି ।

ବ୍ୟାଧି, ଜରା ଓ ମୃତ୍ୟୁର ଭୟାବହତା ତଥା ସଂସାରର ଦୁଃଖମୟତା ମୋତେ ବୈରାଗ୍ୟ ଓ ଉଦାସୀନତା ଆଡ଼କୁ ଗତି କରାଇଲା । ସେଥିରୁ କିପରି ମନକୁ ଫେରାଇବି ଏବଂ ମୁଣ୍ଡ ଉପରେ ଥିବା ବହୁ ପାରିବାରିକ ଦାୟିତ୍ୱ ତଥା ଭରଣପୋଷଣ କର୍ତ୍ତବ୍ୟ ତୁଲାଇବି, ସେଥିପାଇଁ ରାହାଟିଏ ଖୋଜିବାକୁ ଲାଗିଲି । ଆଗରୁ ମହାକବି ଅଶ୍ୱଘୋଷଙ୍କର ଦୁଇଖଣ୍ଡ କାବ୍ୟ (ସଂସ୍କୃତରେ ରଚିତ ବୁଦ୍ଧଚରିତମ୍ ଓ ସୌନ୍ଦରନନ୍ଦମ୍) ପଢ଼ିଥିଲି, ତାହାର ଅନୁବାଦରେ ମନ ଲଗାଇବା ପାଇଁ ଠିକ୍ କଲି । 'ବୁଦ୍ଧଚରିତମ୍'ରେ ବୁଦ୍ଧଙ୍କର ଜନ୍ମଠାରୁ

ଆରମ୍ଭ କରି ବୁଦ୍ଧତ୍ୱ (ଦିବ୍ୟଜ୍ଞାନ) ଲାଭ ପର୍ଯ୍ୟନ୍ତ ବୃତ୍ତାନ୍ତ ବର୍ଣ୍ଣିତ ହୋଇଛି । ବୁଦ୍ଧଙ୍କର ପିଲାଦିନର ନାମ ଥିଲା ସିଦ୍ଧାର୍ଥ । ସିଦ୍ଧାର୍ଥଙ୍କୁ ଜନ୍ମଦେବାର ଅଳ୍ପ କେତେଦିନ ମାତ୍ର ପରେ ମାଆ ମାୟାଦେବୀ ଇହସଂସାରରୁ ବିଦାୟ ନେଇଥିଲେ ଏବଂ ଶିଶୁ ପୁତ୍ରଟିକୁ ଲାଳନ-ପାଳନ କରିବା ଉଦ୍ଦେଶ୍ୟରେ ପିତା ଶୁଦ୍ଧୋଦନ ମାୟାଦେବୀଙ୍କ ସାନଭଉଣୀ ଗୌତମୀଙ୍କୁ ବିବାହ କରିଥିଲେ । ଗୌତମୀ ଅତ୍ୟନ୍ତ ଆଦରରେ ସିଦ୍ଧାର୍ଥଙ୍କୁ ଲାଳନ-ପାଳନ କରିଥିଲେ । ତେଣୁ ସିଦ୍ଧାର୍ଥଙ୍କ ନାମ 'ଗୌତମ' ମଧ୍ୟ ହୋଇଯାଇଥିଲା । ସିଦ୍ଧାର୍ଥ କିପରି ଭାବରେ ସଂସାରର ଅସାରତା ଉପଲବ୍ଧି କଲେ ଏବଂ ସନ୍ନ୍ୟାସୀ ହୋଇଗଲେ, ସେହି ବିଷୟ ବୁଦ୍ଧଚରିତମ୍ କାବ୍ୟରେ ଅତ୍ୟନ୍ତ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି । ଗୌତମୀଙ୍କ ଗର୍ଭରୁ ଗୋଟିଏ ପୁତ୍ର ଜାତ ହୋଇଥିଲା । ତା'ର ନାମ ସୁନ୍ଦରନନ୍ଦ । ସୁନ୍ଦରନନ୍ଦଙ୍କର ବିଳାସପରିପୂର୍ଣ୍ଣ ଜୀବନ କିପରି ବୈରାଗ୍ୟ ଆଡ଼କୁ ଗତି କଲା, ସେହି ବୃତ୍ତାନ୍ତ ସୌନ୍ଦରନନ୍ଦମ୍ କାବ୍ୟରେ ଅତ୍ୟନ୍ତ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି ।

କାବ୍ୟ ଦୁଇଟିକୁ ନିଜ ମାତୃଭାଷାରେ ଅନୁବାଦ କରି ମୋର ଗଭୀର ଦୁଃଖ ଲାଘବ କରିବି ବୋଲି ଭାବିଲି । ତେଣୁ ମୋର ପାରିବାରିକ ବୋଝ, ଯାହା କି ବଡ଼ଭାଇ ଓ ମାଆଙ୍କ ଅଭାବରେ ବହୁ ପରିମାଣରେ ବଢ଼ି ଯାଇଥିଲା, ସେହି ବୋଝକୁ ବୋହି ବୋହି ତା'ରି ଭିତରେ କାବ୍ୟ ଦୁଇଟିର ଅନୁବାଦ ସାରିଲି । ସେହି ଅନୁବାଦ ମୂଳ ସଂସ୍କୃତ ରଚନା ସହିତ ଛପାହୋଇ 'ଅଶ୍ୱଘୋଷ ରଚନାବଳୀ' ନାମରେ ପୁସ୍ତକ ହୋଇଛି । ଏହାକୁ ପ୍ରକାଶ କରିଛନ୍ତି କଟକର 'ଅକ୍ଷର' ପ୍ରକାଶନ ସଂସ୍ଥା ।

ଅଶ୍ୱଘୋଷଙ୍କର ଅନ୍ୟ ଏକ ରଚନା 'ଶାରିପୁତ୍ର ପ୍ରକରଣ' (ନାଟକ)ଟିକୁ ମଧ୍ୟ ଅନୁବାଦ କରିବାକୁ ଭାବିଥିଲି । କିନ୍ତୁ ତାହା ଅପୂର୍ଣ୍ଣ ଅବସ୍ଥାରେ ଥିବାରୁ ଅନୁବାଦ କଲିନାହିଁ । ବର୍ତ୍ତମାନ ମୁଁ ପରିଣତ ବୟସରେ କୌଣସି ପ୍ରକାରେ ଜୀବନ ବିତାଇ ଏହି 'ଦୁଃଖାଳୟମ୍' ସଂସାରରୁ ନିର୍ବାପିତ ହୋଇଯିବା ପାଇଁ ଭଗବାନ୍ ବୁଦ୍ଧଙ୍କର ପୁଣ୍ୟ ଚରିତକୁ ସ୍ମରଣ କରୁଅଛି ।

ମୋର ଅନୁଭବ ହୋଇଛି ଯେ ସ୍ମୃତି, ଅନୁଭୂତି, କୃତି, ବିକୃତି, ପ୍ରବୃତ୍ତି, ନିବୃତ୍ତି ଯାହା କିଛି, ସବୁ ହେଉଛି ଅନନ୍ତ କାଳ ସ୍ରୋତରେ ଶୂନ୍ୟ ବା ଶୂନ୍ୟ ।



# ଦିଅଁଦେବତା ସାଧୁସନ୍ଥ

ମୋ ପିଲାଦିନ କଥା । ଜଣେ ବାବାଜି କେଉଁଠୁ ଆସି 'ଆରସା' ଗ୍ରାମରେ ରହିଲେ । ସେ ପ୍ରତିଦିନ ଏକ ଗୋଡ଼ରେ ଠିଆ ହୋଇ ଯଜ୍ଞ କଲେ । ଅନ୍ୟ ଗୋଡ଼ଟି ଟେକି ରଖୁଥିଲେ । ଯଜ୍ଞ ପରେ ଭୋଗଦ୍ରବ୍ୟ ସବୁକୁ ଗୋଟିଏ କୁଣ୍ଡରେ ପକାଉଥିଲେ । କ୍ଷୀର, ପାଣି ଆଦି ସହିତେ ତାହାସବୁ ପଚି ଘୋଳ ହୋଇ ଯାଉଥିଲା । ରୋଗୀମାନେ ରୋଗରୁ ଭଲ ହେବା ପାଇଁ ବାବାଜିଙ୍କ ନିକଟକୁ ଯାଉଥିଲେ । ବାବାଜି ସେମାନଙ୍କୁ ସେହି ଘୋଳରୁ ଟଙ୍କିଏ ଲେଖାଏଁ ଦେଉଥିଲେ । ରୋଗୀମାନେ ତାହା ନେଇ ବାବାଜୀଙ୍କ ନିର୍ଦ୍ଦେଶ ଅନୁସାରେ ସେବନ କରୁଥିଲେ । ପିଲାଦିନେ ମୋତେ ପ୍ରବଳ ବାତଜ୍ୱର ଧରୁଥିଲା । ମାସେ ଦୁଇ ମାସରେ ଥରେ ଲେଖାଏଁ ଡାହାଣ ଜଙ୍ଘମୂଳଠାରୁ ପାଦ ପର୍ଯ୍ୟନ୍ତ ଗୋଟାଏ ଶିରା ଟାଙ୍କି ଧରୁଥିଲା ଏବଂ ପ୍ରବଳ ଯନ୍ତ୍ରଣାଦାୟକ ଜ୍ୱର ହେଉଥିଲା । ଜ୍ୱର ପରେ ସେହି ଗୋଡ଼ ଲାଲ ପଡ଼ି ଫୁଲି ଯାଉଥିଲା । ବୋଉ ମୋତେ ଜ୍ୱର ବେଳେ ନାନାପ୍ରକାର ପତ୍ରରସ ବା ଅନ୍ୟାନ୍ୟ କିଛି, ଯାହାଠାରୁ ଯାହା ଶୁଣୁଥିଲା, ପିଇବାକୁ, ଖାଇବାକୁ ବା ଲଗାଇବାକୁ ଦେଉଥିଲା । ବୋଉ ଯେତେବେଳେ ଶୁଣିଲା ବାବାଜିଙ୍କ ଯଜ୍ଞକୁଣ୍ଡ ପଦାର୍ଥରେ ସବୁ ରୋଗ ଭଲ ହୋଇଯାଉଛି, ସେ ମୋତେ ସେହି ଔଷଧ ଆଣିବାକୁ କହିଲା ।

ମୁଁ 'ଆରସା' ଯାଇ ଦେଖିଲି, ବାବାଜି ଗୋଟିଏ ନୂଆ ତିଆରି ହୋଇଥିବା ଚାଳିଆ ଘରେ ଏକ ଗୋଡ଼ିକିଆ ଠିଆ ହୋଇ ଯଜ୍ଞକୁଣ୍ଡରେ ଆହୁତି ଦେଉଛନ୍ତି, ମଂତ୍ର ମଧ ବୋଲୁଛନ୍ତି । ବହୁ ଲୋକ, ବିଶେଷଭାବେ ରୋଗୀମାନେ ବାହାରେ ଗୁଣ୍ଡ ହୋଇ

ଦେଖୁଛନ୍ତି । ରୋଗୀମାନଙ୍କ ହାତରେ ଗୋଟିଏ ଗୋଟିଏ ପାତ୍ର । ମୁଁ ମଧ୍ୟ ଛୋଟିଆ ଢାଳଟିଏ ନେଇଥିଲି । ଯଜ୍ଞ ସମାପ୍ତି ପରେ ରୋଗୀମାନେ ଜଣକ ପରେ ଜଣେ ନିଜ ନିଜର ରୋଗ କଥା କହି ଡଙ୍କିଏ ଲେଖାଏଁ ଘୋଳ ଘେନି ଆସିଲେ । ମୁଁ ମୋର ରୋଗ କଥା କହି ସେଥିରୁ ଡଙ୍କିଏ ପାଇଲି । ବାବାଜି ମୋତେ ସେବନ ବିଧି ବତାଇ ଦେଲେ - "ପ୍ରତିଦିନ ସକାଳୁ ସ୍ନାନ କରି ଆଗେ ଏହାକୁ ପିଇଦେବୁ, ତା'ପରେ ଅନ୍ୟ ଯାହା କିଛି ଖାଇବୁ ।"

ମୁଁ ଘରକୁ ଆସି ସେହିପରି ସେବନ କଲି, କିନ୍ତୁ କିଛି ଫଳ ହେଲା ନାହିଁ । ଦୁଇଦିନ ମାତ୍ର ପରେ ଆହୁରି ଭୀଷଣ ବାତଜ୍ୱର ହେଲା ।

ସେ ସମୟରେ ଲୋକେ ରୋଗରୁ ଭଲ ହେବା ପାଇଁ ଆଖଣ୍ଡଳମଣିଙ୍କ ମେଳା କରୁଥିଲେ, ଏବେ ମଧ୍ୟ କେହି କେହି କରୁଛନ୍ତି । ଆରଡ଼ି ଗ୍ରାମର ଆଖଣ୍ଡଳମଣି ମନ୍ଦିରକୁ ଯାଇ ଦର୍ଶନ କରି ଘର୍ଷଣ ଜଳ ଆଣି ପିଇଲେ ତାହା ରୋଗ ଦୂର କରେ ବୋଲି ବିଶ୍ୱାସ ଥିଲା । ତେଣୁ ମୁଁ କେତେକ ଗାଁ ଲୋକଙ୍କ ସଙ୍ଗରେ ଚାଲି ଚାଲି ଆଖଣ୍ଡଳମଣି ମନ୍ଦିରକୁ ଯାଇଥିଲି । ଆମେ ବଡ଼ିଭୋଅରୁ ବିଲବାଟ ଦେଇ ଗଲୁ । ସଡ଼କ ବାଟ ନ ଥିଲା । ଘାଟ ଡଙ୍ଗାରେ ପଙ୍କି ନଈ ପାରି ହେଲୁ । ସମସ୍ତେ ହାତରେ ପାଚିଲା କଦଳୀ ନେଇଥିଲୁ ଘର୍ଷଣ କରାଇବା ପାଇଁ । ପୂଜକ ପଣ୍ଡା ତାହାକୁ ନେଇ ଶିବ ବିଗ୍ରହ ଉପରେ ଘଷିଲେ ଏବଂ ଘର୍ଷଣଜଳ ତୋଳି ଆମକୁ ଦେଲେ । ଆମେ ଦକ୍ଷିଣା ଦେଇ, ମନ୍ଦିର ବାହାରେ ନେଇଥିବା ଚୂଡ଼ାଗୁଡ଼ ଭୋଜନ କରି ଘର୍ଷଣ ଘେନି ଆସିଲୁ । ଘରେ ଘର୍ଷଣ ଜଳ ମୁଁ ୩/ ୪ଥର ସେବନ କଲି, କିନ୍ତୁ ସେଥିରେ ବାତଜ୍ୱର କିଛିମାତ୍ର ଉପଶମ ହେଲା ନାହିଁ । ଯେଉଁଭଳି ଆଗରୁ ହେଉଥିଲା, ସେହିଭଳି ହେଲା । ଶେଷରେ ଆମ ଗାଁର ଏଲ୍.ଏମ୍.ପି. ଡାକ୍ତର ଶ୍ରୀ ରାମଚନ୍ଦ୍ର ସୂତାର ସରକାରୀ ଚାକିରି ଛାଡ଼ି ଚାନ୍ଦବାଲିରେ ସ୍ୱାଧୀନ ଭାବରେ ଚିକିତ୍ସା ଆରମ୍ଭ କରନ୍ତେ ମୁଁ ତାଙ୍କ ପାଖକୁ ଯାଇଥିଲି । ସେ ମୋତେ ହେଟ୍ରାଜେନ୍ ଇଂଜେକ୍ସନ୍ ଦଶ ଦିନରେ ଦଶଟା ଦେଇଥିଲେ । ସେଥିରେ ବାତଜ୍ୱରର ବ୍ୟବଧାନ କମି ଯାଇଥିଲା, ଅର୍ଥାତ୍ ମାସେ ଦେଢ଼ ମାସରେ ଥରେ ଲେଖାଏଁ ନ ହୋଇ ୫/୬ ମାସରେ ଥରେ ଲେଖାଏଁ ହେଲା ।

ରେଭେନ୍ସା କଲେଜରେ ଅଧ୍ୟାପକ ଥିବା ସମୟରେ ମୁଁ ଜଣେ ବାବାଙ୍କ ଦର୍ଶନଲାଭ କରିବାକୁ ଯାଇଥିଲି । ସେହି ବାବା ଥିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ଗୁରୁ । ମୁଖ୍ୟମନ୍ତ୍ରୀ ରହୁଥିଲେ ପି.ଏମ୍.ଜି.ଛକ ନିକଟରେ ଏକ କ୍ୱାର୍ଟରରେ । ମୁଁ ଯାଇ ଦେଖିଲି ବହୁଲୋକ, ବଡ଼ ବଡ଼ ଲୋକ ମଧ୍ୟ ବାବାଙ୍କ ଦର୍ଶନ

ପାଇଁ ଅପେକ୍ଷା କରିଛନ୍ତି, କିଛି ସମୟ ପରେ ନିର୍ଦ୍ଦେଶ ଆସିଲା ଭିତରକୁ ଯାଇ ବସିବା ପାଇଁ । ଆମେ ଯାଇ ଏକ ବଡ଼ ପ୍ରକୋଷ୍ଠ ଭିତରେ ବସିଲୁ । ସଂପୂର୍ଣ୍ଣ ନୀରବତା । ବାବା ମୁଖ୍ୟମନ୍ତ୍ରୀଙ୍କ ସହିତ ଆସିଲେ । ତାଙ୍କ ମୁଣ୍ଡରୁ ଗୋଟିକିଆ ମୋଟା ଜଟା ବେଣୀଟିଏ କାନ୍ଧ ଉପର ଦେଇ ଜଙ୍ଘ ପର୍ଯ୍ୟନ୍ତ ଓହଳି ଥାଏ । ବାବା ବସିଲେ ଏବଂ ତା'ପରେ ମୁଖ୍ୟମନ୍ତ୍ରୀ ବସିଲେ । ସଂଗେସଂଗେ ଧ୍ୟାନ କାର୍ଯ୍ୟକ୍ରମ ଆରମ୍ଭ ହେଲା । ଇଲେକ୍ଟ୍ରିକ୍ ଲାଇଟ୍ ସବୁ ଲିଭାଇ ଦିଆଗଲା । ଅନ୍ଧାର ଭିତରେ କେହି ଜଣେ, ଯାହା ନିର୍ଦ୍ଦେଶ ଦେଲେ ଲୋକେ ସେହି ଅନୁସାରେ ଆଖି ବୁଜି ଧ୍ୟାନ କଲେ । ଧ୍ୟାନ ସମୟ ପରେ ଘର ପୁଣି ଆଲୋକିତ ହେଲା । ବାବା ହିନ୍ଦୀ ଭାଷାରେ ଅଳ୍ପକିଛି ଉପଦେଶ ଦେଇ ମୁଖ୍ୟମନ୍ତ୍ରୀଙ୍କ ସହିତ ଭିତରକୁ ଚାଲିଗଲେ । ଧ୍ୟାନ ଭିତରେ 'ଆପଣମାନେ ବ୍ରହ୍ମଜ୍ୟୋତି ଦର୍ଶନ କରୁଛନ୍ତି' ବୋଲି ଯାହା କୁହାଯାଇଥିଲା, ପ୍ରକୃତରେ ମୁଁ ସେପରି କିଛି ଦେଖି ନ ଥିଲି ।

ସହିଦ୍‌ନଗରରେ ଥିବା ସମୟରେ ଜଣେ ବାବା ସେ ସମୟର ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନ୍‌ର ଚେୟାରମ୍ୟାନ୍ ଶ୍ରୀ ଚିନ୍ତାମଣି ମହାପାତ୍ରଙ୍କ ସହିଦନଗର ସ୍ଥିତ ଘରକୁ ଆସିଥିଲେ । ବି.ଜେ.ବି. କଲେଜର ଇଂରାଜୀ ରିଡ଼ର ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କ ଠାରୁ ଶୁଣିଲି ଯେ ବାବା ଅତୀତର ମହାଭାରତ ଯୁଦ୍ଧ ନିଜ ଆଖିରେ ଦେଖିଛନ୍ତି, ମୋର ଅତ୍ୟନ୍ତ କୌତୂହଳ ହେଲା । ମୁଁ ଦର୍ଶନ କରିବାକୁ ଗଲି । ଭିତରକୁ ଯାଇ ଦେଖିଲି, ଏକ ପ୍ରଶସ୍ତ ପ୍ରକୋଷ୍ଠରେ ବହୁ ଲୋକ ବସିଛନ୍ତି ଏବଂ ବାବା ଖଟ ଉପରେ ଏକ ବଡ଼ ତକିଆକୁ ଆଉଜି ବସିଛନ୍ତି, ମୁଁ ମଧ୍ୟ ସନ୍ତର୍ପଣରେ ଲୋକଙ୍କ ଭିତରେ ବସିଲି । ଅଳ୍ପ ସମୟ ପରେ ବାବାଙ୍କ ପାଦକୁ ପ୍ରଣାମ ଜଣାଇବାର କାର୍ଯ୍ୟକ୍ରମ ଆରମ୍ଭ ହେଲା । ସମସ୍ତେ ଜଣ ଜଣ କରି ଗଲେ ଏବଂ ପାଦ ପାଖରେ ମୁଣ୍ଡ ନୁଆଇଁ ସ୍ପର୍ଶ କଲା ବେଳକୁ ଅଦ୍‌ଭୁତ ସୁଗନ୍ଧ ଅନୁଭବ କଲେ । କ୍ରମେ ସଂପୂର୍ଣ୍ଣ ଘର ମହମହ ସୁଗନ୍ଧରେ ବାସିଲା । ସେହି ସୁଗନ୍ଧ ଆଘ୍ରାଣ କଲେ ମନସ୍କାମନା ପୂର୍ଣ୍ଣ ହୁଏ ବୋଲି ଆଗରୁ ଶୁଣା ଯାଉଥିଲା । ମୁଁ କିନ୍ତୁ କୌଣସି କାମନା ନେଇ ଯାଉ ନ ଥିଲି, ତେଣୁ ପାଦ ପାଖକୁ ଗଲି ନାହିଁ କି ପାଦ ସ୍ପର୍ଶ କଲି ନାହିଁ ।

ଥରେ ଜଣେ ବାବାଙ୍କୁ ଦେଖିବା ପାଇଁ ମୁଁ କଣ୍ଟିଲୋ ଗ୍ରାମକୁ ମଧ୍ୟ ଯାଇଥିଲି । ସେହି ବାବାଙ୍କ ପରମଭକ୍ତ ଥିଲେ ମୋର ସହକର୍ମୀ ପ୍ରାଧ୍ୟାପକ ଶ୍ରୀ ରବି ନାରାୟଣ ବରାଳ । ସେ, ଅଧ୍ୟାପକ ନିରଞ୍ଜନ ପଣ୍ଡା (ମୋର ଛାତ୍ର), ବରାଳ ବାବୁ ଏବଂ ମୁଁ - ଆମେ ତିନିଜଣ ଗୋଟିଏ କାର୍‌ରେ କଣ୍ଟିଲୋ ଯାଇଥିଲୁ । ସେଠାରେ ଶ୍ରୀ ଶ୍ରୀ ନୀଳମାଧବ ଜିଉଙ୍କ ଦର୍ଶନ ସାରି ଗାଁ ମୁଣ୍ଡରେ ଥିବା ଦେବୀପୀଠରେ ଦେବୀଙ୍କ ଦର୍ଶନ କଲୁ । ଆମେ

ଯେଉଁ ଫୁଲମାଳ ଗୁଡ଼ିକ କିଣି ନୀଳମାଧବ ଜିଉଙ୍କୁ ଲାଗି କରାଇ ଥିଲୁ, ସେଗୁଡ଼ିକୁ ପୁଣି ନେଇଯାଇଥିଲୁ ଏବଂ ଦେବୀମୂର୍ତ୍ତିଙ୍କୁ ଲାଗି କରାଇଲୁ । ଏପରି କରିବାକୁ ବାବା ତାଙ୍କ ଦର୍ଶନାର୍ଥୀମାନଙ୍କ ପାଇଁ ନିୟମ କରିଥିଲେ । ତା' ପରେ ଆମେ ବାବାଙ୍କ ଘରକୁ ଆସି ବାବାଙ୍କୁ ଦର୍ଶନ କଲୁ । ରାତିରେ ବାବା ଭକ୍ତମାନଙ୍କୁ ଦେବୀଙ୍କ ଦର୍ଶନ କରାଇବେ ବୋଲି କାର୍ଯ୍ୟକ୍ରମ ଥିଲା । ତେଣୁ ଆମେ ରାତିରେ ସେଠାରେ ରହିଲୁ ।

ରାତି ପ୍ରାୟ ବାରଟା ବେଳକୁ ବାବାଙ୍କ ନିର୍ଦ୍ଦେଶ ଅନୁସାରେ ଆମେ ତଥା ଅନ୍ୟ ଭକ୍ତମାନେ ଆଉ ଗୋଟିଏ ପ୍ରକୋଷ୍ଠକୁ ଗଲୁ । ଆମେ ଦେଖିଲୁ, ପ୍ରକୋଷ୍ଠଟିରେ ଗୋଟିଏ ମାତ୍ର ଦ୍ୱାର ଛଡ଼ା ଅନ୍ୟ ଦ୍ୱାର ନ ଥିଲା ଏବଂ ଗୋଟିଏ ମାତ୍ର ଖଟ ପଡ଼ିଥିଲା । ତା'ପରେ ବାବା ଆମକୁ ଦ୍ୱାର ବାହାରେ ବସିବାକୁ କହି ପ୍ରକୋଷ୍ଠ ଭିତରକୁ ଗଲେ ଏବଂ ପୂଜାପାଠ କଲେ । କିଛି ସମୟ ପରେ ବାହାରେ ବସିଥିବା ଲୋକମାନଙ୍କ ମଧ୍ୟରୁ ଜଣକ ପରେ ଜଣକୁ ଡାକିଲେ । ଆମେ ଯେଉଁ ଫୁଲମାଳ ଗୁଡ଼ିକୁ ଦେବୀଙ୍କୁ ଲାଗି କରାଇଥିଲୁ, ସେଗୁଡ଼ିକ ଏହି ସମୟରେ ସମସ୍ତଙ୍କ ପାଖରେ ଆସି ପଡ଼ିଲା । ଯେଉଁମାନେ ଫୁଲମାଳ ନୀଳମାଧବ ଜିଉଙ୍କୁ ଲାଗି କରାଇ ପୁଣି ଦେବୀଙ୍କୁ ଲାଗି କରାଇଥିଲେ, ଠିକ୍ ସେହି ମାଳ ଗୁଡ଼ିକ ସେମାନଙ୍କ ନିଜ ନିଜ ପାଖରେ ପଡ଼ିଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ବାବା ପ୍ରଥମେ ଡାକିଲେ ବରାଳ ବାବୁଙ୍କୁ । ବରାଳବାବୁ ମୋ ପାଖରେ ବସିଥିଲେ, ଗଲେ । ପାଞ୍ଚ, ଛଅ ମିନିଟ୍ ପରେ ଆସି ପୁଣି ମୋ ପାଖରେ ବସିଲେ । ମୁଁ ଦେଖିଲି ତାଙ୍କର ସର୍ବାଙ୍ଗ ଥରୁଛି !

ପଚାରିଲି - "ବରାଳବାବୁ, କ'ଣ ଦେଖିଲେ ?"

ସେ ଥରଥର କଣ୍ଠରେ ଚୁପ୍ ଚୁପ୍ କହିଲେ - "ଧନେଶ୍ୱର ବାବୁ, ମା'ଙ୍କୁ ସାକ୍ଷାତ ଦେଖିଲି । କି ଦିବ୍ୟମୂର୍ତ୍ତି ! ମୋତେ ଟାଣିନେଇ ତାଙ୍କ କୋଳରେ ବସାଇଲେ ଓ ଆଉଁଶି ଦେଲେ ।"

ତାଙ୍କ ପରେ ବାବା ଅନ୍ୟ କେତେଜଣଙ୍କୁ ଡାକିଲେ । ମୁଁ ଅପେକ୍ଷା କରିଥାଏ, ମତେ କେତେବେଳେ ଡକାଯିବ, କିନ୍ତୁ ପ୍ରାୟ ଘଣ୍ଟାଏ ପରେ ବାବା ପ୍ରକୋଷ୍ଠରୁ ବାହାରି ଆସିଲେ । କହିଲେ - ମାଆ ବିଶ୍ରାମକୁ ଗଲେ । ତା'ପରେ ଆମେ ସମସ୍ତେ ସେହି ଘରକୁ ଯାଇ ଦେଖିଲୁ, ଘରସାରା ବହୁତ ଫୁଲ ବିଛେଇ ହୋଇପଡ଼ିଛି ଏବଂ ମହମହ ବାସୁଛି ।

ମା'ଙ୍କ ଦର୍ଶନ କାର୍ଯ୍ୟକ୍ରମର ପୂର୍ବରୁ ଦର୍ଶନାର୍ଥୀମାନେ ବାବାଙ୍କ ଆଗରେ ନିଜ ନିଜର କାମନା ପ୍ରକାଶ କରିଥିଲେ ଏବଂ ବାବା ତାହା ପୂରଣ ହେବାର ଉପାୟ ବତାଇ

ଥିଲେ । ଭକ୍ତଙ୍କ ସହିତ କଥା ହେଉଥିବା ଭିତରେ ଏକ କଙ୍କଣ ଧରି (କଙ୍କଣଟି ଅଷ୍ଟଧାତୁ ନିର୍ମିତ ବୋଲି ଶୁଣା ଯାଉଥିଲା) ନିଜ କାନ ପାଖରେ ହଲାଇ ସତେ ଯେପରି ଶୂନ୍ୟରେ ଥିବା କାହା ସହିତ କଥା ହେଉଥିଲେ । କହୁଥିଲେ - "ମାଆ, ତୋତେ ମୁଁ କେତେ ହଇରାଣ କରିବି ? ଲୋକମାନେ ଦୁଃଖରେ ପଡ଼ି ତୋ କରୁଣା ପାଇବାକୁ କେତେ କେତେ ଦୂରରୁ ଆସିଛନ୍ତି । ତାଙ୍କ ଦୁଃଖ ତୁ ବୁଝିବୁ ନାହିଁ ତ କିଏ ବୁଝିବ ? ଅମୁକବାବୁ କହୁଛନ୍ତି ..." ଇତ୍ୟାଦି । ତା'ପରେ ଶୂନ୍ୟରୁ କିଛି ନିର୍ଦ୍ଦେଶ ପାଇଲା ଭଳି ଶୁଣୁଥିଲେ ଏବଂ ତା'ପରେ ଭକ୍ତକୁ ତାର କାମନା ପୂରଣର ଉପାୟ ବତାଉଥିଲେ ।

ଆମେ ଯେଉଁ ଥର ଯାଇଥିଲୁ, ଦର୍ଶନାର୍ଥୀମାନଙ୍କ ମଧ୍ୟରେ ଜଣେ ତରୁଣୀ ଥିଲା । ସେ କ୍ଷୀଣ ଶରୀର ହୋଇ କାଠି ପରି ଦିଶୁଥିଲା । ତା' ସାଙ୍ଗରେ ଆସିଥିବା ପୁରୁଷ ଲୋକଟି ତା ରୋଗ କଥା ବାବାଙ୍କୁ କହିଲା ଏବଂ ବହୁତ ପ୍ରକାର ଚିକିତ୍ସା କରି କରି ଭଲ ହେଉନାହିଁ ବୋଲି କହିଲା, ବାବା ତା' ଉପରେ ଦୃଷ୍ଟି ବୁଲାଇ ଭର୍ତ୍ସନା କରି କହିଲେ - "ପାପିନୀ, ତୁ ପୂର୍ବ ଜନ୍ମରେ ବହୁତ କୁକର୍ମ କରିଥିଲୁ । ଅମୁକ ସଙ୍ଗରେ, ସମୁକ ସଙ୍ଗରେ ରହିଥିଲୁ, ତୋ ଦେହରୁ ପାପ ନ ଗଲେ ତୁ ଭଲ ହେବୁ ନାହିଁ । ତୋ ପାପ ତୋ ଦେହରୁ ମୁଁ ଟାଣି ନେବି ।" ଏହିପରି କହି ଗୋଡ଼ ଦୁଇଟା ଲମ୍ବାଇ ଦେଲେ । ତରୁଣୀଟି ତାଙ୍କ ଦୁଇ ଗୋଡ଼ର ଦୁଇ ବୁଢ଼ା ଆଙ୍ଗୁଠିକୁ ଧରି ବସିଲା । ବାବା ତା'ର ପାପକୁ ଶୋଷି ନିଜ ଦେହକୁ ନେଲା ପରି ଅଙ୍ଗ ଭଙ୍ଗୀ କଲେ ।

ସେସବୁ ଦୃଶ୍ୟ ମୋତେ କୁହୁକ ପରି ବୋଧ ହୋଇଥିଲା ।



# ମୋ ସମୟର କନିକାରେ କବିତ୍ୱଧାରା

ନଦୀନାଳବେଷ୍ଟିତା, ଗ୍ରାମମାଳିନୀ, ଶସ୍ୟଶାଳିନୀ କନିକା ଭୂମିରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଲହରୀ ଯେପରି ପ୍ରବାହିତ, କବିତା ମନ୍ଦାକିନୀର ଧାରା ସେହିପରି ପ୍ରବାହିତ । କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ ଏହି ନିଭୃତ ଅଞ୍ଚଳଟି ଆଧୁନିକ ଚାକଚକ୍ୟପୂର୍ଣ୍ଣ ସଭ୍ୟତାର ଦୂରରେ ରହି ସତେ ଯେପରି କବିତାର ଯାଦୁକରୀ ସ୍ପର୍ଶରେ ସ୍ୱପ୍ନବିଭୋର ହୋଇଯାଇଛି ! ଉତ୍ତରରେ ପୁଣ୍ୟତୋୟା ବୈତରଣୀ, ପୂର୍ବରେ ବ୍ରାହ୍ମଣୀ ଓ ଖରସ୍ରୋତା ନଦୀ କୁଳୁକୁଳୁ ଧ୍ୱନିରେ ବିଭୁମହିମା ସଂଗୀତ ଗାନ କରି ଏବଂ ମୃଦୁମନ୍ଦ ବାୟୁ ଅଜସ୍ର କାଶତଣ୍ଡୀ ଫୁଲର ବିଞ୍ଚଣା ଦୋହଲାଇ କନିକାର ସେହି ସ୍ୱପ୍ନକୁ ଆହୁରି ସୁଖମୟ କରିଚାଲିଛନ୍ତି । ବୈତରଣୀ, ବ୍ରାହ୍ମଣୀ ଓ ଖରସ୍ରୋତାର ଅପର ପାର୍ଶ୍ୱକୁ ଯଦିଚ କନିକାର ଅଧିକ ବିସ୍ତୃତି ଅଛି, ତଥାପି ଏହି ତିନି ନଦୀର ପରିସୀମା ଭିତରେ ଥିବା କନିକା ସାଧାରଣତଃ କନିକାର ମୁଖ୍ୟ ଅଞ୍ଚଳ ଏବଂ ୧୯୨୨ରେ ଯେଉଁ କନିକା ପ୍ରଜା ଆନ୍ଦୋଳନ ହୋଇଥିଲା, ତାହା ଏହି ମୁଖ୍ୟ ଅଞ୍ଚଳରେ ହିଁ ହୋଇଥିଲା । ଏହି ମୁଖ୍ୟ ଅଞ୍ଚଳକୁ 'ଛମୁକା' କୁହାଯାଏ ।

ଆମ ସମୟରେ କନିକାରେ ବରିଷ୍ଠ ପ୍ରତିଭାଧର ପଣ୍ଡିତ ଦାମୋଦର ମିଶ୍ର । ଜନ୍ମ ୧୮୭୨, ମହାପ୍ରୟାଣ ୧୯୫୩ । ଗିରୀୟା ଗ୍ରାମରେ ଭୂମିଷ୍ଠ ହୋଇ ସେହି ଗ୍ରାମକୁ ଚିର ପବିତ୍ର କରି ଯାଇଛନ୍ତି ପଣ୍ଡିତ ଦାମୋଦର । ନିଜ ପ୍ରତିଭା ଓ ଅଧ୍ୟବସାୟ ବଳରେ ସେ ସଂସ୍କୃତ କାବ୍ୟ, ବ୍ୟାକରଣ, ପୁରାଣ, ସ୍ମୃତି ଓ ବେଦାନ୍ତ ବିଷୟରେ ଅଧ୍ୟୟନ କରି ଉପାଧିମାନ ଲାଭ କରିଥିଲେ ଏବଂ କନିକା ରାଜାଙ୍କଠାରୁ 'କବିରତ୍ନ' ଓ 'ସରସ୍ୱତୀ' ଉପାଧି ଲାଭ

କରିଥିଲେ । କବିବର ରାଧାନାଥ ରାୟ ଓଡ଼ିଶାର ଶିକ୍ଷା ବିଭାଗୀୟ ଇନିସ୍‌ପେକ୍ଟର ଥିଲାବେଳେ ଛାତ୍ରାବସ୍ଥାରେ ଥିବା ଦାମୋଦରଙ୍କର ଗଭୀର ସଂସ୍କୃତ ବିଦ୍‌ବତ୍ତାରେ ବିସ୍ମିତ ହୋଇ ଯାଇଥିଲେ । କନିକା ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ଟୋଲ୍‌ରେ ପଣ୍ଡିତ ମିଶ୍ର ଦୀର୍ଘକାଳ ଶିକ୍ଷକତା କରିବା ସଂଗେସଂଗେ ସଂସ୍କୃତ ଓ ଓଡ଼ିଆ ଭାଷାରେ କାବ୍ୟକବିତା ରଚନା କରିବାରେ ବ୍ରତୀ ହୋଇଥିଲେ । ପଣ୍ଡିତ ଦାମୋଦରଙ୍କର ଶତାଧିକ ସାରସ୍ୱତ କୃତି ରହିଛି । ତନ୍ମଧ୍ୟରୁ ପ୍ରାୟ ତିରିଶଟି ପ୍ରକାଶିତ । ପଦ୍ୟ, ଗଦ୍ୟ, ନାଟକ, ଅନୁବାଦ ପ୍ରଭୃତିରେ ସେ କୃତିତ୍ୱ ଅର୍ଜନ କରିଛନ୍ତି । କନକବର୍ଷଚରିତମ୍, କନିକା ବିଜୟ, ଧ୍ରୁବ ତପସ୍ୟା, ଭଞ୍ଜ କନିକା, ନାଗାନନ୍ଦ, ସୂକ୍ତି ରତ୍ନାକର, ପଞ୍ଚାମୃତ, ନୀତିମଞ୍ଜରୀ, ଶିଶୁ ସର୍ବସ୍ୱ, ବିଚିତ୍ର ନାଟକ, ପରିଣୟ, ଗୋମାତା, କଳ୍ପଲତା, ସଂସାର ଚିତ୍ର, କିରାତାର୍ଜୁନୀୟ (ଅନୁବାଦ), ମେଘଦୂତ, ନୈଷଧସାର, କପିଳ ସୂତ୍ର (ଅନୁବାଦ), ବ୍ରହ୍ମଜ୍ଞାନ, ଭକ୍ତଗ୍ରହାରି, ସତ୍ୟ ବିଜୟ, ଅଦୃଷ୍ଟ, କଳି କୋଇଲି, ଅନନ୍ତ ବ୍ରତ ପ୍ରଭୃତି ରଚନା ଭାଷା, ଭାବ ଓ ଶୈଳୀରେ ଉଚ୍ଚକୋଟୀର । ତାଙ୍କର ନାଟକଗୁଡ଼ିକ ଅଭିନୀତ ହୋଇ କନିକାର ଦର୍ଶକଗଣଙ୍କୁ ମୁଗ୍ଧ କରିଥିଲା । ପଣ୍ଡିତ ମିଶ୍ର ସଂସ୍କୃତ ବିଦ୍ୱାନ୍ ହୋଇ ମଧ୍ୟ ସରଳ, ସାବଲୀଳ ଓଡ଼ିଆରେ କାବ୍ୟ, କବିତା, ଭଜନ, ଜଣାଣ, ନୀତି ପୁସ୍ତକମାନ ରଚନା କରିଥିଲେ । ଉଦାହରଣ ସ୍ୱରୂପ -

"ଆଶୁତୋଷ ଆଖଣ୍ଡଳମଣି କାଳ ହେଲଣି କି
ଆରଡ଼ି ଆସ୍ଥାନ ଛାଡ଼ି କଇଳାସେ ଗଲଣି କି ..."
"ଦୁଃଖହାରିଣୀ ଖୁଦୁରୁକୁଣୀ
ଫିଟା ତୋର ଅସରନ୍ତି ଆଶିଷ ଶୁଣି ..."
"କାମ ସାରିବେ ହାରା
ଉଇଁଲାଣି ଆକାଶରେ ପାହାନ୍ତି ତାରା ..."

କନିକାର ଅନ୍ୟତମ ବିଭୂତି ଥିଲେ କବି ଉଜିର ବେଗ୍ । ସେ ଥିଲେ ଧର୍ମରେ ମୁସଲମାନ, କିନ୍ତୁ ଆଚାର ବିଚାରରେ ହିନ୍ଦୁ । କୃଷ୍ଣଭକ୍ତି ଥିଲା ତାଙ୍କ ଜୀବନମନ୍ତ୍ର । ତାଙ୍କର ଗୀତିନାଟକ 'ନନ୍ଦୋତ୍ସବ' କନିକାରେ ପ୍ରତିବର୍ଷ ଜନ୍ମାଷ୍ଟମୀ ବେଳକୁ ଅଭିନୀତ ହେଉଥିଲା ଏବଂ ହଜାର ହଜାର ଦର୍ଶକଙ୍କୁ ଆନନ୍ଦ ଓ ଶାନ୍ତି ପ୍ରଦାନ କରୁଥିଲା । ତଅପୋଇ ଓଷା ସଂବନ୍ଧରେ ସେ ଯେଉଁ କାବ୍ୟ ପୁସ୍ତିକାଟି ରଚନା କରି ଯାଇଛନ୍ତି, ଆଜିଯାଏ ଓଷାକାରିଣୀ କୁମାରୀମାନେ ତାହା ଗାନ କରୁଛନ୍ତି । କବି ଉଜିର ବେଗଙ୍କର ଅନେକ ଉଚ୍ଚାଦର୍ଶପୂର୍ଣ୍ଣ ଗୀତ କନିକାରେ ପ୍ରଚଳିତ ଅଛି । ଉଦାହରଣ ସ୍ୱରୂପ, "ଯାହାର ଯହିଁକି ମନ ଖୁସି, ଯାଉ ଭାସି, ଶେଷେ ଆସି, ବ୍ରହ୍ମପଦେ ଯାଉ ମିଶି ... ।"

କବି ନେତ୍ରାନନ୍ଦ ମିଶ୍ର 'ପାଣ୍ଟୁର କୋଇଲି' ଗ୍ରାମରେ ଜନ୍ମ ଗ୍ରହଣ କରି କନିକାବାସୀଙ୍କୁ କାବ୍ୟକବିତାର ମଧୁର ଆସ୍ୱାଦନ ଦେଇ ଯାଇଛନ୍ତି । ତାଙ୍କ ରଚିତ 'ମଙ୍ଗଳା ଓଷା' ବା 'ନିଶା ମଙ୍ଗଳବାର ଓଷା' କାବ୍ୟଟିର ପଟାନ୍ତର ନାହିଁ । ଏହା ବିଭିନ୍ନ ରାଗରାଗିଣୀରେ ରଚିତ । ଆଜିଯାଏ ଏହା ମଙ୍ଗଳା ଓଷାରେ ପାଞ୍ଚ ମଙ୍ଗଳବାର ସଂଧ୍ୟାରେ ବୋଲାଯାଉଅଛି । ତାଙ୍କର ଅନେକ ଭଜନ, ଜଣାଣ ଆଦି ରଚନା ଅପ୍ରକାଶିତ ରହିଛି । ମୁଁ କଟକ ରେଭେନ୍‌ସା କଲିଜିଏଟ୍‌ରେ ଶିକ୍ଷକ ଥିଲାବେଳେ ସେ ମୋ ପାଖରେ ରହି ତାଙ୍କର 'ନିଶା ମଙ୍ଗଳବାର ଓଷା' କାବ୍ୟଟି ପ୍ରେସ୍‌ରେ ଛପାଉଥିଲେ । 'ଆୟତନ' ଗ୍ରାମର ଶ୍ରୀ ଘନଶ୍ୟାମ ଧଳ ଓଡ଼ିଶାର ଉଚ୍ଚକୋଟୀର କବି ଲେଖକମାନଙ୍କ ମଧ୍ୟରେ ଅନ୍ୟତମ । ସେ ଏକାଧାରରେ କବି, ନାଟ୍ୟକାର, ଗାଳ୍ପିକ, ଔପନ୍ୟାସିକ ଓ ପ୍ରାବନ୍ଧିକ ମଧ୍ୟ । ତାଙ୍କର ସନ୍ଧ୍ୟାବାଳୀ (କାବ୍ୟ), ହୈମବତୀ ବିଳାସ (କାବ୍ୟ), ପାଷାଣ ତୁ କହ କଥା (କବିତାଗୁଚ୍ଛ), ଆହୁତି (ନାଟକ), ଚୋରାବାଲି (ନାଟକ), ବିନ୍ଦୁ ଓ ପରିଧି (ଏକାଙ୍କିକା ଗୁଚ୍ଛ), ବରଂଚ ଅନ୍ଧାର (ଉପନ୍ୟାସ) ପ୍ରଭୃତି ରଚନା ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛି । ଏହା ଛଡ଼ା ତାଙ୍କର ଶବର ରାଜା ଗୁହ୍ୟକ (ଗୀତିନାଟକ), ଫକୀରମୋହନ (ଆଲୋଚନା ପୁସ୍ତକ), ପାଂଚି ବଉଳବାଟ (ଗଳ୍ପ ସଂକଳନ), ଦ୍ୱିତୀୟ ପାଣ୍ଡବ (ଉପନ୍ୟାସ) ଆଦି ରଚନା ସବୁ ଦୃଷ୍ଟିରୁ ଉଚ୍ଚକୋଟୀର । କବି ଘନଶ୍ୟାମ ଓଡ଼ିଆ ଜାତୀୟତାର ଉଦ୍‌ଘୋଷଣ କରିଛନ୍ତି ଅନେକ କବିତାରେ । ଉଦାହରଣ ସ୍ୱରୂପ, "ପାଷାଣ ତୁ କହ କଥା, ତୋହରି ଗାତ୍ରେ ରଖିଛୁ ସାଇତି ମୋହରି ଜାତିର ଜୀବନ ଗାଥା ... ।" ନିକଟରେ ତାଙ୍କର ସମସ୍ତ ରଚନା 'ଘନଶ୍ୟାମ ଗ୍ରନ୍ଥାବଳୀ' ରୂପେ ପ୍ରକାଶ ଲାଭ କରିଛି ।

'ଗିରୀୟା' ଗ୍ରାମର କବି ଶ୍ରୀ ଦୟାନିଧି ଦାଶ 'ଅନୁରାଗବଲ୍ଲରୀ' ନାମକ କାବ୍ୟ ରଚନା କରିଛନ୍ତି । କାବ୍ୟଟି ଗଙ୍ଗାଧର ମେହେରଙ୍କ 'ପ୍ରଣୟବଲ୍ଲରୀ' କାବ୍ୟର ସମାଦର୍ଶୀ ଓ ସମକକ୍ଷ । ମଧ୍ୟଯୁଗୀୟ ଶୈଳୀ ଓ ରାଗରାଗିଣୀରେ ରଚିତ ଏହି କାବ୍ୟଟି କବିଙ୍କ ଉଚ୍ଚ ପ୍ରତିଭାର ପରିଚୟ ଦିଏ । ପାଲା ଗାୟକ ଓ ପାଲା ଶ୍ରୋତାଙ୍କ ଦ୍ୱାରା କାବ୍ୟଟି ବିଶେଷ ଭାବେ ଆଦୃତ ।

ଗଂଜା ଗ୍ରାମର ଶ୍ରୀ ବିଷ୍ଣୁ ଚରଣ ବିଶ୍ୱାଳ 'ତଅପୋଇ', 'ତୁଳସୀ କ୍ଷେତ୍ର' ଆଦି କେତେଗୁଡ଼ିଏ କାବ୍ୟ ରଚନା କରିଛନ୍ତି । ତାଙ୍କର ସରଳ, ସରସ କବିତ୍ୱ ପାଇଁ ତାଙ୍କୁ 'କବିବଂକୁଳ' ଉପାଧିରେ ଭୂଷିତ କରାଯାଇଛି ।

'ହଟିଆ ପଡ଼ା' ଗ୍ରାମର ଶ୍ରୀ ଧୋଇ ସାହୁ 'ଭୀଷ୍ମ' ନାମକ ଏକ କାବ୍ୟ ଲେଖିଛନ୍ତି ।

ଭାରତରେ ଭୀଷ୍ମ ଚରିତ୍ରଟିର ଯେପରି ବୈଶିଷ୍ଟ୍ୟ ରହିଛି, ଶ୍ରୀ ସାହୁଙ୍କର 'ଭୀଷ୍ମ' କାବ୍ୟଟିର ସେହିପରି ବୈଶିଷ୍ଟ୍ୟ ରହିଛି । 'ପିମ୍ପୁଡ଼ି' ଗ୍ରାମର ଶ୍ରୀ ଭାଗୀରଥି ସାମଲ 'କୁଟୀରେ' ନାମକ ଖଣ୍ଡକାବ୍ୟ ଲେଖିଛନ୍ତି । ଏଥିରେ କନିକାର ପ୍ରାକୃତିକ ଶୋଭାସମ୍ଭାର ଅତ୍ୟନ୍ତ ଚିତ୍ତାକର୍ଷକ ଭାବରେ ବର୍ଣ୍ଣିତ ହୋଇଛି । 'ମେଘପୁର' ଗ୍ରାମର ଶ୍ରୀ ବସନ୍ତ କୁମାର ସାହୁ ସ୍ୱରଚିତ ଶିଶୁ କବିତାଗୁଡ଼ିକୁ କ୍ଷୁଦ୍ର କ୍ଷୁଦ୍ର ପୁସ୍ତିକା ଆକାରରେ ପ୍ରକାଶ କରିଛନ୍ତି । ଶିଶୁମାନଙ୍କ ପକ୍ଷେ ସେଗୁଡ଼ିକ ଅତ୍ୟନ୍ତ ମନୋରଂଜକ ତଥା ଶିକ୍ଷାପ୍ରଦ । 'ବୁରୁଡ଼ିଆ' ଗ୍ରାମର ଶ୍ରୀ ଦୀନବଂଧୁ ରାଉତ 'ଶିଶୁ ଭକ୍ତ ପ୍ରହ୍ଲାଦ' କବିତାଗୁଚ୍ଛ ରଚନା କରି ଶିଶୁମାନଙ୍କୁ ଉତ୍ତମ ମନୁଷ୍ୟ ହେବାପାଇଁ ପଥ ଦେଖାଇଛନ୍ତି । ଗିରୀୟା ଗ୍ରାମର ପଣ୍ଡିତ ପୀତାମ୍ବର ମିଶ୍ର 'ପାଟଚୁଙ୍ଗି' ପ୍ରଭୃତି ଅନେକଗୁଡ଼ିଏ ଶିଶୁ କବିତା ପୁସ୍ତକ ଲେଖିଛନ୍ତି । ଏ ଗୁଡ଼ିକ ଶିଶୁ ମହଲରେ ବେଶ୍ ଆଦର ଲାଭ କରିଛି । 'ମଲ୍ଲୀପୁର' ଗ୍ରାମର ଶ୍ରୀ ବନମାଳୀ ବେହେରାଙ୍କ ରଚିତ 'କୁସୁମାଞ୍ଜଳି' ନାମକ କବିତାଗୁଚ୍ଛ ପୁସ୍ତିକାଟି ପାଠକମାନଙ୍କ ଦ୍ୱାରା ଆଦୃତ ହୋଇଛି । ଏହିପରି ଅନେକ କବିଙ୍କ ଲେଖନୀରୁ କାବ୍ୟ କବିତାର ଅମୃତଝର ନିଃସୃତ ହୋଇ କନିକାକୁ ପ୍ରାଣମୟ କରିଛି । ବର୍ତ୍ତମାନ ମଧ୍ୟ କନିକାର ନୂତନ ପୀଢ଼ିର କବିମାନେ ନୂତନ ଶୈଳୀରେ ହୃଦୟଗ୍ରାହୀ କବିତା ରଚନା କରୁଛନ୍ତି ।

କନିକା କବିତ୍ୱଧାରାର ଚିରନ୍ତନ ଲୀଳାଭୂମି । କବି ପଣ୍ଡିତ ଦାମୋଦର ଯଥାର୍ଥରେ ଗାଇଛନ୍ତି -

ସଂସ୍କାର ବିହୀନେ          ନଷ୍ଟ ହେବ ଦିନେ
ପ୍ରାସାଦ ଆଦି ସକଳ
ଆ-ଶଶୀ ସବିତା          ରହିବ କବିତା-
କଳ୍ପଲତା ଅବିକଳ ।



# ଏକ ଅଶରୀରୀ ଦୃଶ୍ୟ

ନୟାଗଡ଼ର ଗୋଟିଏ ଗାଁରେ ଗୋଟିଏ ମହିମା ଟୁଙ୍ଗୀ ପ୍ରତିଷ୍ଠା ଉତ୍ସବରେ ଯୋଗଦେଇ ମୁଁ ଓ ଆଉ ୪/୫ଜଣ ଜିପ୍‌ରେ କଟକ ଫେରୁଥାଉ । ଆମ ଗାଡ଼ି ଭୁବନେଶ୍ୱର ରସୁଲଗଡ଼ ଅତିକ୍ରମ କରି କୁଆଖାଇ ନଈ ପୋଲଠାରେ ପହଞ୍ଚିଲା ବେଳକୁ ରାତି ପ୍ରାୟ ଦୁଇଟା । ସେତେବେଳେ କଟକ-ଭୁବନେଶ୍ୱର ରାସ୍ତାରେ ଏତେ ଗାଡ଼ି ଚଳାଚଳ ହେଉ ନ ଥିଲା । ରାତି ଅଧ ପରେ ରାସ୍ତା ଶୂନ୍‌ଶାନ୍ ହୋଇ ଯାଉଥିଲା । କାଁ ଭାଁ ଗୋଟାଏ ଗୋଟାଏ ଗାଡ଼ି ଚାଲୁଥିଲା ମାତ୍ର । ଆମେ ହଂସପାଳ ଅତିକ୍ରମ କରି ତତ୍‌ପରବର୍ତ୍ତୀ କେନାଲ ପୋଲକୁ ଅତିକ୍ରମ କଲୁ । ତା'ପରେ ରାସ୍ତା ଟିକିଏ ବାଙ୍କ । ଏବେ ସେହି ବାଙ୍କ ପାଖରେ ପୂର୍ବ ଦିଗକୁ ଏକ ପେଟ୍ରୋଲ ପମ୍ପ ହେଲାଣି । ସେତେବେଳେ ଏହା ନ ଥିଲା ।

ନିସ୍ତବ୍ଧ ଅଂଧକାର ରାତି । ସ୍ୱଚ୍ଛ ନୀଳ ଆକାଶ ଅସଂଖ୍ୟ ତାରାରେ ବିମଣ୍ଡିତ ଦିଶୁଥାଏ । ଶୀତଳ ପବନ ଦେହକୁ ମଧୁର ସ୍ପର୍ଶ ଦେଉଥାଏ । ଗାଡ଼ିରେ କେତେ ଜଣ ଘୁମେଇ ପଡ଼ି ଥାଆନ୍ତି । ଚାଳକ ଧୀର ଗତିରେ ଗାଡ଼ି ଚଳାଉ ଥାଆନ୍ତି ।

ମୁଁ ଗାଡ଼ିର ବାମ ପଟକୁ ବସିଥାଏ । ଗାଡ଼ି ବାଙ୍କ ପାଖରେ ପହଞ୍ଚିଲା ବେଳକୁ ମୁଁ ଆଗକୁ ଚାହିଁ ଆଶ୍ଚର୍ଯ୍ୟ ହୋଇଗଲି । ଗାଡ଼ିର ଆଲୋକରେ ଏକ ଅଦ୍ଭୁତ ଦୃଶ୍ୟ ଦେଖାଗଲା । ପ୍ରାୟ ତିନି ଶହ ହାତ ଆଗକୁ ରାସ୍ତାର ବାମ ପାଖେ ପାଖେ ଏକ ସୁନ୍ଦରୀ ତରୁଣୀ ଶୂନ୍ୟରେ ଭାସି ଭାସି ଯାଉଥିଲା । ତାର ମୁହଁଟି ଆଗକୁ ଥାଏ, ତେଣୁ ମୁହଁ ମୋତେ ଦିଶୁ ନ ଥାଏ । ଦେହର ପିଠିପଟ ଦେଖା ଯାଉଥାଏ । ଗୌରବର୍ଣ୍ଣର ପିଠି ଉପରେ ନିତମ୍ବ ପର୍ଯ୍ୟନ୍ତ ଲମ୍ବିଥାଏ ଘନ ନୀଳକେଶର ଲମ୍ବା ବେଣୀଟିଏ । ସତେ ଯେପରି ଖରାଦିନ କାଠଯୋଡ଼ି ବାଲୁକାଶଯ୍ୟା ଉପରେ ଘନ ନୀଳବର୍ଣ୍ଣର ଜଳଧାରାଟିଏ । ବେକଠାରୁ ପାଦ ପର୍ଯ୍ୟନ୍ତ ତରଳ ସୁବର୍ଣ୍ଣ ପରି

ଝଟକୁ ଥାଏ । ଆଜିକାଲି ଟି.ଭି.ରେ ଯେପରି ଦେବଦେବୀମାନେ ଶୂନ୍ୟରେ ଭାସି ଭାସି ଯିବାର ଦେଖା ଯାଉଛନ୍ତି, ତରୁଣୀଟି ସେହିପରି ଭାସି ଭାସି ଯାଉଥାଏ । ତାର ପାଦ ଦୁଇଟି ମାଟିରେ ଲାଗୁ ନ ଥାଏ, ମାଟି ଉପରୁ ପ୍ରାୟ ଚାରି ପାଞ୍ଚ ହାତ ଉପରକୁ ଥାଏ । ଶରୀରର ପିଠି ପଟରୁ ମଧ୍ୟ ଜାଣି ହେଉଥାଏ ତରୁଣୀଟି ଦିବ୍ୟ ସୁନ୍ଦରୀ ।

ମୋର ପ୍ରଥମେ ମନେ ହେଲା, ବୋଧହୁଏ କୌଣସି ପାଖଆଖ ଗାଁର ତରୁଣୀଟିଏ ସାଙ୍ଗସାଥୀଙ୍କ ମେଳରେ ବୁଲି ଆସିଛି, ବୋଧହୁଏ ସାଙ୍ଗସାଥୀମାନେ କେଉଁଠି ଠିଆ ହୋଇଛନ୍ତି । ପୁଣି ମନେ ହେଲା, ବୋଧହୁଏ ନବବିବାହିତା ତରୁଣୀଟି ସ୍ୱାମୀ ଗୃହରୁ ରୁଷି ପଳାଇ ଯାଉଛି । କିନ୍ତୁ ତାର ଭାସମାନ ଗତିକୁ ଦେଖି ମୋର ସେ ଧାରଣା ଦୂର ହୋଇଗଲା । ସହସା ତରୁଣୀଟି ବାମ ଆଡ଼କୁ ମୁହଁ ବୁଲାଇ ପଛକୁ ଟିକିଏ ଚାହିଁ ଦେଲା । ଆଃ ! କି ଅପରୂପ ଲାବଣ୍ୟର ଜ୍ୟୋତି ! ମୁଁ 'ସୌନ୍ଦରନନ୍ଦମ୍' କାବ୍ୟରେ ପଢ଼ିଥିଲି, ବୁଦ୍ଧ ତାଙ୍କ ସାନ ଭାଇ ରାଜକୁମାର ନନ୍ଦଙ୍କୁ ନେଇ ସ୍ୱର୍ଗର ରମ୍ଭା, ମେନକା, ଉର୍ବଶୀ ଆଦି ଦିବ୍ୟାଙ୍ଗନାମାନଙ୍କୁ ଦେଖାଇ ଥିଲେ । ନନ୍ଦ ସେମାନଙ୍କୁ ଦେଖି ଏପରି ମୁଗ୍ଧ ହୋଇ ଯାଇଥିଲେ ଯେ ମର୍ତ୍ତ୍ୟ ଭୁବନର ସମସ୍ତ ତରୁଣୀଙ୍କର ରୂପ ତାଙ୍କୁ ତୁଚ୍ଛ ବୋଧ ହୋଇଥିଲା । ସେହିପରି ମୋର ମନେ ହେଲା, ଏଭଳି ସୌନ୍ଦର୍ଯ୍ୟ ମର୍ତ୍ତ୍ୟମଣ୍ଡଳରେ କଦାପି ସମ୍ଭବ ହୋଇ ନ ପାରେ । ତରୁଣୀଟି ଅଧାବଙ୍କା ମୁହଁଟିକୁ ସଙ୍ଗେସଙ୍ଗେ ବୁଲାଇ ନେଲା ।

ଗାଡ଼ି ଚାଳକ ମଧ୍ୟ ତରୁଣୀଟିକୁ ଦେଖି ପାରିଲେ ଏବଂ ଗାଡ଼ିର ଗତିକୁ ଆହୁରି କମାଇ ଦେଲେ । ଗାଡ଼ି ମନୁଷ୍ୟ ଚାଲିବା ଭଳି ଗତିରେ ଚାଲିଲା । ମୋ ପାଖରେ ବସିଥିବା ଦୁଇଜଣ ଲୋକ ଅର୍ଦ୍ଧନିଦ୍ରା ଅବସ୍ଥାରୁ ଉଠି ପଡ଼ିଲେ ଏବଂ ସେମାନେ ମଧ୍ୟ ଭାସି ଭାସି ଯାଉଥିବା ସୌନ୍ଦର୍ଯ୍ୟମୟୀ ତରୁଣୀଟିକୁ ଦେଖି ପାରିଲେ । ଧୀର ଗତିରେ ଚାଲୁଥିବା ଗାଡ଼ିରୁ ଆମେମାନେ ମନ୍ତ୍ରମୁଗ୍ଧ ପରି ଚାହିଁ ଥାଉଁ, ଆମ ଆଖି ଆଗରେ ସେହି ଦିବ୍ୟ ସୁନ୍ଦରୀ ତରୁଣୀଟି ଶୂନ୍ୟରେ ମିଳେଇ ଗଲା ।

ଦୁଇ ତିନି ଦିନ ପରେ 'ସମାଜ'ରେ ପ୍ରକାଶ ପାଇଲା, କଟକ-ଭୁବନେଶ୍ୱର ରାସ୍ତାରେ ନିସ୍ତବ୍ଧ ରାତିରେ ଗୋଟିଏ ସୁନ୍ଦରୀ ତରୁଣୀ ରାସ୍ତା କଡ଼ରେ ଠିଆ ହୋଇ ସ୍କୁଟର ଆରୋହୀଙ୍କୁ ଅଟକିବା ପାଇଁ ସୂଚନା ଦେଉଛି । ଆରୋହୀ ତାକୁ ଅସହାୟ ମନେ କରି ପଛ ସିଟ୍‌ରେ ବସାଇ ଆଣୁଛନ୍ତି, କିନ୍ତୁ କିଛି ବାଟ ଆସିଲା ପରେ ତରୁଣୀଟି ଉଭେଇ ଯାଉଛି । ସେହି ସମ୍ବାଦଟି ପଢ଼ି ମୋର ମନେ ହେଲା, ଯେଉଁ ଅଶରୀରୀ ତରୁଣୀଟିକୁ ଆମେ ନିସ୍ତବ୍ଧ ରାତିରେ ହଂସପାଳ ପାଖ ବାଙ୍କରେ ଦେଖିଥିଲୁ; ବୋଧହୁଏ ସେହି ତରୁଣୀଟି ହୋଇଥିବ ।



# ସମ୍ମାନ ସଂବର୍ଦ୍ଧନା

## ଅତିବଡ଼ି ପୁରସ୍କାର

ତା ୨୫.୭.୨୦୧୪ରେ ମୁଁ ଓଡ଼ିଶା ସାହିତ୍ୟ ଏକାଡେମିର ୨୦୧୩ ମସିହା ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ଲାଭ କଲି । ୨୦୧୪ ମସିହା ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ପାଇଲେ । ପ୍ରାୟ ୧୫ଦିନ ପୂର୍ବରୁ ମୋତେ ପ୍ରଥମେ ଏକାଡେମିର ସଭାପତି ଶ୍ରୀ ସାତକଡ଼ି ହୋତା କାର୍ଯ୍ୟନିର୍ବାହୀ କମିଟିର ଏହି ସିଦ୍ଧାନ୍ତ ଜଣାଇ ଥିଲେ । ସମସ୍ତ ସମ୍ବାଦପତ୍ର, ଟି.ଭି., ଆକାଶବାଣୀ ଆଦି ଗଣମାଧ୍ୟମରେ ଏହା ପ୍ରକାଶ ପାଇଲା । ତା ୨୫.୭.୨୦୧୪ ସନ୍ଧ୍ୟାରେ ଭୁବନେଶ୍ୱର ଜୟଦେବ ଭବନଠାରେ ଏକ ମନୋଜ୍ଞ ସଭା ଅନୁଷ୍ଠିତ ହୋଇଥିଲା । ସେଥିରେ ମୋତେ, ଶାନ୍ତନୁ ବାବୁଙ୍କୁ ଓ ଆଉ ୨୦ଜଣ କବିଲେଖକଙ୍କୁ ସଂବର୍ଦ୍ଧିତ କରାଯାଇ ପୁରସ୍କାର ପ୍ରଦାନ କରାଯାଇଥିଲା ।

ଅତିବଡ଼ି ସମ୍ମାନର ପୁରସ୍କାର ରାଶି ଏକଲକ୍ଷ ଟଙ୍କା ଏବଂ ଅନ୍ୟମାନଙ୍କର ପୁରସ୍କାର ରାଶି ୨୦ ହଜାର ଟଙ୍କା ଲେଖାଏଁ ଥିଲା । ପ୍ରଦାନ କରିଥିଲେ ସଂସ୍କୃତି ବିଭାଗ ମନ୍ତ୍ରୀ ମାନ୍ୟବର ଶ୍ରୀ ଅଶୋକ କୁମାର ପଣ୍ଡା । ସଂସ୍କୃତି ବିଭାଗ କମିଶନର ଶ୍ରୀ ଅରବିନ୍ଦ ପାଢ଼ୀ ପ୍ରମୁଖ ଅନ୍ୟ କର୍ମକର୍ତ୍ତାମାନେ ମଧ୍ୟ ଉପସ୍ଥିତ ଥିଲେ । ଏହା ଛଡ଼ା, ଏକାଡେମିଙ୍କ ପକ୍ଷରୁ ସ୍କୁଲ କଲେଜର ପିଲାଙ୍କ ମଧ୍ୟରେ ଯେଉଁ ସବୁ ପ୍ରତିଯୋଗିତା କରାଇଥିଲେ, ସେ ସବୁରେ କୃତିତ୍ୱ ଅର୍ଜନ କରିଥିବା ଛାତ୍ରଛାତ୍ରୀମାନଙ୍କୁ ପୁରସ୍କୃତ କରା ଯାଇଥିଲା । ଏକାଡ଼େମିର ସଂପାଦକ ଶ୍ରୀ ବିଜୟ କୁମାର ନାୟକ ବଡ଼ ସୁନ୍ଦର ଭାବରେ ସ୍ୱାଗତ ଭାଷଣ ଦେଇଥିଲେ ।

ଏକଲକ୍ଷ ଟଙ୍କାର ଚେକ୍ ସହିତ ତାମ୍ରଫଳକ, ମୂଲ୍ୟବାନ ଶାଲ୍ ଓ ଅନ୍ୟାନ୍ୟ ଉପଢୌକନ ମୁଁ ମଂତ୍ରୀ ମହୋଦୟଙ୍କ ହସ୍ତରୁ ଗ୍ରହଣ କଲି । ଜୟଦେବ ଭବନ ସାହିତ୍ୟପ୍ରେମୀ ଜନଗଣଙ୍କ ଉପସ୍ଥିତିରେ ପରିପୂର୍ଣ୍ଣ ହୋଇଥିଲା ଏବଂ ସମାରୋହଟି ଅତ୍ୟନ୍ତ ମନୋଜ୍ଞ ଭାବରେ ସଂପନ୍ନ ହୋଇଥିଲା । ମୁଁ ବହୁ ବନ୍ଧୁ, ଶୁଭେଚ୍ଛୁ ତଥା ଭାଷା ସାହିତ୍ୟପ୍ରେମୀମାନଙ୍କ ଠାରୁ ଅଭିନନ୍ଦନ ବାର୍ତ୍ତା ଫୋନ୍‌ରେ ତଥା ପତ୍ରରେ ପାଇଲି ଏବଂ ଏ ପର୍ଯ୍ୟନ୍ତ ମଧ୍ୟ ପାଉଛି । ଅନେକ ସଂବାଦପତ୍ରର ସାଂବାଦିକମାନେ ମୋ ବିଷୟରେ କିଛି କିଛି ତଥ୍ୟ ପ୍ରକାଶ କରୁଥିଲେ । ଟି.ଭି.ରେ ଏକ ସାକ୍ଷାତ୍‌କାର ମଧ୍ୟ ଉପସ୍ଥାପନ କରାଗଲା ।

ରାଜ୍ୟ ସରକାରଙ୍କର ସାହିତ୍ୟ କ୍ଷେତ୍ରରେ ସର୍ବୋଚ୍ଚ ସମ୍ମାନଟି ଲାଭ କରି ମୋର ଓଡ଼ିଆ ଭାଷା ସାହିତ୍ୟ ସେବା ସାର୍ଥକ ହୋଇଛି ବୋଲି ମୁଁ ମନେ କଲି । କିନ୍ତୁ ସବୁର ଭିତରେ ମୁଁ ଗୋଟାଏ ଅଶ୍ୱସ୍ତି ଅନୁଭବ କରୁଥିଲି ଯେ ମୁଁ ଯେଉଁ ସୁନ୍ଦର ସମାଜର ସ୍ୱପ୍ନ ଦେଖୁଥିଲି ଏବଂ ସେଥିପାଇଁ ଲେଖନୀ ଚାଳନା କରୁଥିଲି, ତାହା ବ୍ୟର୍ଥ ହୋଇଯାଇଛି । ମୁଁ କେବଳ ଗତାନୁଗତିକ ରୀତିରେ ପୁରସ୍କାରଟିଏ ଗ୍ରହଣ କଲି ଏବଂ ଗତାନୁଗତିକ ରୀତିରେ କିଛି ପ୍ରଶଂସା ଲାଭ କଲି ମାତ୍ର ।

## କନିକା ପୂଜ୍ୟପୂଜା ପରିଷଦ ସଂବର୍ଦ୍ଧନା

କନିକା ପୂଜ୍ୟ ପୂଜା ପରିଷଦ ତା ୨୩.୧.୨୦୧୫ ନେତାଜୀ ଜୟନ୍ତୀ ଦିବସରେ ମୋତେ ଓ ଶ୍ରୀ ପ୍ରଫୁଲ୍ଲ ଦାସଙ୍କୁ ସଂବର୍ଦ୍ଧିତ କରିଥିଲେ । ପ୍ରଫୁଲ୍ଲ ବାବୁଙ୍କ ଗାଁ କନିକାର ଜରିସାହି । ବିପ୍ଳବୀ ଓ ବିପ୍ଳବୀ ଲେଖକ ଭାବେ ସେ ସମଗ୍ର ଓଡ଼ିଶାରେ ଜଣାଶୁଣା । ତାଙ୍କୁ ଇମ୍ପା ପକ୍ଷରୁ ଏ ବର୍ଷ ୨୦୧୪ ଶାରଳା ସମ୍ମାନ ପୁରସ୍କାର ପ୍ରଦାନ କରାଯାଇଥିଲା । ମୁଁ ଓଡ଼ିଶା ସାହିତ୍ୟ ଏକାଡେମିର ଅତିବଡ଼ି ଜଗନ୍ନାଥ ଦାସ ସମ୍ମାନ (ସଂକ୍ଷେପରେ ଅତିବଡ଼ୀ ସମ୍ମାନ) ଲାଭ କରିଥିବାରୁ ଏବଂ ସେ ଶାରଳା ସମ୍ମାନ ଲାଭ କରିଥିବାରୁ କନିକାର କବି, ଲେଖକ ଓ ସାହିତ୍ୟପ୍ରେମୀ ଲୋକମାନେ ଆନନ୍ଦରେ ଆମ ଦୁହିଁଙ୍କ ପାଇଁ ସଂବର୍ଦ୍ଧନା ସଭାର ଆୟୋଜନ କରିଥିଲେ ।

ମୋ ଜନ୍ମ ଗ୍ରାମ କନିକାର 'ଆୟତନ' ଗ୍ରାମ । ମୁଁ ଓ ପ୍ରଫୁଲ୍ଲବାବୁ, ଦୁଇଜଣ କନିକା ସନ୍ତାନ, ଦୈବ ଯୋଗତଃ ଏକ ବର୍ଷ ଦୁଇଟି ପୁରସ୍କାର ପାଇଲୁ । ତେଣୁ କନିକାର କବି, ଲେଖକ, ସାହିତ୍ୟପ୍ରେମୀମାନେ ପୂଜ୍ୟପୂଜା ପରିଷଦ ନାମରେ ଏକ ଅନୁଷ୍ଠାନ ଗଢ଼ି ମହା ସମାରୋହରେ ଆମ ଦୁହିଁଙ୍କୁ ସଂବର୍ଦ୍ଧନା ଜଣାଇଲେ । ଉକ୍ତ ସଂବର୍ଦ୍ଧନା ଏପରି ପ୍ରାଣବନ୍ତ ଓ ମମତାଭରା ଥିଲା ଯେ ମୁଁ ବହୁ ସମ୍ମାନ ଲାଭ କରିଥିଲେ ହେଁ ସେଦିନ ସବୁଠାରୁ ଅଧିକ ଆନନ୍ଦ ଅନୁଭବ କଲି ଏବଂ ମୋର ଜୀବନକୁ ଧନ୍ୟ ମନେ

କଲି । ଅତିବଡ଼ୀ ପୁରସ୍କାର ପାଇବା ଦିନ ମଧ ମୁଁ ଏପରି ଆନନ୍ଦ ଅନୁଭବ କରି ନ ଥିଲି ।

କନିକାର ବହୁ ଖ୍ୟାତନାମା, ପ୍ରତିଷ୍ଠିତ ବ୍ୟକ୍ତି ସେଦିନ ସଭାରେ ଉପସ୍ଥିତ ଥିଲେ । ମୋ ବକ୍ତବ୍ୟରେ ମୁଁ ମୋର ପ୍ରିୟ ଜନ୍ମଭୂମି କନିକାର ଗ୍ରାମଗୁଡ଼ିକର ନାମ ସ୍ମରଣ କରି ଭାବାବେଗରେ ଆବିଷ୍ଟ ହୋଇଗଲି । କାରଣ, ସେହି ଗ୍ରାମଗୁଡ଼ିକ ଅତ୍ୟନ୍ତ ଶୋଭାମୟ ଥିଲା ଏବଂ ସେଗୁଡ଼ିକ ସହିତ ମୁଁ ୩୮ ବର୍ଷ କାଳ ଘନିଷ୍ଠ ଭାବେ ଜଡ଼ିତ ଥିଲି । ଚାକିରି କଲା ପରେ ମୁଁ ୩୮ ବର୍ଷ ବୟସରେ ପିଲା ପରିବାରଙ୍କୁ କଟକ ନେଇଥିଲି । ସେ ପର୍ଯ୍ୟନ୍ତ ମୁଁ ବରାବର ଛୁଟିମାନଙ୍କରେ ତଥା ସ୍ୱତନ୍ତ ଛୁଟି ନେଇ ଗ୍ରାମକୁ ଆସୁଥିଲି । ଗ୍ରାମମାନଙ୍କରେ ବୁଲିବାକୁ ମୁଁ ଭାରି ଭଲ ପାଉଥିଲି । ସେସବୁ କଥା ମୋର ମନେ ପଡ଼ିଲା ।

ଉକ୍ତ ସମାରୋହକୁ ନିମନ୍ତିତ ହୋଇ ଅତିଥି ଭାବେ ଦୁଇଜଣ ଯାଇଥିଲେ - ଡକ୍‌ଟର ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ଡକ୍ଟର ରାମଚନ୍ଦ୍ର ବେହେରା । ସାହିତ୍ୟ କ୍ଷେତ୍ରରେ ଦୁହେଁ ଲବ୍ଧପ୍ରତିଷ୍ଠ । ସେମାନଙ୍କର ଉପସ୍ଥିତି ଓ ବକ୍ତବ୍ୟ ସମାରୋହକୁ ଅଧିକ ମନୋଜ୍ଞ କଲା । ରାଜକନିକାର ଏସ୍.ଏନ୍. କଲେଜ ପ୍ରାଙ୍ଗଣରେ ସଭା ଅନୁଷ୍ଠିତ ହୋଇଥିଲା । ଉକ୍ତ କଲେଜର ପ୍ରତିଷ୍ଠା ଯେତେବେଳେ ଆରମ୍ଭ ହେଉଥିଲା, ସେହି ସମୟରେ ମୁଁ ତାହାର ଗଭର୍ଣ୍ଣିଂବଡ଼ିର ସଭ୍ୟ, ସଭାପତି ମଧ ଥିଲି । ସେତେବେଳର ଗଭର୍ଣ୍ଣିଂ ବଡ଼ିର ସଭ୍ୟମାନଙ୍କ ମଧରୁ କେତେକ ସ୍ୱର୍ଗତ ହେଲେଣି । ସଂପାଦକ ଦିବାକର (ଜେନା) ବାବୁ, ସଭ୍ୟ ମଧୁ (ମଧୁସୂଦନ ମିଶ୍ର)ବାବୁ ପ୍ରମୁଖଙ୍କ କଥା ମନେ ପଡ଼ିଲା, ମୁଁ ଅତ୍ୟନ୍ତ ଦୁଃଖ ଓ ବିଷାଦ ଅନୁଭବ କଲି ।

ପରିଷଦ ପକ୍ଷରୁ 'ପ୍ରତିଧ୍ୱନି' ନାମରେ ଏକ ସୁନ୍ଦର, ବଡ଼ ପତ୍ରିକା ପ୍ରକାଶ କରାଯାଇଛି । ସେଥିରେ କେବଳ ପ୍ରଫୁଲ୍ଲ ବାବୁ ଓ ମୁଁ, ଦୁହିଁଙ୍କ ବିଷୟରେ ଲେଖାମାନ ପ୍ରକାଶ ପାଇଛି । କେତେ ସ୍ନେହ, ମମତା ଓ ଆପଣାର ଭାବ ସେହି ଲେଖାଗୁଡ଼ିକରେ ରହିଛି, ତାହା ଭାଷାରେ ବ୍ୟକ୍ତ କରି ହେବନାହିଁ । ବହୁ ଗୁଣୀ, ଜ୍ଞାନୀ, ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ଦ୍ୱାରା ସମାରୋହର ଆୟୋଜନ କରାଯାଇଥିଲା ଏବଂ ସମସ୍ତେ ସଭାରେ ଉପସ୍ଥିତ ଥିଲେ । ସମସ୍ତଙ୍କ ପାଇଁ ମଧାହ୍ନ ଭୋଜନର ସୁବ୍ୟବସ୍ଥା କରାଯାଇଥିଲା । ସେଦିନ ମୋର ଅନୁଭବ ହୋଇଥିଲା ଯେପରି କି ମୁଁ ମୋର ବିଶାଳ ପରିବାର ଲୋକମାନଙ୍କ ମେଳରେ ଥିଲି ।

ବହୁ ଖ୍ୟାତାନାମା ବ୍ୟକ୍ତି - ସର୍ବଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ରବିନାରାୟଣ ଜେନା,

ବଂଶୀଧର ମିଶ୍ର, ବଂଶୀଧର ରାଉତ, ଭାଗୀରଥି ସାମଲ, କଳିପ୍ରସାଦ ନାୟକ, ଧୀରେନ୍ଦ୍ର କୁମାର ବାରିକ, ଶରତଚନ୍ଦ୍ର ପଢ଼ିହାରୀ, ବିପିନ ବିହାରୀ ରାଉତ, ଦୀନବନ୍ଧୁ ରାଉତ, ଦାମୋଦର ଧଳ, ମହେଶ୍ୱର ନନ୍ଦ, ପଦ୍ମଚରଣ ମଲ୍ଲିକ, ହଳଧର ନାୟକ, ମୁରଲୀଧର ନାୟକ, କୃତ୍ତିବାସ ଜେନା, ବିଷ୍ଣୁଚରଣ ବିଶ୍ୱାଳ, ରାମଚନ୍ଦ୍ର ଦାଶ, ରାଜକିଶୋର ବେହେରା, ଧରଣୀଧର ନାୟକ, ଦୋଳଗୋବିନ୍ଦ ନାୟକ, ଦଶରଥ ସେନାପତି, ଅଲେଖଚନ୍ଦ୍ର ନାୟକ, ବୈକୁଣ୍ଠନାଥ ପରିଡ଼ା, ଇଂଜିନିୟର ଶିବନାରାୟଣ ବାରିକ, ଶୈଳେନ୍ଦ୍ର ନାରାୟଣ ସୂତାର, କ୍ଷୀରୋଦଚନ୍ଦ୍ର ରାଉତ, ଦୁର୍ଯ୍ୟୋଧନ ସାମଲ, ଗୋପୀନାଥ ଦାଶ, କପିଳ ମିଶ୍ର, ଅନୁପ କୁମାର ମଲ୍ଲିକ, ଗଣେଶ ପ୍ରସାଦ ଲେଙ୍କା, ଫକୀରଚରଣ ପ୍ରଧାନ, ଉମେଶଚନ୍ଦ୍ର ମଲ୍ଲ, ଅନିରୁଦ୍ଧ ରାଉତ, ଲକ୍ଷ୍ମୀଧର ନାୟକ, ଆଦିସ୍ୟ, ସୁରେଶ ଚନ୍ଦ୍ର ମିଶ୍ର, ବଟକୃଷ୍ଣ ପଣ୍ଡା, ହରେକୃଷ୍ଣ ବାରିକ, ସୁବାସ ଚନ୍ଦ୍ର ରାଉତ, ଅଭିତାଭ କରଣ, ଶ୍ରୀକାନ୍ତ ନାୟକ, ସଂଜୀବ କୁମାର ମହାପାତ୍ର, ସଂଜୀବ କୁମାର ସାମଲ, ରବୀନ୍ଦ୍ରନାଥ ସାମଲ, ଚନ୍ଦ୍ରଶେଖର ଜଗତି, ବିଦ୍ୟାଧର ଜେନା ପ୍ରମୁଖ ଏହି ମନୋଜ୍ଞ ସଂବର୍ଦ୍ଧନା ସଭାର ପୃଷ୍ଠପୋଷକ ତଥା ଆୟୋଜକ ଥିଲେ । ସମସ୍ତଙ୍କୁ ମୁଁ ମୋର ସଶ୍ରଦ୍ଧ ସମ୍ମାନ ଓ କୃତଜ୍ଞତା ଜଣାଇଥିଲି ।

## ବାଳିକା ସ୍କୁଲର ସଂବର୍ଦ୍ଧନା

ରାଜକନିକା ବାଳିକା ହାଇସ୍କୁଲର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ତା ୨୧.୧୨.୨୦୧୪ ଓ ତା ୨୨.୧୨.୨୦୧୪ ରେ ସଂପନ୍ନ ହୋଇଥିଲା । ଏହି ଉତ୍ସବରେ ପ୍ରଥମ ଦିନ ମୋତେ ସଂବର୍ଦ୍ଧିତ କରିବା ପାଇଁ ବିଦ୍ୟାଳୟର ପ୍ରଧାନ ଶିକ୍ଷୟିତ୍ରୀ ଲତିକାମଂଜରୀ ଦାସ ମୋତେ ଅନୁରୋଧ ଜଣାଇଥିଲେ । ମୁଁ ସମ୍ମତି ଦେଇଥିଲି । କିନ୍ତୁ ସେ ସମୟକୁ ଏପରି ଘୋର ଶୀତ ପଡ଼ିଲା ଯେ ମୋର ରାଜକନିକା ଯିବା ସଂଭବ ହେଲା ନାହିଁ । ଦେହ ସବୁବେଳେ ଥୁରୁଥୁରୁ ରହିଲା, ଛାତି ଟିକିଏ ଦରଜ ରହିଲା, ମୁଁ ଯିବା ପାଇଁ ଯେତେ ଇଚ୍ଛା କଲେ ମଧ ଘରୁ ବାହାରି ପାରିଲି ନାହିଁ । ଲତିକାମଂଜରୀ ମୋ ଯିବା ପାଇଁ ସ୍ୱତନ୍ତ୍ର କାର୍ ବ୍ୟବସ୍ଥା କରିଥିଲେ । ତଥାପି ଯିବାକୁ ସାହସ ହେଲା ନାହିଁ । ଉତ୍ସବରେ ମୋ ଅନୁପସ୍ଥିତିରେ ସେ ମୋ ଉଦ୍ଦେଶ୍ୟରେ ଲିଖିତ ମାନପତ୍ରଟି ପାଠ କଲେ । ଉତ୍ସବ ସରିବାର ୪/୫ ଦିନ ପରେ ନିଜେ ମାନପତ୍ର, ଖଣ୍ଡିଏ ମୂଲ୍ୟବାନ୍ ଶାଲ୍, ଭଲ କଲମଟିଏ, ପତ୍ରିକା 'ନୀଳକମଳ' ଓ ପ୍ରାୟ ୩୦୦ ଟଙ୍କାର ଫଳ ଘେନି ମୋ ଘରକୁ ଆସିଲେ ଏବଂ ସେଗୁଡ଼ିକୁ ମୋତେ ପ୍ରଦାନ କଲେ ।

ମାନପତ୍ରଟି ପଢ଼ି ମୁଁ ଅଭିଭୂତ ହୋଇପଡ଼ିଲି । କି ସୁନ୍ଦର ଭାଷା ଓ ଭାବରେ ଲିଖିତ ! କଲମଟିରେ "ସୁବର୍ଣ୍ଣ ଜୟନ୍ତୀ ଉତ୍ସବ, ବାଳିକା ଉଚ୍ଚ ବିଦ୍ୟାଳୟ" ମୁଦ୍ରିତ

ହୋଇଛି । 'ନୀଳକମଳ' ପତ୍ରିକାଟି ପଢ଼ି ମୋର ଆନନ୍ଦର ସୀମା ରହିଲା ନାହିଁ । ବିଦ୍ୟାଳୟଟିର ସ୍ଥାପନଠାରୁ ଆରମ୍ଭ କରି ସମସ୍ତ ବିବରଣୀ ଏଥିରେ ଦିଆଯାଇଛି । ଯେଉଁମାନେ ସ୍ଥାପନ କରିଥିଲେ, ସମସ୍ତେ ମୋର ପ୍ରିୟ ଲୋକ ଥିଲେ । ଦୁଇଜଣଙ୍କ ଛଡ଼ା ସମସ୍ତେ ପରପୁରକୁ ଗଲେଣି । କେବଳ ଦୁଇଜଣ ଇହଧାମରେ ଅଛନ୍ତି - ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଦାସ ଓ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ । ମଧୁସୂଦନ ମିଶ୍ର, କୃଷ୍ଣଚନ୍ଦ୍ର ପରିଡ଼ା, ରମାକାନ୍ତ ବଳ, ଅମର କୁମାର ଦେଓ, ଦୋଳଗୋବିନ୍ଦ ସେଠୀ ପ୍ରମୁଖଙ୍କ ସ୍ମୃତି ମୋ ମାନସପଟରେ ଜାଗରୂକ ହୋଇଉଠିଲା । ଏମାନେ ସମସ୍ତେ ଉଚ୍ଚ ଆଦର୍ଶର ଲୋକ ଥିଲେ । ମୁଁ ଉତ୍ସବକୁ ଯାଇ ପାରିଥିଲେ ଏମାନଙ୍କ ସଂବନ୍ଧରେ କିଛି ସ୍ମୃତିଚାରଣ କରି ଧନ୍ୟ ହୋଇଥାଆନ୍ତି । ଲତିକାମଂଜରୀ ଓ ଅନ୍ୟ ଶିକ୍ଷୟିତ୍ରୀମାନେ ମିଶି ବିଦ୍ୟାଳୟଟିର ସୁବର୍ଣ୍ଣ ଜୟନ୍ତୀ ସମାରୋହ ସୁଚାରୁ ରୂପେ ସଂପନ୍ନ କଲେ, ଏହା କନିକା ପକ୍ଷେ କମ୍ ଗୌରବର ବିଷୟ ନୁହେଁ । ମୋ ପ୍ରତି ଲତିକାମଂଜରୀ ଯେଉଁ ସମ୍ମାନ ଓ ନମ୍ରଭାବ ପ୍ରଦର୍ଶନ କଲେ, ତାହା ମୁଁ ଭୁଲି ପାରିବି ନାହିଁ । ତାଙ୍କ ଯିବା ପରେ ମୁଁ କିଛି ସମୟ ଭାବି ଲାଗିଲି - ମୋ ଗାଁରେ ଯେଉଁ ବାଳିକା ବିଦ୍ୟାଳୟଟି ସ୍ଥାପିତ ହୋଇଛି, ତାହାର ସୁବର୍ଣ୍ଣ ଜୟନ୍ତୀର ଦିନ ସତେ ଆସିବ ! ୨୫ବର୍ଷ ହୋଇଗଲା ତାର ଜନ୍ମ ହେବାର, କେହି ତ ରଜତ ଜୟନ୍ତୀ କଥାଟିଏ ମନରେ ଉଠାଉ ନାହାନ୍ତି । କାରଣ, ବାଳିକା ସ୍କୁଲଟିଏ ବୋଲି ଏ ପର୍ଯ୍ୟନ୍ତ ନିରୀହ, ନିସ୍ତେଜ ଅବସ୍ଥାରେ ରହିଛି । ଏ ଅବସ୍ଥା ଅପସରିଯିବ କି ନାହିଁ, ଦିନେ ସୁବର୍ଣ୍ଣ ଜୟନ୍ତୀ ସମାରୋହ ଅନୁଷ୍ଠିତ ହେବ କି ନାହିଁ, ଈଶ୍ୱର ଜାଣନ୍ତି ।

## ପ୍ରଜ୍ଞାନାନନ୍ଦଜୀଙ୍କ ଗୁରୁ ପୂଜନ

ତା ୨୫.୧.୨୦୧୫ ଦିନ ମୁଁ ତରୁଣ ସନ୍ଥ ଶ୍ରୀ ପ୍ରଜ୍ଞାନାନନ୍ଦଜୀଙ୍କ ଦ୍ୱାରା ଆୟୋଜିତ ଗୁରୁପୂଜନ ଉତ୍ସବକୁ ନିମନ୍ତ୍ରିତ ହୋଇ ଯାଇଥିଲି । ପରମହଂସ ପ୍ରଜ୍ଞାନାନନ୍ଦଜୀଙ୍କ ପୂର୍ବ ନାମ ଥିଲା ଶ୍ରୀ ତ୍ରିଲୋକୀ ଦାଶ । ସେ ରେଭେନ୍‌ସା କଲେଜରେ ଅର୍ଥନୀତି ଅଧ୍ୟାପକ ଥିଲେ ଏବଂ ପରମହଂସ ହରିହରାନନ୍ଦଜୀଙ୍କର ଶିଷ୍ୟତ୍ୱ ଗ୍ରହଣ କରି ସନ୍ନ୍ୟାସୀ ହୋଇଥିଲେ । ପ୍ରାଥମିକ ବିଦ୍ୟାଳୟରୁ ଆରମ୍ଭ କରି କଲେଜ ଶିକ୍ଷା ସମାପ୍ତି ପର୍ଯ୍ୟନ୍ତ ସେ ଯେଉଁ ଶିକ୍ଷକ ଓ ଅଧ୍ୟାପକମାନଙ୍କ ପାଖରେ ଶିକ୍ଷାଲାଭ କରିଥିଲେ ଏବଂ ଯେଉଁମାନଙ୍କଠାରୁ ଶିକ୍ଷାଲାଭ ନ କରିଥିଲେ ମଧ୍ୟ ସଂପର୍କରେ ଆସିଥିଲେ, ସେହି ଗୁରୁମାନଙ୍କୁ ସାଦରେ ନିମନ୍ତ୍ରଣ କରି ସେମାନଙ୍କୁ ପୂଜା କରିବାର ଉତ୍ସବ ଆୟୋଜନ କରିଥିଲେ । ସମସ୍ତଙ୍କୁ ନିଜ ନିଜ ଘରୁ କାର୍ ଯୋଗେ ନେବାର ସୁବ୍ୟବସ୍ଥା କରିଥିଲେ । ମୁଁ ମୋର ଛାତ୍ର ପ୍ରଫେସର ବୈଷ୍ଣବ ଚରଣ ସାମଲଙ୍କ ସହ ଏକ କାରରେ ଯାଇଥିଲି ।

ପଟ୍ଟାମୁଣ୍ଡାଇରୁ ଚଉଦକୁଳାଟ ରାସ୍ତାରେ ଗଲେ ଅଗୁଆ କଦଳୀବଣ ଗ୍ରାମ ନିକଟରେ ସ୍ୱାମୀ ହରିହରାନନ୍ଦଜୀଙ୍କ ନାମରେ ନାମିତ ଏକ ବାଳାଶ୍ରମ ଅଛି । ସେହିଠାରେ ଗୁରୁପୂଜନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଗୁରୁମାନଙ୍କୁ ପ୍ରଜ୍ଞାନାନନ୍ଦଜୀ ଯେପରି ଭାବରେ ସାଷ୍ଟାଙ୍ଗ ପ୍ରଣାମ କଲେ, ପାଦ ସ୍ପର୍ଶ କରି, ମସ୍ତକରେ ଫୁଲ ଚନ୍ଦନ ଦେଇ, ମୂଲ୍ୟବାନ ଶାଲ୍ ଖଣ୍ଡିଏ ଖଣ୍ଡିଏ ତଥା ଅନ୍ୟାନ୍ୟ ସାମଗ୍ରୀ ଉପଢୌକନ ସ୍ୱରୂପ ଅର୍ପଣ କରି ଭକ୍ତି ଓ ସମ୍ମାନ ଜଣାଇଲେ, ସେଥିରେ ଆମେ ସମସ୍ତେ ଆବେଗରେ ଅଭିଭୂତ ହୋଇପଡ଼ିଲୁ । ଅନୁଷ୍ଠାନ ପକ୍ଷରୁ ପ୍ରକାଶିତ ହୋଇଥିବା 'ଆଚାର୍ଯ୍ୟଦେବୋ ଭବ' ନାମକ ଏକ ବଡ଼ ଗ୍ରନ୍ଥକୁ ପ୍ରଜ୍ଞାନାନନ୍ଦଜୀ ମୋ ହସ୍ତରେ ଉନ୍‌ମୋଚିତ କରାଇଲେ । ଉକ୍ତ ଗ୍ରନ୍ଥରେ ତାଙ୍କର ଶିକ୍ଷାଗୁରୁମାନଙ୍କର ତଥା ଗୁରୁ ସ୍ଥାନୀୟ ବ୍ୟକ୍ତିମାନଙ୍କର ଶିକ୍ଷା ସଂପର୍କୀୟ ଲେଖା ସନ୍ନିବେଶିତ ହୋଇଛି । ହରିହରାନନ୍ଦଜୀଙ୍କ ନାମରେ ନାମିତ ବାଳାଶ୍ରମଟି ପ୍ରଶସ୍ତ ପରିସରରେ ମୁକ୍ତ ପ୍ରାକୃତିକ ପରିବେଶରେ ଗଢ଼ା ଯାଇଛି । ଏଠାରେ ବହୁ ଅନାଥ, ଦରିଦ୍ର ବାଳକବାଳିକା ତଥା ଶିଶୁମାନଙ୍କୁ ଶିକ୍ଷା ଦିଆଯାଉଛି । ସମସ୍ତେ ଛାତ୍ରାବାସରେ ରହୁଛନ୍ତି ଏବଂ ସମସ୍ତଙ୍କୁ ଆଦର ସହକାରେ ପାଳନ କରାଯାଉଛି । ଗୁରୁପୂଜନ ଉତ୍ସବରେ ବାଳାଶ୍ରମର ପିଲାମାନେ ବଡ଼ ସୁନ୍ଦର ଭାବରେ ଗୀତ, ନୃତ୍ୟ, ବାଦ୍ୟ ଆଦି ପରିବେଷଣ କରି ସମସ୍ତଙ୍କୁ ମୁଗ୍ଧ କରିଥିଲେ । ପାଖଆଖ ଗ୍ରାମମାନଙ୍କରୁ ନରନାରୀମାନେ ବହୁ ସଂଖ୍ୟାରେ ଉତ୍ସବରେ ଯୋଗ ଦେଇଥିଲେ । ସମସ୍ତଙ୍କ ପାଇଁ ଭୋଜନର ସୁବନ୍ଦୋବସ୍ତ କରାଯାଇଥିଲା ।

ଏ ଯୁଗରେ ଜଣେ ଜ୍ଞାନୀ ସନ୍ଥ, ଯେ କି ବହୁ ଲୋକଙ୍କର ଗୁରୁ ରୂପେ ପ୍ରତିଷ୍ଠା ଲାଭ କରିଛନ୍ତି, ସେ ତାଙ୍କର ଶିକ୍ଷାଗୁରୁମାନଙ୍କୁ ଏପରି ଭକ୍ତିପୂତ ଭାବରେ ପୂଜା କରିବା ମୁଁ ପ୍ରଥମ କରି ଦେଖିଲି । ମୁଁ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ ସେ ଉକ୍ତ କଲେଜରେ ପଢୁଥିଲେ । ମୁଁ ଯଦିଓ ଅସୁସ୍ଥତା ଭିତରେ ଯାଇଥିଲି, କିନ୍ତୁ ତାଙ୍କର ବିନୀତ, ପ୍ରଣତ ବ୍ୟବହାରରେ ତଥା ଉତ୍ସବ ଦର୍ଶନରେ ଆନନ୍ଦ ଲାଭ କରି ସତେଜତା ଅନୁଭବ କଲି । ପ୍ରକୃତରେ ଶିକ୍ଷାରେ ଯଦି ଗୁରୁମାନଙ୍କର ଛାତ୍ରଛାତ୍ରୀମାନଙ୍କ ପ୍ରତି ସ୍ନେହ ମମତା ନ ରହେ ଏବଂ ଛାତ୍ରଛାତ୍ରୀମାନଙ୍କର ଯଦି ଗୁରୁମାନଙ୍କ ପ୍ରତି ଭକ୍ତିଭାବ ନ ରହେ, ତେବେ ସେଭଳି ଶିକ୍ଷା ଦ୍ୱାରା କିଛି ଉନ୍ନତି ହୁଏ ନାହିଁ କି ସୁଖ ଶାନ୍ତି ମିଳେ ନାହିଁ । ପୂର୍ବ କାଳରେ ଆମ ଦେଶରେ ଯେଉଁ ଗୁରୁକୁଳ ଶିକ୍ଷା ଥିଲା ଏବଂ ଶିକ୍ଷାରେ ନୈତିକତାର ସ୍ଥାନ ପ୍ରଥମ ଥିଲା, - ତାହାକୁ ପ୍ରଜ୍ଞାନାନନ୍ଦଜୀଙ୍କ ଗୁରୁପୂଜନ ଉତ୍ସବ ପୁନରୁଜ୍ଜୀବିତ କରୁ, ଏହି କାମନା ପୋଷଣ କରି ମୁଁ ସେଠାରୁ ପ୍ରତ୍ୟାବର୍ତ୍ତନ କଲି ।

## ଶ୍ରୀବଳଦେବ ସମ୍ମାନ

୨୦୧୫ ଅପ୍ରେଲ ୨୧ ତାରିଖ ଅକ୍ଷୟ ତୃତୀୟା ଦିନ କେନ୍ଦ୍ରାପଡ଼ା ଜିଲ୍ଲା ସାହିତ୍ୟ ପରିଷଦଙ୍କ ପକ୍ଷରୁ ମୋତେ ଶ୍ରୀ ବଳଦେବ ସମ୍ମାନ ପ୍ରଦାନ କରାଯାଇଥିଲା । କେନ୍ଦ୍ରାପଡ଼ା ସହରର ଗୋପଛକ ନିକଟରେ ଗାଇଡ୍ କଲେଜରେ ଏକ ମନୋଜ୍ଞ ସଭା ଅନୁଷ୍ଠିତ ହୋଇଥିଲା । ସଭାପତିତ୍ୱ କରିଥିଲେ ଶ୍ରୀ ନନ୍ଦକିଶୋର ପରିଡ଼ା ଏବଂ ମୁଖ୍ୟ ଅତିଥି ହୋଇଥିଲେ ଡକ୍ଟର ରାମଚନ୍ଦ୍ର ବେହେରା । ମୋତେ ଦଶହଜାର ଟଙ୍କା, ମୂଲ୍ୟବାନ ସାଲ ଓ ଅନ୍ୟାନ୍ୟ ଉପଢୌକନ ସହିତ ମାନପତ୍ର ପ୍ରଦାନ କରାଯାଇଥିଲା । ସମ୍ବର୍ଦ୍ଧନାର ରୀତି ଓ ଆନ୍ତରିକତା ଏଭଳି ଥିଲା ଯେ ମୁଁ ଆନନ୍ଦରେ ଆତ୍ମହରା ହୋଇପଡ଼ିଥିଲି । ଡକ୍ଟର ବାସୁଦେବ ଦାସଙ୍କୁ ତୁଳସୀ ସମ୍ମାନ ପ୍ରଦାନ କରାଯାଇଥିଲା । ତାଙ୍କୁ ଟ ୫୦୦୦/-, ସାଲ୍, ଅନ୍ୟାନ୍ୟ ଉପଢୌକନ ମଧ୍ୟ ଦିଆଯାଇଥିଲା । ଗାଳ୍ପିକ ସଂଜୟ ବାଗ୍, କବି ଗାୟତ୍ରୀବାଳା ପଣ୍ଡା, ଗବେଷକ ଡକ୍ଟର ହରିଶଚନ୍ଦ୍ର ପୃଷ୍ଟି ଓ ଡକ୍ଟର ସଂଗ୍ରାମ ଜେନା ମଧ୍ୟ ସମ୍ବର୍ଦ୍ଧିତ ହୋଇଥିଲେ । କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ବହୁ କବି, ଲେଖକ ଓ ସାହିତ୍ୟପ୍ରେମୀ ଯୋଗ ଦେଇଥିଲେ । ସମସ୍ତଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ହୋଇଥିଲା । ଏ ଭଳି ଭବ୍ୟ ସଂବର୍ଦ୍ଧନା ଉତ୍ସବ, ଯାହା କି ସ୍ନେହଶ୍ରଦ୍ଧାମମତାରେ ପରିପୂର୍ଣ୍ଣ, ସାହିତ୍ୟ କ୍ଷେତ୍ରରେ ବିରଳ । ପ୍ରଭୁ ଶ୍ରୀ ବଳଦେବଙ୍କ କୃପାରୁ ଏଭଳି ହୋଇପାରିଥିଲା ବୋଲି ମୋର ଅନୁଭବ ।

## ଶିକ୍ଷାବିତ୍ ସମ୍ମାନ

ତା ୧୯.୪.୨୦୧୫ ରବିବାର ଦିନ କଟକ ଶ୍ରୀରାମଚନ୍ଦ୍ର ଭବନରେ 'ପ୍ରଫେସର ଡକ୍ଟର ଜଗମୋହନ ରାଠୋର ଶିକ୍ଷାବିତ୍ ସମ୍ମାନ' ମୋତେ ପ୍ରଦାନ କରାଯାଇଥିଲା । ଏଥିପାଇଁ ସମ୍ମାନର ପ୍ରତୀକ ସ୍ୱରୂପ ତିନି ହଜାର ଟଙ୍କା, ସାଲ୍ ଓ ଅନ୍ୟାନ୍ୟ ଉପଢୌକନ ମୋତେ ଅର୍ପଣ କରାଯାଇଥିଲା । ମୁଁ ବହୁବର୍ଷ ପରେ ଜଗମୋହନ ରାଠୋରଙ୍କୁ ଦେଖିଲି ଏବଂ ଦେଖି ବିଚଳିତ ହୋଇପଡ଼ିଲି । କାରଣ ମୁଁ କଟକ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଶିକ୍ଷକ ଥିଲାବେଳେ ରାଠୋର ବାବୁ ସେହି ସ୍କୁଲରେ ଶିକ୍ଷକ ଥିଲେ । ବିଜ୍ଞାନ ଓ ଗଣିତରେ ସେ ଧୁରୀଣ ଥିଲେ । ସେତେବେଳେ ସ୍କୁଲରେ ତାଙ୍କର ବହୁତ ସୁନାମ ଥିଲା । ତାଙ୍କ ଚେହେରା ତେଜସ୍ୱୀ ତଥା ସ୍ଫୂର୍ତ୍ତିମନ୍ତ ଥିଲା । କିନ୍ତୁ ସମୟ ସ୍ରୋତରେ ସେ ଏଭଳି ନିସ୍ତେଜ ଓ ଅସ୍ପଷ୍ଟ ବଚନ ହୋଇଯାଉଛନ୍ତି ଯେ ମୁଁ ଯଦିଓ ତାଙ୍କ ଭଳି ଅବସ୍ଥା ପ୍ରାପ୍ତ ହୋଇଛି, ତଥାପି ତାଙ୍କ ପରିବର୍ତ୍ତନକୁ ମୁଁ ବିଶ୍ୱାସ କରି ପାରିଲି ନାହିଁ । ତାଙ୍କୁ ଭଲ ପାଉଥିବା ଲୋକଙ୍କ ଦ୍ୱାରା ଶ୍ରୀରାମଚନ୍ଦ୍ର ଭବନ ପରିପୂର୍ଣ୍ଣ ହୋଇଥିଲା । ସଭାରେ

ସଭାପତିତ୍ୱ କରିଥିଲେ ବରିଷ୍ଠ ସାମ୍ବାଦିକ ଶ୍ରୀ ଅରୁଣ କୁମାର ପଣ୍ଡା ଓ ଅତିଥି ହୋଇଥିଲେ ଶ୍ରୀ ଅନାଦି ସାହୁ, ଡକ୍ଟର ବିଜୟାନନ୍ଦ ସିଂହ, ଡକ୍ଟର ଗୋପାଳ ଚନ୍ଦ୍ର କର ଓ ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ । ଦୁଇଜଣ ସ୍କୁଲ ଶିକ୍ଷକଙ୍କୁ ମଧ୍ୟ ଶିକ୍ଷାବିତ୍ ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ମୋ ଜୀବନରେ ମୁଁ ଅନେକ ସଭା ସମିତିରେ ଯୋଗ ଦେଇଛି । ସେଗୁଡ଼ିକ ମୋତେ ଖୁବ୍ ରମଣୀୟ ବୋଧ ହୋଇଥିଲା । ପ୍ରସିଦ୍ଧ ସମାଜବାଦୀ ଜନସେବୀ ସ୍ୱର୍ଗତ ବିଶ୍ୱନାଥ ପଶାୟତଙ୍କ ଶତବାର୍ଷିକୀ ଉପଲକ୍ଷେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ଯେଉଁ ସଭା ହୋଇଥିଲା, ଯେଉଁଥିରେ କି ସିକିମ୍ ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ଉଦ୍‌ଘାଟକ ହୋଇଥିଲେ, ସେଥିରେ ମୁଁ ଅତିଥି ଭାବେ ଯୋଗ ଦେଇଥିଲି ଏବଂ ବିଶ୍ୱନାଥ ପଶାୟତଙ୍କ ସମ୍ବନ୍ଧରେ ଏକ ପ୍ରବନ୍ଧ ପାଠ କରିଥିଲି । ମୁଁ ରେଭେନ୍‌ସା କଲିଜିଏଟ୍‌ରେ ଶିକ୍ଷକ ଥିଲାବେଳେ ବିଶ୍ୱନାଥ ପଶାୟତଙ୍କୁ ବହୁବାର ଦେଖିଥିଲି ଓ ତାଙ୍କ ଗୁଣାବଳୀ ଜାଣିଥିଲି । ତାଙ୍କ ପୁତ୍ର ସୁପ୍ରିମକୋର୍ଟର ପୂର୍ବତନ ବିଚାରପତି ଡକ୍ଟର ଅରିଜିତ୍ ପଶାୟତ କଲିଜିଏଟ୍ ସ୍କୁଲରେ ମୋର ଛାତ୍ର ଥିଲେ । ସେ ସ୍କୁଲ ସ୍ମୃତିଚାରଣ କରି କାନ୍ଦି ପକାଇଥିଲେ । ମୁଁ ମଧ୍ୟ ଅଶ୍ରୁ ସମ୍ବରଣ କରିପାରି ନ ଥିଲି ।

ଶ୍ରୀ ଶୁଭେନ୍ଦୁ ମୋହନ ଶ୍ରୀଚନ୍ଦନ ସିଂହଙ୍କର ଆତ୍ମକାହାଣୀ 'ମୁଁ, ମୋ ମାତୃଭାଷା, ମୋ ଜୀବନ' ପୁସ୍ତକକୁ ମୁଁ ଶ୍ରୀରାମଚନ୍ଦ୍ର ଭବନରେ ଉନ୍ମୋଚନ କରିଥିଲି । ଶ୍ରୀଚନ୍ଦନ ବାବୁ ବହୁଗୁଣରେ ପରିପୂର୍ଣ୍ଣ, ଧୀରସ୍ଥିର ତଥା ମିଷ୍ଟଭାଷୀ । ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ବିପୁଳ ଅବଦାନ ରହିଛି । ତାଙ୍କ ଆତ୍ମକାହାଣୀଟି ପଢ଼ି ମୁଁ ମୁଗ୍ଧ ହୋଇଯାଇଥିଲି । ତାଙ୍କ ପୁସ୍ତକ ଉନ୍ମୋଚନ ଉତ୍ସବ ଶ୍ରୀରାମଚନ୍ଦ୍ର ଭବନରେ ସାଫଲ୍ୟମଣ୍ଡିତ ହୋଇଥିଲା ।

ଡକ୍ଟର ରତ୍ନାକର ଚଇନିଙ୍କ ଆତ୍ମଚରିତ 'ଜୀବନ କମାରଶାଳ' ପୁସ୍ତକ ମୁଁ ଉନ୍ମୋଚନ କରିଥିଲି । ଶ୍ରୀରାମଚନ୍ଦ୍ର ଭବନରେ ସେଥିପାଇଁ ଏକ ସଭା ଅନୁଷ୍ଠିତ ହୋଇଥିଲା ଏବଂ ସଭାରେ ବହୁ ଲୋକ ଉପସ୍ଥିତ ଥିଲେ । ରତ୍ନାକର ରେଭେନ୍‌ସା କଲେଜରେ ଓଡ଼ିଆ ଏମ୍.ଏ.ରେ ମୋର ଛାତ୍ର ଥିଲେ । ତାଙ୍କ ଜୀବନର ଘଟଣାବଳୀ ପଢ଼ି ମୁଁ ଅନେକ କଥା ଜାଣିବାକୁ ପାଇଥିଲି, କିନ୍ତୁ ଶେଷରେ ଗୋଟିଏ ଘଟଣା ପଢ଼ି ବହୁତ ଦୁଃଖ ଅନୁଭବ କରିଥିଲି ।

ଟାଙ୍ଗୀ ଭଗତପୁର ହାଇସ୍କୁଲ ପ୍ରାଙ୍ଗଣରେ 'ଉତ୍କଳ ଗ୍ରାମ ସ୍ୱରାଜ' ଅନୁଷ୍ଠାନ ପକ୍ଷରୁ ଗଜପତି କୃଷ୍ଣଚନ୍ଦ୍ର ଦେବଙ୍କର ଏକ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥିଲା ।

ପ୍ରତିମୂର୍ତ୍ତିଟିକୁ ମୁଁ ଉଦ୍‌ଘାଟନ କରିଥିଲି । ରାଜ୍ୟସଭା ସାଂସଦ ଶ୍ରୀ ବୈଷ୍ଣବ ଚରଣ ପରିଡ଼ା ଓ ପ୍ରଫେସର ଡକ୍ଟର କୃଷ୍ଣଚରଣ ବେହେରା ଅତିଥି ଭାବେ ଯୋଗ ଦେଇଥିଲେ । 'ଉତ୍କଳ ଗ୍ରାମ ସ୍ୱରାଜ'ର ପ୍ରତିଷ୍ଠାତା ଶ୍ରୀ ବ୍ରହ୍ମାନନ୍ଦ ମହାନ୍ତିଙ୍କର ଏହି ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । ସେ ଏହିଭଳି ବରପୁତ୍ରମାନଙ୍କର ପ୍ରତିମୂର୍ତ୍ତି ବିଭିନ୍ନ ସ୍ଥାନରେ ସ୍ଥାପନ କରି ସେମାନଙ୍କର ଅବଦାନ ସଂପର୍କରେ ଲୋକଙ୍କୁ ଅବହିତ କରୁଛନ୍ତି ।

ଉତ୍କଳ ସାହିତ୍ୟ ସମାଜର ୨୦୧୫ ବାର୍ଷିକ ଉତ୍ସବରେ ମୁଁ ଉଦ୍‌ଘାଟକ ଭାବେ ଯୋଗ ଦେଇଥିଲି ଏବଂ ପ୍ରଦୀପ ପ୍ରଜ୍ୱଳନ କରି ମୋର ଅଭିଭାଷଣ ପ୍ରଦାନ କରିଥିଲି । ସଭାରେ ବହୁ କବି, ଲେଖକ ଓ ସାହିତ୍ୟପ୍ରେମୀ ଉପସ୍ଥିତ ଥିଲେ । ମୋ ଅଭିଭାଷଣର ସାରମର୍ମ ଥିଲା – ସ୍କୁଲ ଶିକ୍ଷାରୁ ଓଡ଼ିଆ ମାଧ୍ୟମ ଯେପରି ଦ୍ରୁତ ଗତିରେ ଉଠିଯାଉଛି ଏବଂ ତଦ୍ୱାରା ଓଡ଼ିଆ ଭାଷାର ଲିଖନ ପଠନ ଶିକ୍ଷା ପିଲାମାନେ ପାଇ ପାରୁନାହାନ୍ତି, ଆଉ ମଧ୍ୟ ଅଭିଭାବକମାନଙ୍କ ମନରେ ଓଡ଼ିଆ ଭାଷାର ଅଦରକାରିତା ଧାରଣା ସୃଷ୍ଟି ହେଉଛି, ସେଥିପ୍ରତି ଧ୍ୟାନ ଦେବା ଓ ପ୍ରତିକାର ଚିନ୍ତା କରିବା ନିତାନ୍ତ ଆବଶ୍ୟକ । ଆଉ ମଧ୍ୟ ଦର୍ଶାଇଥିଲି ଯେ ସମସ୍ତ ପ୍ରକାର ଜ୍ଞାନବିଜ୍ଞାନର ଅଭିବ୍ୟକ୍ତି ପାଇଁ ଓଡ଼ିଆ ସର୍ବାଧିକ ଉପଯୁକ୍ତ ଭାଷା ।

ପ୍ରତିବର୍ଷ ଭଳି ୨୦୧୫ ବିଷୁବ ସଂକ୍ରାନ୍ତିରେ (ତା ୧୪.୪.୨୦୧୫) ଉଦୟଭାନୁ ସାହିତ୍ୟ ସଂସଦର ଏକ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାର ବୈଶିଷ୍ଟ୍ୟ ଥିଲା ଯେ ଏଥିରେ ସଂସଦର ମୁଖ୍ୟ ଉପଦେଷ୍ଟା ଶ୍ରୀଯୁକ୍ତ ଉଦୟ ନାଥ ମିଶ୍ରଙ୍କୁ ତାଙ୍କର ଶତତମ ବର୍ଷ ପୂର୍ତ୍ତି ଉପଲକ୍ଷେ ଶ୍ରଦ୍ଧା ସମ୍ମାନପୂର୍ଣ୍ଣ ସଂବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଆମେ ୧୬ ବର୍ଷ ତଳେ ଯେତେବେଳେ ଉଦୟଭାନୁ ସାହିତ୍ୟ ସଂସଦ ଗଠନ କରିଥିଲୁ, ଏହାର ନାମକରଣରେ 'ଉଦୟ' ଶବ୍ଦଟି ରଖିଥିଲୁ । ଉଦୟନାଥ ବାବୁ ଆମ ସମୟରେ ଜଣେ ପ୍ରସିଦ୍ଧ ନାଟ୍ୟକାର ଥିଲେ ଏବଂ ସାହିତ୍ୟର ଅନ୍ୟାନ୍ୟ ଦିଗରେ ମଧ୍ୟ ଲେଖନୀ ଚାଳନା କରିଥିଲେ । ସେ ଖପୁରିଆ ଅଞ୍ଚଳରେ ରହୁଥିବାରୁ ଏବଂ ଆମ ସାହିତ୍ୟ ସଂସଦଟି ଖପୁରିଆ ଅଞ୍ଚଳରେ ହୋଇଥିବାରୁ ମୁଁ 'ଉଦୟ' ଶବ୍ଦଟି ଗ୍ରହଣ କରିବାକୁ ପ୍ରସ୍ତାବ ଦେଇଥିଲି । ଅଧ୍ୟାପିକା ଡକ୍ଟର ସଂଧ୍ୟାରାଣୀ ସିଂହ ସେଥିରେ 'ଭାନୁ' ଶବ୍ଦଟି ଯୋଡ଼ି 'ଉଦୟଭାନୁ ସାହିତ୍ୟ ସଂସଦ' ନାମ କରିବାକୁ ପ୍ରସ୍ତାବ ଦେଇଥିଲେ । ତାହା ସର୍ବ ସମ୍ମତିକ୍ରମେ ଅନୁମୋଦିତ ହୋଇଥିଲା ।

ପ୍ରକୃତରେ ଏହି ସଂସଦର ବିକାଶ ଘଟିଥିଲା ମୁଖ୍ୟତଃ ଦୁଇଜଣଙ୍କର ପ୍ରଚେଷ୍ଟା ଯୋଗୁ । ସେ ଦୁଇଜଣ ଥିଲେ ସେ ସମୟର ଖପୁରିଆ ଶିକ୍ଷୋଦ୍ୟୋଗୀ ସଂଘର ସେକ୍ରେଟାରି

ଶ୍ରୀ ସତ୍ୟ ସ୍ୱାଇଁ ଏବଂ ଅଧ୍ୟାପିକା ଡକ୍ଟର ସଂଧ୍ୟାରାଣୀ ସିଂହ । ସତ୍ୟ ବାବୁ ତାଙ୍କ ସଂଘ ଭବନରେ ସଂସଦର ସଭାସମିତି କରିବାର ବ୍ୟବସ୍ଥା କରି ଦେଇଥିଲେ । ସଂଧ୍ୟା ସଂପାଦିକା ଭାବରେ ଖୁବ୍ ଭଲଭାବେ କବି, ଲେଖକ ତଥା ସାହିତ୍ୟପ୍ରେମୀମାନଙ୍କର ସଭା ଆୟୋଜନ କରୁଥିଲେ । ମୋତେ ସଂସଦର ସ୍ଥାୟୀ ସଭାପତି କରାଯାଇଥିଲା । ହାୟ ! ସତ୍ୟ ସ୍ୱାଇଁ ଓ ସଂଧ୍ୟାରାଣୀ ସିଂହ ଆଉ ଇହଜଗତରେ ନାହାନ୍ତି । ଉଦୟନାଥ ବାବୁଙ୍କୁ ସଂବର୍ଦ୍ଧିତ କରି ମୁଁ ମୋର ଅଶୀତିପର ଜରାଜୀର୍ଣ୍ଣ ଜୀବନକୁ ଧନ୍ୟ ମନେ କରିଥିଲି ।

## ଅନ୍ୟାନ୍ୟ ସମ୍ମାନ ସଂବର୍ଦ୍ଧନା

ମୁଁ ବହୁ ସାହିତ୍ୟ ସଂସ୍କୃତି ସଂସଦ, ପରିଷଦ ବା ଅନୁଷ୍ଠାନମାନଙ୍କ ଠାରୁ ସମ୍ମାନ ସଂବର୍ଦ୍ଧନା ପାଇଛି । ସେଥିପାଇଁ ମୁଁ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି । ସେମାନେ ଯେ ମୋତେ ସାଦରେ ନେଇ ଅର୍ଥ ବା ଉପଢୌକନାଦି ଦେଇ ଏବଂ ମୋର ପ୍ରଶସ୍ତିଗାନ କରି ସମ୍ମାନ ଜଣାଇଲେ, ଏଥିରେ ମୁଁ କ୍ଷଣିକ ଆନନ୍ଦ ଅନୁଭବ କଲି ସତ୍ୟ, କିନ୍ତୁ ଅନ୍ତରରେ ଉପଲବ୍ଧି କରୁଥିଲି ଯେ ଏ ବ୍ୟାପାର ମୂଲ୍ୟହୀନ । ଏଭଳି ଭାବରେ ସମ୍ମାନିତ ହେଉଥିବା ବ୍ୟକ୍ତିର ଗୌରବ ବଢ଼େ ନାହିଁ । ପୂର୍ବରୁ ଏଭଳି ଧାରା ନ ଥିଲା । କବି, ଲେଖକମାନଙ୍କୁ ସମ୍ମାନିତ ବା ସଂବର୍ଦ୍ଧିତ କରାଯାଉ ନ ଥିଲା । ଏହି ଧାରା ଏବେ ଓଡ଼ିଶାରେ ବେଶୀ ଦେଖା ଦେଇଛି । କାରଣ, ଓଡ଼ିଶାରେ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଆଦର ଖୁବ୍ କମି ଯାଇଛି ।

ସମ୍ମାନ ସଂବର୍ଦ୍ଧନା ପ୍ରଦାନ ଭାଷା ସାହିତ୍ୟର ପତନର ପରିଚୟ । ମୁଁ କାହିଁକି କାହା ମନରେ ଦୁଃଖ ଦେବି, ଏଇଆ ଭାବି ସ୍ୱୀକୃତି ପ୍ରଦାନ କରିଥିଲି ଏବଂ ଯେଉଁମାନେ ଉଣା ଅଧିକେ ଅର୍ଥ ପ୍ରଦାନ କରିଥିଲେ; ସେହି ଅର୍ଥକୁ କାଗଜ କଲମ କିଣା, ଡି.ଟି.ପି. କରାଇବା ବା କାହାଦ୍ୱାରା ଭଲ ଅକ୍ଷରରେ ଉତାରି ପାଣ୍ଡୁଲିପି ପ୍ରସ୍ତୁତ କରାଇବା ପ୍ରଭୃତିରେ ବ୍ୟୟ କରିଥିଲି । ଯେଉଁ ଅନୁଷ୍ଠାନମାନଙ୍କରୁ ମାନପତ୍ର ପାଇଥିଲି, ସେଗୁଡ଼ିକ ମଧ୍ୟରୁ କେତେକ ମାନପତ୍ର ୧ ୯ ୯ ୯ ମହାବାତ୍ୟାରେ ନଷ୍ଟ ହୋଇଗଲା । ଆଉ ଯେତେ ଗୁଡ଼ିଏ ଅଛି, ନିମ୍ନରେ ସେଗୁଡ଼ିକର ନାମୋଲ୍ଲେଖ କରୁଛି ।

୧. ନୀଳଚକ୍ର (ସମ୍ମାନ ଓ ଉତ୍କଳ ପାଣିନି ଉପାଧି ପ୍ରଦାନ) ୧ ୯ ୯ ୩, କଟକ

◆ ବିଶିଷ୍ଟ ଆଇନଜୀବୀ ସ୍ୱର୍ଗତ ବ୍ରହ୍ମାନନ୍ଦ ପଣ୍ଡା ସ୍ୱପ୍ରତିଷ୍ଠିତ ପ୍ରଖ୍ୟାତ ଅନୁଷ୍ଠାନ 'ନୀଳଚକ୍ର'ର ବହୁ ଲୋକସମାବେଶରେ ଆୟୋଜିତ ଏକ ବିଶେଷ ଅଧିବେଶନରେ ମୋତେ 'ଉତ୍କଳପାଣିନି' ଉପାଧି ଦ୍ୱାରା ଆଭୂଷିତ କରାଇଥିଲେ । ଏହା ୧ ୯ ୯ ୩ ମସିହାର ଘଟନା ।

୨. କୁଟୀର ସାହିତ୍ୟ ସଂସଦ, ରାଜକନିକା, ୧୯୯୩
୩. ଗୋକର୍ଣ୍ଣିକା, ଧର୍ମଶାଳା, ୧୯୯୨
୪. ବାଳସୂର୍ଯ୍ୟ ସାମାଜିକ ଓ ସାଂସ୍କୃତିକ ସଂଗଠନ, ଓଡ଼ଗିରାୟା, କନିକା, ୧୯୯୬
୫. ଓଡ଼ିଶା ସାହିତ୍ୟ ଏକାଡେମି, ଭୁବନେଶ୍ୱର (ପୁରସ୍କାର) ୧୯୯୨
୬. ନାରାୟଣ ପତି ସ୍ମୃତି ସଂସଦ, କଟକ ୧୯୯୧
୭. ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ, ଜଗତସିଂହପୁର, ଓଡ଼ିଆ ବିଭାଗ, ୧୯୯୬
୮. ସୋଭିଏତ୍ ଦେଶ ନେହେରୁ ପୁରସ୍କାର, ୧୯୬୯
୯. ଅଧ୍ୟାପକ ଡକ୍ଟର ପୀତାମ୍ବର ସ୍ୱାଇଁ ସ୍ମୃତି ସଂସଦ, ଭଦ୍ରକ, ପୁରସ୍କାର, ୨୦୧୪
୧୦. ଲେଖକ ସାମ୍ମୁଖ୍ୟ, ଓଡ଼ିଶା, ଭୁବନେଶ୍ୱର, ୨୦୧୨
୧୧. ସଂପ୍ରୀତି, କଟକ, ୨୦୧୨
୧୨. ରାଜ୍ୟ ପ୍ରାଣନାଥ ସ୍ମୃତି କମିଟି, ମଂଜରୀ ଦେବୀ ସାହିତ୍ୟ ପୁରସ୍କାର, ୨୦୦୬
୧୩. ଶିଶିର ସାହିତ୍ୟ ସଂସଦ, ସୂତାହାଟ, କଟକ, ୨୦୦୫
୧୪. ସାଂବାଦିକ ଗୌରବ ଉଦୟନାଥ ଷଡ଼ଙ୍ଗୀ ଜନ୍ମଶତବାର୍ଷିକୀ ସମ୍ମାନ, ପୁରସ୍କାର, ୨୦୦୪ (ସାରସ୍ୱତ ସାହିତ୍ୟ ସାଂସ୍କୃତିକ ପରିଷଦ, ଯାଜପୁର)
୧୫. ଖରସ୍ରୋତା ସାଂସ୍କୃତିକ ପରିଷଦ (ରଜତ ଜୟନ୍ତୀ ସମାରୋହ), କଣ୍ଡିଆ ହାଟ, କେନ୍ଦ୍ରାପଡ଼ା
୧୬. ରାମକୃଷ୍ଣ ନନ୍ଦ ସ୍ମୃତି କମିଟି ସମ୍ମାନ, କଟକ
୧୭. ଜଷ୍ଟିସ୍ ରାଜକିଶୋର ଦାସ ସ୍ମୃତି କମିଟି, କଟକ, ୨୦୦୧
୧୮. ଜନସୁଧା ପ୍ରତିଭା ପୂଜା, କଟକ, ୨୦୦୩
୧୯. 'ଗୀତାଞ୍ଜଳି' ସାହିତ୍ୟ ସମ୍ମାନ, କଟକ, ୨୦୦୬
୨୦. 'ସହଯୋଗୀ' ମନୋରମା ସମ୍ମାନ, କଟକ, ୨୦୦୮
୨୧. ଚଳଚ୍ଚିତ୍ର ପ୍ରତିଭା ସମ୍ମାନ, କଟକ, ୨୦୦୪
୨୨. ପ୍ରାଚୀ ପ୍ରାଜ୍ଞ ସମ୍ମାନ, ନିଆଳି, ୨୦୧୪
୨୩. ହେତୁବାଦୀ ପତ୍ରିକା 'ଚର୍ଚ୍ଚା' ସମ୍ମାନ, ଭୁବନେଶ୍ୱର, ୨୦୦୮
୨୪. ସାରଳା ସାହିତ୍ୟ ସଂସଦ, କଟକ (ପଣ୍ଡିତ ଗୋଦାବରୀଶ ମିଶ୍ର ସମ୍ମାନ) ୨୦୦୭
୨୫. ଉତ୍କଳ ସାହିତ୍ୟ ସମାଜ, କଟକ (ପଣ୍ଡିତ ଗୋପୀନାଥ ନନ୍ଦ ପ୍ରବନ୍ଧ ଓ ସମାଲୋଚନା ସମ୍ମାନ) ୨୦୦୧

୨୬. ଉତ୍କଳ ପାଠକ ସଂସଦ ସମ୍ମାନ, କଟକ, ୨୦୦୩
୨୭. 'ମହାସମର' ସମ୍ମାନ, କଟକ, ୨୦୦୬
୨୮. କଟକ ସେକେଣ୍ଡାରି ଟ୍ରେନିଂ ସ୍କୁଲ ୧୯୬୧-୬୩ ଛାତ୍ରଛାତ୍ରୀଗଣ ସମ୍ମାନ, ୨୦୧୧
୨୯. ପଞ୍ଚମୁଖୀ ମହୋତ୍ସବ (ବ୍ରଜବାସୀ ସାରସ୍ୱତ ସମ୍ମାନ) କଟକ, ୨୦୧୦
୩୦. ଭୁବନେଶ୍ୱର ପୁସ୍ତକମେଳା ସମ୍ମାନ, ୨୦୧୪
୩୧. ବରିଷ୍ଠ ନାଗରିକ କଲ୍ୟାଣ କେନ୍ଦ୍ର, ଅନ୍ଦରପୁର, କଟକ, ସମ୍ମାନ, ୨୦୦୭
୩୨. ବିରୁପାକ୍ଷ କର ସ୍ମୃତି ପରିଷଦ, ଓଡ଼ିଶା, ୨୦୦୨
୩୩. ଉତ୍କଳ ସାହିତ୍ୟ କଳା ପରିଷଦ, କଟକ, (ଉତ୍କଳ ସାହିତ୍ୟଶ୍ରୀ ସମ୍ମାନ), ୨୦୦୪
୩୪. କମଳା ଆଦର୍ଶ ବାଳିକା ଉଚ୍ଚ ବିଦ୍ୟାଳୟ ସମ୍ମାନ, ୨୦୧୨
୩୫. ବ୍ୟାସକବି ଫକୀରମୋହନ ସମ୍ମାନ, ୨୦୧୪ (ଅନ୍ନଦା ପ୍ରସାଦ ରାୟ ଜୟନ୍ତୀ କମିଟି, କଟକ)
୩୬. ବାଳିକା ଉଚ୍ଚ ବିଦ୍ୟାଳୟ, ରାଜକନିକା, ସମ୍ମାନ (ସୁବର୍ଣ୍ଣ ଜୟନ୍ତୀ ସମାରୋହ), ୨୦୧୪
୩୭. ଉଦୟଭାନୁ ସାହିତ୍ୟ ସଂସଦ, କଟକ, ୨୦୧୪
୩୮. ଓଡ଼ିଶା ସାହିତ୍ୟ ଏକାଡେମି, ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର, ୨୦୧୩
୩୯. କନିକା ପୂଜ୍ୟପୂଜା ପରିଷଦ ସଂବର୍ଦ୍ଧନା, ୨୦୧୫
୪୦. କେନ୍ଦ୍ରାପଡ଼ା ଜିଲ୍ଲା ସାହିତ୍ୟ ପରିଷଦ ଶ୍ରୀ ବଳଦେବ ସମ୍ମାନ (ପୁରସ୍କାର) ୨୦୧୫
୪୧. ପ୍ରଫେସର ଜଗନ୍ନାଥ ରାଠୋର ଶିକ୍ଷାବିତ୍ ସମ୍ମାନ, (ପୁରସ୍କାର), କଟକ, ୨୦୧୫



# ନାଚକାରୀର ନିବେଦନ

୭୪/୭୫ ବର୍ଷ ବୟସ ବେଳେ ମୁଁ ଥରେ ଭୁବନେଶ୍ୱର ସ୍ଥିତ 'ସମ୍ ହସ୍‌ପିଟାଲ'କୁ କାନ ଚିକିତ୍ସା ପାଇଁ ଯାଇଥିଲି । ଡାହାଣପଟ କାନ ସବୁବେଳେ ଭାଁ ଭାଁ ହେଉଥିଲା, (ଏବେ ଆହୁରି ଅଧିକା ହେଉଛି) ଏବଂ ତାହାର ଭିତରେ ସବୁବେଳେ ମୁଣ୍ଡର ଡାହାଣପଟ ସହିତ ସିରିସିରି ହୋଇ ବିନ୍ଧୁଥିଲା (ଏବେ ଆହୁରି ଅଧିକା ହେଉଛି) । କାନ ବିଭାଗର ଡାକ୍ତର ଦେବବ୍ରତ ପାଣିଗ୍ରାହୀ କାନ ଦେଖିଲେ ଏବଂ ହତାଶା ବ୍ୟକ୍ତ କଲେ – "ଆପଣଙ୍କର କାନଟିର ପରଦା ନଷ୍ଟ ହୋଇଯାଇଛି । ଏହାର କୌଣସି ପ୍ରତିକାର ନାହିଁ । ଏ ବୟସରେ ଅପରେସନ କରାଇବା ମଧ୍ୟ ଉଚିତ ହେବ ନାହିଁ । କାନରେ ତୁଳାବିଣ୍ଡା ଦେଇ ଓ ଯଥାସମ୍ଭବ ସାଉଣ୍ଡ୍ (ଶବ୍ଦ) ଠାରୁ ଦୂରରେ ରହି ଚଳିବାକୁ ପଡ଼ିବ । ବେଳେ ବେଳେ ମୁଣ୍ଡ ବୁଲାଇପାରେ । ମୁଣ୍ଡ ବୁଲାଇଲେ ସେଥିପାଇଁ ଔଷଧ ଖାଇବେ ।"

ମୁଣ୍ଡ ବୁଲା ପାଇଁ ଔଷଧ ମଧ୍ୟ ଲେଖିଦେଲେ । ତାଙ୍କ କଥା ଶୁଣି, କଟକର ଜଣେ କାନ ବିଭାଗ (ଇ.ଏନ୍.ଟି.) ଡାକ୍ତର ଓ ଜଣେ ମହିଳା ହୋମିଓପାଥି ଡାକ୍ତରଙ୍କ ଦ୍ୱାରା କାନର ଚିକିତ୍ସା କରାଇ ଏପରି ଅବସ୍ଥାରେ ପଡ଼ିଲି ଭାବି ଅତ୍ୟନ୍ତ ଦୁଃଖିତ ହେଲି । ତା'ପରେ ଗଲି ଆଖି ବିଭାଗକୁ । କାରଣ, ଦୁଇ ଆଖିରେ କଷ୍ଟ ଅନୁଭବ ହେଉଥିଲା । ଆଖି ବିଭାଗର ଡାକ୍ତର ସୁଖଦା ମିଶ୍ର ମୋ ଆଖି ପରୀକ୍ଷା କଲାମାତ୍ରେ ଚିହିଁକି ଉଠିଲେ । ସଙ୍ଗେସଙ୍ଗେ ତାଙ୍କ ବିଭାଗର ଅନ୍ୟ ଡାକ୍ତରମାନଙ୍କୁ ଡାକିଆଣି ମୋ ଦୁଇ ଆଖିକୁ ଦେଖାଇଲେ । ସମସ୍ତେ ତାଙ୍କ ଯନ୍ତ୍ରରେ ଦେଖି ଅତ୍ୟନ୍ତ ଆଶ୍ଚର୍ଯ୍ୟ ପ୍ରକଟ କଲେ । ମୁଁ କିଛି କାରଣ ଜାଣି ପାରୁ ନ ଥାଏ । ସନ୍ତର୍ପଣରେ ପଚାରିଲି – 'ଆଜ୍ଞା, କଅଣ ହୋଇଛି ?'

କେହି କିଛି କହିଲେ ନାହିଁ, ମୁଁ ନିତାନ୍ତ ଅନୁରୋଧ କରିବାରୁ ଜଣେ କହିଲେ - "ଆପଣଙ୍କର ଦୁଇ ଆଖି ଡେଡ୍ ଆଇଜ୍ (ମଲା ଆଖି) । ମଣିଷ ମରିଗଲା ପରେ ଆଖିର ଏହିପରି ଅବସ୍ଥା ହୋଇଯାଏ ।"

ମୁଁ ସ୍ତମ୍ଭୀଭୂତ ହୋଇଗଲି । ତା'ପରେ ଡାକ୍ତର ମୋର ଆଖିର ଦୃଷ୍ଟିଶକ୍ତି ପରୀକ୍ଷା କରି କିଛି ଔଷଧ ସେବନ କରିବାକୁ ଲେଖିଦେଲେ । ସେଠାରୁ ଆସିବା ପରେ ମୋର ମଲା ଆଖିର କାରଣ କଅଣ, ଭାବିବାରେ ଲାଗିଲି । ମୋର ମନେ ପଡ଼ିଲା, ପିଲାଦିନେ ଗାଈ ଲାଙ୍ଗୁଡ଼ ଧରି ଜୋଡ଼ ପାରି ହେଲାବେଳେ ଗାଈ ତା ପିଠି ବୁଡ଼ାଇବାରୁ ମୁଁ ଲାଙ୍ଗୁଡ଼ ଛାଡ଼ି ଦେଇଥିଲି ଏବଂ ପାଣିରେ ବୁଡ଼ିଯାଇ କିଛି ସମୟ ପରେ ଗୋଟାଏ ଢିପରେ ଲାଗି ଯାଇଥିଲି । ବୋଧହୁଏ ସେହି ସମୟ ଭିତରେ ମୁଁ ମୃତ ହୋଇଯାଇଥିଲି ଏବଂ ପୁଣି ଦୈବକୃପା କ୍ରମେ ଜୀବନ ଲାଭ କରିଥିଲି । କିମ୍ବା ଏପରି ହୋଇଥିବ ଯେ ମୁଁ ମାତୃଗର୍ଭରେ ମୃତ ହୋଇ ପୁନର୍ଜୀବନ ଲାଭ କରିଥିବି ।

ଆଉ ଥରେ ମୁଁ କଟକର ଖ୍ୟାତନାମା ଚକ୍ଷୁ ଡାକ୍ତର ବି.କେ. ତ୍ରିପାଠୀଙ୍କ ପାଖକୁ ଯାଇଥିଲି । ସେ ମଧ୍ୟ ତାଙ୍କ ଯନ୍ତ୍ରରେ ଆଖି ଯୋଡ଼ିକ ଦେଖିଲା ମାତ୍ରେ ମୋତେ ଧମକାଇଲା ଭଳି ପଚାରିଲେ - (ମୁଁ ଥିଲି ତାଙ୍କର ଅନ୍ୟାନ୍ୟ ଅଜଣା ରୋଗୀଙ୍କ ଭଳି ଜଣେ ଅଜଣା ରୋଗୀ) 'କହନ୍ତୁ, ଆଖିରେ କଅଣ ପକାଇଛନ୍ତି ?'

ମୁଁ କହିଲି - "ଆଜ୍ଞା, ମୁଁ କିଛି ପକାଇ ନାହିଁ । ଆସିଛି ଆଖି ପରୀକ୍ଷା କରାଇବାକୁ । କାରଣ, ଆଖିରେ କଷ୍ଟ ଅନୁଭବ ହେଉଛି ।"

ସେ ଆହୁରି ରାଗିଲା ଭଳି କହିଲେ - 'ଆପଣ ମିଛ କହନ୍ତୁ ନାହିଁ । ନିଶ୍ଚୟ କଅଣ ପକାଇଛନ୍ତି ।'

ମୁଁ ଦୃଢ଼ ଭାବରେ କହିଲି - 'ନା ଆଜ୍ଞା, ମୁଁ ମିଛ କହୁନାହିଁ । ଆଖିରେ କିଛି ପକାଇ ନାହିଁ ।'

ସେ ଆଶ୍ଚର୍ଯ୍ୟ ହୋଇ ତାଙ୍କ ପୁଅ ଡାକ୍ତରଙ୍କୁ ଡାକି ଆଣି ମୋ ଆଖି ଦେଖାଇଲେ । ପୁଅ ମଧ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଦୁହିଁଙ୍କ କଥାରୁ ଜାଣିଲି ଯେ ମଲା ପରେ ଆଖିର ଏହିପରି ଅବସ୍ଥା ହୁଏ । ମୁଁ ଏ ପର୍ଯ୍ୟନ୍ତ ଜାଣି ପାରୁ ନାହିଁ କାହିଁକି ଏପରି ହୋଇଛି । ଅବା ପ୍ରକୃତିର ସୃଷ୍ଟିରେ ଏହା ଏକ ବୈଚିତ୍ର୍ୟ ହୋଇଥିବ ।

ନାସା କର୍ଣ୍ଣ ଗଳା ବିଭାଗର ସୁଦକ୍ଷା, ଅମୃତହସ୍ତା ଡାକ୍ତର ଭକ୍ତିଲତା ରାୟଙ୍କୁ ମଧ୍ୟ କାନ ଦେଖାଇଥିଲି ଏବଂ କାନ କଷ୍ଟରୁ ରକ୍ଷା କରିବା ପାଇଁ ଅନୁରୋଧ ଜଣାଇଥିଲି । ସେ ମଧ୍ୟ କହିଲେ - କାନ ପରଦା ନଷ୍ଟ ହୋଇ ଯାଇଥିବାରୁ କୌଣସି ପ୍ରତିକାର କରି

ହେବନାହିଁ । ଅପରେସନ କରି ପରଦା ଲଗାଇବା ମଧ୍ୟ ନିର୍ଭରଯୋଗ୍ୟ ନୁହେଁ । ଯଥାସମ୍ଭବ ଶବ୍ଦଠାରୁ ଦୂରରେ ରହି ଓ କାନକୁ ଘୋଡ଼ାଇ ଚଳିବାକୁ ପଡ଼ିବ ।

ବର୍ତ୍ତମାନ ମୁଁ ମଲା ଆଖି, ସବୁବେଳେ ସିରିସିରି ହୋଇ ବିନ୍ଧୁଥିବା ଡାହାଣ କାନ ଓ ମୁଣ୍ଡର ଡାହାଣପଟ, ଲୋଳିତ ଚର୍ମ, ଶୀର୍ଣ୍ଣ ଶରୀରକୁ ନେଇ ସଂସାରନାଚ ଚଳାଇବାକୁ ସଂପୂର୍ଣ୍ଣ ସାମର୍ଥ୍ୟହୀନ ହୋଇଗଲିଣି । ଅନେକ ସମୟରେ 'ନାଚକାରୀର ନିବେଦନ' କବିତାଟି ମୋର ମନେ ପଡୁଛି, ଯାହାକୁ ମୁଁ କିଶୋର ବୟସରେ ଲେଖିଥିଲି ଏବଂ ୧୯୬୫ରେ ସୁନ୍ଦରଗଡ଼ କଲେଜରେ ଥିଲାବେଳେ ଦ୍ୱାରିକାନାଥ ସାମଲଙ୍କୁ ଅନେକବାର ଶୁଣାଇ ଥିଲି । ଦ୍ୱାରିକାନାଥବାବୁ ମୋଠାରୁ ଉକ୍ତ ଗୀତଟି ଶୁଣିବା ପାଇଁ ବାରମ୍ବାର ମୋତେ ଅନୁରୋଧ କରୁଥିଲେ ଏବଂ ମୁଁ ତାଙ୍କୁ ବାରମ୍ବାର ଗୀତଟି ଶୁଣାଉଥିଲି । ଦ୍ୱାରିକାନାଥ ସାମଲ ଥିଲେ ସେ ସମୟରେ ସୁନ୍ଦରଗଡ଼ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟରେ ଅଫିସ୍ ସୁପରିଣ୍ଟେଣ୍ଡେଣ୍ଟ । ଭାରି ନୀତିମାନ୍, ପରୋପକାରୀ ଓ ଧର୍ମପରାୟଣ ଲୋକ । ତାଙ୍କର ସାନଭାଇ ରାମଚନ୍ଦ୍ର ସାମଲ ସୁନ୍ଦରଗଡ଼ କଲେଜରେ ଜିଓଲୋଜି ଅଧ୍ୟାପକ ଥିଲେ । ରାମଚନ୍ଦ୍ରବାବୁ, ଶକ୍ତିପ୍ରଦ ମିଶ୍ର, ନିମାଇଁ ଚରଣ ମହାନ୍ତି ଓ ଆଉ କେତେଜଣ ଅଧ୍ୟାପକ ସୁନ୍ଦରଗଡ଼ ସହରରୁ କଲେଜ ପର୍ଯ୍ୟନ୍ତ ରାସ୍ତାର ମଝିଆମଝି ସ୍ଥାନରେ 'ସମ୍ବଲପୁର ଚାମ୍ବର' ନାମକ ଏକ ଅଧ୍ୟାପକ-ଆବାସରେ ରହୁଥିଲେ । ଦ୍ୱାରିକାନାଥବାବୁ ସେଠାକୁ ବରାବର ଆସୁଥିଲେ ଏବଂ ମୁଁ ମଧ୍ୟ ସେଠାକୁ ଯାଉଥିଲି । ମୁଁ ସଂସ୍କୃତ-ଓଡ଼ିଆ ଅଧ୍ୟାପକ ଥିବାରୁ ଏବଂ ଧୋତିପିନ୍ଧା, ନିରୀହ, ନିରାଡ଼ମ୍ବର ପ୍ରକୃତିର ଥିବାରୁ ମୋ ସହିତ ତାଙ୍କର ବନ୍ଧୁତା ଗଢ଼ିଉଠିଥିଲା । ସେ ମୋ ସହିତ ଈଶ୍ୱରଭକ୍ତି ସମ୍ବନ୍ଧୀୟ ଆଲୋଚନା କରୁଥିଲେ ଏବଂ ତତ୍‌ସମ୍ବନ୍ଧୀୟ କବିତା ଶୁଣିବାକୁ ଭଲ ପାଉଥିଲେ । ମୋ ଲିଖିତ 'ନାଚକାରୀର ନିବେଦନ' ନାମକ କବିତାଟିଏ ମୁଁ ତାଙ୍କୁ ଥରେ ଶୁଣାଇଥିଲି । ସେ ତାହା ଶୁଣି ଏପରି ଭାବମଗ୍ନ ହୋଇଯାଇଥିଲେ ଯେ ମୋତେ ସେହି କବିତାଟି ଗାଇବାକୁ ବାରମ୍ବାର କହୁଥିଲେ ।

ଦ୍ୱାରିକାନାଥବାବୁ ମୋର ଗୋଟିଏ ଅନୁରୋଧ ଆନନ୍ଦରେ ରକ୍ଷା କରିଥିଲେ । ଆମ ଗାଁ ଚକ୍ରଧର ଓଝାଙ୍କର ବଡ଼ ପୁଅଟି ଥାର୍ଡ଼ ଡିଭିଜନ କଂପାର୍ଟମେଣ୍ଟାଲରେ ମାଟ୍ରିକ୍ ପାଶ୍ କରିଥିଲା । ଚକ୍ରଧର ଭାଇ ତା'ପାଇଁ ଖଣ୍ଡେ ଚାକିରି କରାଇଦେବା ନିମନ୍ତେ ମୋତେ ବାରମ୍ବାର ଅନୁରୋଧ କରିଥିଲେ । ମୁଁ ଦ୍ୱାରିକାନାଥବାବୁଙ୍କୁ ତାଙ୍କରି ପୁଅଟି ପାଇଁ ଅନୁରୋଧ କରିଥିଲି । ସେ ପିଲାଟିକୁ ସୁନ୍ଦରଗଡ଼ ଜିଲ୍ଲାପାଳଙ୍କ ଅଫିସରେ ଏକ କିରାଣି ପଦରେ ରଖାଇ ଦେଇଥିଲେ । (କିନ୍ତୁ ସେହ ପିଲାଟି ଚାକିରି କଲା ପରେ ଆଉ ବାପମାଆଙ୍କୁ ପଚାରିଲା ନାହିଁ । ସୁନ୍ଦରଗଡ଼ରେ ଘର କରି ରହିଲା ।)

କିଶୋର ବୟସରେ 'ନାଟକାରୀର ନିବେଦନ' କବିତାଟି ମୁଁ ଗାଁରେ ଥିଲାବେଳେ ଲେଖିଥିଲି । ପିଲାମାନଙ୍କର ଧୂଳିଘର ଖେଳରୁ ଯେପରି ସେମାନଙ୍କର ଭବିଷ୍ୟତ ଗୃହସ୍ଥ ଜୀବନର ସୂଚନା ମିଳେ, ସେହିପରି କିଶୋର ବୟସରେ ଲିଖିତ ମୋ କବିତାଟିରେ ଭବିଷ୍ୟତ ଜରାଗ୍ରସ୍ତ ଜୀବନର ସୂଚନା ରହିଛି, ଯାହା କି ମୁଁ ବର୍ତ୍ତମାନ ଅଙ୍ଗେ ନିଭାଉଛି । ତେଣୁ ସ୍ମୃତିରେ ଥିବା ସେହି କବିତାଟି ମୁଁ ବେଳେବେଳେ ଗାଉଛି (ଅବଶ୍ୟ ଏହା ମୋର 'ସେଦିନ ସକାଳ' କବିତା ପୁସ୍ତକରେ ୧୮୮ ପୃଷ୍ଠାରେ ଲିପିବଦ୍ଧ ହୋଇଛି) —

ବହୁ ନାଚିନାଚି ଥକି ପଡ଼ିଲିଣି
ନାଚି ନ ପାରିବି ଆଉ
ଏବେ ଏହି ନାଚ- କାରୀକୁ ବିଶ୍ରାମ
ମିଳିବାର ଆଜ୍ଞା ହେଉ ।

x x x

ଅନନ୍ତ ନାଚର ରଚକ ହେ ପ୍ରଭୁ
କି ଶକତି ଅଛି ମୋର
ଭବ ରଙ୍ଗମଞ୍ଚେ ଠିଆ କରାଇଛ
ଯାହା ଇଛା ତାହା କର ।

କିଶୋର ବୟସରେ 'ସନ୍ଥ ତୁଳସୀ ଦାସ' ନାଟକରେ ଗୀତଟିଏ ଲେଖିଥିଲି, ଯାହାର ପଦଟିଏ ଥିଲା -

"ଦମ୍ଭ ଅଭିମାନ ଜୀବନ ଯୌବନ
ଲୀନ ହେବ କାଳ ଗରଭେ
ଅଭିନୟ ସାରି ପଥିକ ହୁଅନ୍ତି
ମହାକାଳ ପଥେ ସରବେ ।"

(ଦ୍ୱିତୀୟ ଅଂକ, ଷଷ୍ଠ ଦୃଶ୍ୟ)

ସେତେବେଳେ ମହାକାଳ ମୋ କଳ୍ପନାରେ ଥିଲା, କିନ୍ତୁ ବର୍ତ୍ତମାନ ତାହାକୁ ମୁଁ ଆଖି ଆଗରେ ଅତି ନିକଟରେ ଦେଖୁଛି ଏବଂ ସେଥିରେ ଶାନ୍ତ ଭାବରେ ବିଲୀନ ହୋଇଯିବାର ମୁହୂର୍ତ୍ତକୁ ଅପେକ୍ଷା କରିଛି ମାତ୍ର ।

•••

## ଭାଷା ସାହିତ୍ୟ କୃତି

୧. ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନ - ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ- ୨

୨. ଓଡିଆ ଧ୍ୱନିତତ୍ତ୍ୱ ଓ ଶବ୍ଦସମ୍ଭାର-ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ- ୨

୩. ଆଧୁନିକ ଓଡ଼ିଆ ବ୍ୟାକରଣ - କିତାବ ମହଲ, କଲେଜ ଛକ, କଟକ-୩

୪. ଓଡିଆ ଭାଷାତତ୍ତ୍ୱ : ବିଚାର ଓ ବିଶ୍ଳେଷଣ - ବିଜୟିନୀ ପବ୍ଲିକେଶନ୍ସ୍, ଶଙ୍କରପୁର, ଅରୁଣୋଦୟ ମାର୍କେଟ, କଟକ- ୧ ୨

୫. ସରଳ ଓଡ଼ିଆ ଅଭିଧାନ - ଆମ ଓଡ଼ିଶା, ୪ ଆର୍ ୧/୨, ୟୁନିଟ୍-୩, ଖାରବେଳନଗର, ଭୁବନେଶ୍ୱର

୬. ସାହିତ୍ୟ ତତ୍ତ୍ୱ - ଆରୋହୀ, କଲ୍ୟାଣୀନଗର, କଟକ - ୧୩

୭. ରମ୍ୟ ଅରମ୍ୟ - କାହାଣୀ, କଲ୍ୟାଣୀନଗର, କଟକ -୧୩

୮. ସେଦିନ ସକାଳ - ଶ୍ରୀମତୀ ଜୀବନକୁମାରୀ ମହାପାତ୍ର, କଲ୍ୟାଣୀନଗର, କଟକ-୧୩

୯. ହାସ ହାସିକା - କଟକ ଷ୍ଟୁଡେଣ୍ଟ୍ସ୍ ଷ୍ଟୋର, ବାଲୁବଜାର, କଟକ -୨

୧୦. ବୃନ୍ତ ମୁକ୍ତ ବିହଙ୍ଗ ପରି - ଶ୍ରୀମତୀ ଅଂଜୁଲତା ମିଶ୍ର, କ୍ଲିନିକ୍ ହେଲ୍ଥ ହୋମ୍, ପୋ: ଗୋପପୁର, ଭାୟା-ବଡମ୍ବା, କଟକ

୧୧. ବଂଧୁ ଆଳାପ - ଶ୍ରୀମତୀ ଅଂଜୁଲତା ମିଶ୍ର, କ୍ଲିନିକ୍ ହେଲ୍ଥ ହୋମ୍, ପୋ: ଗୋପପୁର, ଭାୟା-ବଡମ୍ବା, କଟକ

୧୨. ସଂସାର ଚିତ୍ର - କିତାବ ମହଲ, କଲେଜ ଛକ, କଟକ -୩

୧୩. ଆବେଗ ଓ ଆଦର୍ଶର ଦୁଇଟି ନାଟକ (ସନ୍ଥ ତୁଳସୀ ଦାସ ଓ ବେଣୀ ବନ୍ଧନ) - ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, ବାଲୁବଜାର, କଟକ-୨

୧୪. ଠିକ୍ ପଢ ଠିକ୍ ଲେଖ - ପି.ପି.ପି. କମିଟି, ଆଲମଚାନ୍ଦ ବଜାର, କଟକ -୨, ଓଡ଼ିଶା ସରକାର

୧୫. ଆମ ଓଡ଼ିଆ ବ୍ୟାକରଣ - ଆମ ଓଡ଼ିଶା, ଭୁବନେଶ୍ୱର

୧୬. ବାଙ୍ମୟ - ଅକ୍ଷର, କଲ୍ୟାଣୀନଗର, କଟକ - ୧୩

## ଅନୁବାଦ

୧୭. କାଳିଦାସ ଗ୍ରନ୍ଥାବଳୀ (କାବ୍ୟ ଭାଗ) - ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ -୨ ।

୧୮. କାଳିଦାସ ଗ୍ରନ୍ଥାବଳୀ (ନାଟକ ଭାଗ) - ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ -୨ ।

୧୯. କର୍ପୂର ମଂଜରୀ - ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୨ ।

୨୦. ଅଶ୍ୱଘୋଷ ରଚନାବଳୀ - ଅକ୍ଷର, କଲ୍ୟାଣୀନଗର, କଟକ - ୧୩ ।

୨୧. ପଂଚତଂତ୍ର - କିଶୋର କାହାଣୀ ପ୍ରକାଶନୀ, କଲ୍ୟାଣୀନଗର, କଟକ-୧୩ ।

୨୨. ସଂସ୍କୃତ ନାଟକ ତ୍ରୟୀ (ମୃଚ୍ଛକଟିକ, ମୁଦ୍ରାରାକ୍ଷସ, ଅଭିଜ୍ଞାନଶାକୁନ୍ତଳ) - ବିଦ୍ୟାପୁରୀ, ବାଲୁବଜାର, କଟକ -୨ ।

୨୩. ସଂସ୍କୃତ କାବ୍ୟନାଟକ ସଂଗ୍ରହ - ସାହିତ୍ୟ ଅକାଦେମି, ରବୀନ୍ଦ୍ର ଭବନ, ୩୫ - ଫିରୋଜଶାହ ରୋଡ୍, ନୂଆ ଦିଲ୍ଲୀ - ୧୧୦୦୦୧ ।

୨୪. ପୁନର୍ଜୀବନ - ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ - ୨ ।

୨୫. ସରଳ ଶ୍ରୀମଦ୍ ଭଗବଦ୍‌ଗୀତା - କିତାବ ମହଲ, କଲେଜ ଛକ, କଟକ - ୩ ।

୨୬. ପଠନ ଦକ୍ଷତା ଶିକ୍ଷଣ - ଟେକ୍ସ୍ଟ ବୁକ୍ ବ୍ୟୁରୋ, ଭୁବନେଶ୍ୱର ।



**ଡକ୍ଟର ଧନେଶ୍ୱର ମହାପାତ୍ର** ଆଧୁନିକ ଓଡ଼ିଶାର ସକ୍ରେଟିସ୍ । ଶିକ୍ଷକତା ଓ ଅଧ୍ୟାପନାରେ ଉତ୍ସର୍ଗୀକୃତ ତାଂକର ସମଗ୍ର ଜୀବନକାଳ । ବହୁ ଯଶସ୍ୱୀ ଓଡ଼ିଆଂକର ସେ ଶ୍ରଦ୍ଧେୟ ଶିକ୍ଷାଗୁରୁ । ଜୀବନର ଅପରାହ୍ଣରେ ତାଂକର ଏହି ଛିନ୍ନସ୍ମୃତିର ଚୟନିକା ତଥା ଆତ୍ମଚରିତ ହେଉଛି ଆମୂଳାଂତ ଏକ ଶ୍ରୁତଲିଖିତ ସର୍ଜନା । ଯେଉଁ କଲମରେ ସେ ରଚନା କରିଛଂତି ରାଶି ରାଶି ବୁଦ୍ଧିଦୀପ୍ତ ଗଦ୍ୟ, ସେଇ କଲମ ତାଂକ ନିଜ ସଂପର୍କରେ ସୂଚନା ଦେବାକୁ ଗଲାବେଳେ ଅଶୀତିପର ବୟସର କଂପିତ କରାଂଗୁଳି ଆଜି ଅସମର୍ଥ ।

ନିଜ ଶିଂଗରେ ନିଜେ ମାଟି ତାଡ଼ି ସେ ମଣିଷ । ଶୈଶବରୁ ଉତ୍କଟ ଅନଟନରେ କାଳାତିପାତ କରିଆସିଥିବା ଏହି ସଂକଳ୍ପନିଷ୍ଠ ସାରସ୍ୱତ ଶିଳ୍ପୀ ପରବର୍ତ୍ତୀ କାଳରେ ଓଡ଼ିଆ ଭାଷାର ପରିଚର୍ଚ୍ଚା କ୍ଷେତ୍ରରେ ଜଣେ ପ୍ରସିଦ୍ଧ ପୁରୁଷ - 'ଉତ୍କଳ ପାଣିନି' ଭାବରେ ପ୍ରକୀର୍ତ୍ତିତ । ସାରଳା ମହାଭାରତର ଭାଷାତାତ୍ତ୍ୱିକ ଅନୁଶୀଳନଠାରୁ ଆରଂଭ କରି ଓଡ଼ିଆ ଧ୍ୱନିତତ୍ତ୍ୱ, ଭାଷାତତ୍ତ୍ୱ, ସାହିତ୍ୟତତ୍ତ୍ୱ, ବ୍ୟାକରଣ ଓ ଅଭିଧାନ ପ୍ରଭୃତି ପର୍ଯ୍ୟଂତ ତାଂକ ଅତଂଦ୍ର ସାଧନାର ଧାରା ସୁବିସ୍ତାରିତ । ଏହାଛଡ଼ା ସେ ରଚନା କରିଛଂତି ନାନା ଭାବୋଦ୍ଦୀପକ ନିବଂଧ ଓ ରସାଳ ରମ୍ୟରଚନା । ସଂବାଦପତ୍ରର ଜଣେ ସିଦ୍ଧହସ୍ତ ସ୍ତଂଭକାର ଭାବରେ ସେ ସ୍ମରଣୀୟ । କୁସଂସ୍କାର, ଅଂଧବିଶ୍ୱାସ, ଅହେତୁକ ଅତୀତପ୍ରୀତି ଓ ସାଂପ୍ରତିକ ସ୍ଥିତାବସ୍ଥା ବିରୋଧରେ ତାଂକର ସ୍ୱର ଶାଣିତ, ଅଥଚ ଶାଳୀନ !

ସଂସ୍କୃତ ଭାଷାର ଏହି ଆଧୁନିକ ପଂଡିତ ଅନୁବାଦ ମାଧ୍ୟମରେ ଆମ ସମସ୍ତଂକୁ ପରିଚିତ କରାଇଛଂତି କାଳିଦାସ ଓ ଅଶ୍ୱଘୋଷଂକ ପରି ମହାକବିମାନଂକ ସହିତ । ପଂଚତଂତ୍ର ଓ କର୍ପୂରମଂଜରୀ ଇତ୍ୟାଦି ଉଲ୍ଲେଖନୀୟ କୃତିଠାରୁ ଆରଂଭ କରି ସଂସ୍କୃତ ସାହିତ୍ୟର ନାନା ନାଟକକୁ ମଧ୍ୟ ଅନୁବାଦ କରିଛଂତି ସେ । ଟଲଷ୍ଟୟଂକ ସର୍ବକାଳୀନ ଉପନ୍ୟାସ 'Resurrection'କୁ 'ପୁନର୍ଜୀବନ' ନାମରେ ଅନୁବାଦ କରି ସେ ପାଇଛଂତି ସୋଭିଏତ୍ ଲ୍ୟାଂଡ୍ ନେହରୁ ପୁରସ୍କାର । ଅଶ୍ୱଘୋଷଂକ କୃତିର ଅନୁବାଦ ପାଇଁ ମଧ୍ୟ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛଂତି ସେ ।

ଅଜସ୍ର ସଂବର୍ଦ୍ଧନା ଓ ପୁରସ୍କାରପ୍ରାପ୍ତ ଡକ୍ଟର ଧନେଶ୍ୱର ମହାପାତ୍ରଂକୁ ତାଂକର ସାମଗ୍ରିକ ସାରସ୍ୱତ-ବ୍ୟକ୍ତିତ୍ୱ ନିମଂତେ ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ମାନିତ କରିଛି ୨୦୧୩ ମସିହାର ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ।

**'ମୋ ଜୀବନ ମୋ ଜଗତ'** - ଏହି ଅବିସ୍ମରଣୀୟ ସାହିତ୍ୟକାରଂକର ଅବଶ୍ୟ-ପଠନୀୟ ଆତ୍ମଚରିତ ।

.....................................................................

